# ଉତ୍କଳ ପ୍ରସଙ୍ଗ

**The Utkal Prasanga**

**January- 2022**


**୭୮ ଭାଗ ୬ଷ୍ଠ ସଂଖ୍ୟା ପୌଷ–ମାଘ ଜାନୁଆରୀ – ୨୦୨୨**




---

ଉତ୍କଳ ପ୍ରସଙ୍ଗ ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।


ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ–୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଲୋକ ସମ୍ପର୍କ ଭବନ, ଭୁବନେଶ୍ୱର–୭୫୧୦୦୧

ଇ–ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.odisha.gov.in
ଫୋନ୍ : ୦୬୭୪–୨୫୩୦୨୧୧

ପ୍ରତିଖଣ୍ଡ : ଟ. ୫.୦୦

# ସୂଚୀ

**ଜାନୁଆରୀ – ୨୦୨୨**





# ଜାତୀୟ ସଙ୍ଗୀତ

ଜନ-ଗଣ-ମନ-ଅଧିନାୟକ ଜୟ ହେ
ଭାରତ-ଭାଗ୍ୟ-ବିଧାତା
ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା
ଦ୍ରାବିଡ଼-ଉତ୍କଳ-ବଙ୍ଗ
ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା
ଉଚ୍ଛଳ ଜଳଧି ତରଙ୍ଗ
ତବ ଶୁଭ ନାମେ ଜାଗେ
ତବ ଶୁଭ ଆଶିଷ ମାଗେ
ଗାହେ ତବ ଜୟ ଗାଥା
ଜନଗଣ-ମଙ୍ଗଳଦାୟକ ଜୟ ହେ,
ଭାରତ-ଭାଗ୍ୟ-ବିଧାତା
ଜୟ ହେ ଜୟ ହେ ଜୟ ହେ,
ଜୟ ଜୟ ଜୟ ଜୟ ହେ ।

*- ରବୀନ୍ଦ୍ରନାଥ ଠାକୁର*

# ବନ୍ଦେ ମାତରମ୍

ସୁଜଲାମ୍, ସୁଫଲାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନା° ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ॥
ବନ୍ଦେ ମାତରମ୍ ।।।

– ବଙ୍କିମଚନ୍ଦ୍ର ଚାଟାର୍ଜୀ

# ଶ୍ରଦ୍ଧାଞ୍ଜଳି



ବ୍ୟାସକବି ଫକୀର ମୋହନ ସେନାପତି





# THE CONSTITUTION OF INDIA

## PREAMBLE

WE, THE PEOPLE OF INDIA, having solemnly resolved to constitute India into a SOVEREIGN SOCIALIST SECULAR DEMOCRATIC REPUBLIC and to secure to all its citizens:

JUSTICE, social, economic and political;

LIBERTY of thought, expression, belief, faith and worship;

EQUALITY of status and of opportunity;

and to promote among them all

FRATERNITY assuring the dignity of the individual and the unity and integrity of the Nation;

IN OUR CONSTITUENT ASSEMBLY this twenty-sixth day of November, 1949, do HEREBY ADOPT, ENACT AND GIVE TO OURSELVES THIS CONSTITUTION.

# ଶ୍ରଦ୍ଧାଞ୍ଜଳି







ଆଡ଼ମିରାଲ୍ ଏସ୍.ଏଚ୍.ଶର୍ମା (ପି.ଭି.ଏସ୍.ଏମ୍ )



ମିହିର ଦାସ
ଓଡ଼ିଆ ଚଳଚ୍ଚିତ୍ର ଅଭିନେତା



କିଶୋର ମହାନ୍ତି
ପୂର୍ବତନ ବିଧାୟକ

# ସାଧାରଣତନ୍ତ୍ର ଦିବସ -୨୦୨୨ ଅବସରରେ ଓଡ଼ିଶାର ମାନ୍ୟବର ରାଜ୍ୟପାଳ

# ପ୍ରଫେସର ଗଣେଶୀ ଲାଲଙ୍କ ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ସାଧାରଣତନ୍ତ୍ରର ୭୩ତମ ବର୍ଷରେ ମୁଁ ଆପଣମାନଙ୍କୁ ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି । ସାଧାରଣତନ୍ତ୍ର ଦିବସ ଆମ ସମସ୍ତଙ୍କ ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ଦିବସ । ଗର୍ବ ଓ ଗୌରବ ବହନ କରୁଥିବା ଏହି ପବିତ୍ର ଦିବସ ହେଉଛି ସ୍ମରଣୀୟ ଓ ସଂକଳ୍ପର ଦିବସ । ୧୯୫୦ ମସିହାର ଏହି ଐତିହାସିକ ଦିବସରେ ଆମେ ସାର୍ବଭୌମତ୍ୱ ହାସଲ କଲୁ । ଏହି ଦିବସରେ ଭାରତର ସମ୍ବିଧାନ ଗୃହୀତ ହୋଇଥିଲା ଏବଂ ଆମ ଦେଶ ଏକ ସାଧାରଣତନ୍ତ୍ରରେ ପରିଣତ ହେଲା । ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମ୍ବିଧାନ ସଭା ଦ୍ୱାରା ଗୃହୀତ ହୋଇଥିବା ଭାରତୀୟ ସମ୍ବିଧାନ, ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ବିଧିବଦ୍ଧ ଭାବେ କାର୍ଯ୍ୟକାରୀ ହୋଇଥିଲା ।

ଭାରତର ସମ୍ବିଧାନ ହେଉଛି ଆମ ଦେଶର ସର୍ବୋଚ୍ଚ ନୀତି ନିର୍ଦ୍ଧାରକ । ମୌଳିକ ରାଜନୈତିକ ବିଧାନ, ସାଂଗଠନିକ, ବିଧି ବ୍ୟବସ୍ଥା, କ୍ଷମତା ଓ ସରକାରୀ ପ୍ରତିଷ୍ଠାନଗୁଡିକର କର୍ତ୍ତବ୍ୟ ଏବଂ ମୌଳିକ ଅଧିକାର, ନିର୍ଦ୍ଦେଶିତ ନୀତି ଏବଂ ନାଗରିକର କର୍ତ୍ତବ୍ୟ ସମୂହ ସମ୍ପର୍କରେ ଏକ ବିସ୍ତୃତ ଆଇନଗତ ଦସ୍ତାବିଜ ହେଉଛି ଆମ ସମ୍ବିଧାନ ।

ସାରା ବିଶ୍ୱରେ ଆମ ସମ୍ବିଧାନ ହେଉଛି ସର୍ବବୃହତ୍ ଲିଖିତ ସମ୍ବିଧାନ । ସ୍ୱତନ୍ତ୍ରତା, ସମାନତା, ଭ୍ରାତୃଭାବ ସହ ସାମାଜିକ, ଆର୍ଥିକ ଏବଂ ରାଜନୈତିକ ନ୍ୟାୟ ପ୍ରତିଷ୍ଠା ହେଉଛି ଆମ ସମ୍ବିଧାନର ମୂଳତତ୍ତ୍ୱ । ଆମ୍ଭେମାନେ ନିଶ୍ଚିତ ଭାବେ ଆମ ସମ୍ବିଧାନର ମହତ୍ ଆଦର୍ଶ, ମୂଲ୍ୟବୋଧ ଓ ନୈତିକତାକୁ ଅନୁପାଳନ କରିବା ଉଚିତ । ବିବିଧତାରେ ଏକତା ହେଉଛି ଆମର ପରମ୍ପରା ଏବଂ ଏହି ଧାରାକୁ ବଜାୟ ରଖିବା ଆମର ଗଣତନ୍ତ୍ର ଓ ଆମ ସମ୍ବିଧାନ ପ୍ରତି ସର୍ବୋଚ୍ଚ ସମ୍ମାନ ହେବ ।

ବିଶ୍ୱର ସର୍ବବୃହତ୍ ଗଣତନ୍ତ୍ର ନିମନ୍ତେ ଆମ ସମ୍ବିଧାନ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ଯୋଗାଇ ଦେଇଛି । ଗଣତନ୍ତ୍ର ଓ ଧର୍ମନିରପେକ୍ଷର ଆଦର୍ଶ ହେଉଛି ଆମ ସମ୍ବିଧାନରେ ଆତ୍ମା । ଆଜି, ଆମର ଶାସନ ବ୍ୟବସ୍ଥା, ସାଧାରଣ ସେବା ପ୍ରଦାନ, ଜନ ସଶକ୍ତିକରଣ, ଅବହେଳିତଙ୍କ ଉତ୍ଥାନ, ସମାଜର ଦୁର୍ବଳ ବର୍ଗର କଲ୍ୟାଣ ସାଧନ, ସାମାଜିକ ନ୍ୟାୟ ଓ ସଭିଙ୍କ ପାଇଁ ସମାନ ସୁଯୋଗ ହେଉଛି ଆମ ସାମ୍ବିଧାନିକ ବିଧି ବ୍ୟବସ୍ଥାର ଅନନ୍ୟ ଦିଗ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ସର୍ବୋଚ୍ଚ ବଳିଦାନ ଅମର ଶହୀଦମାନଙ୍କ ତ୍ୟାଗ ସମ୍ପର୍କରେ ସ୍ମରଣ କରିବାକୁ ଆଜିର ଏହି ପବିତ୍ର ଅବସର ମହାର୍ଘ ସୁଯୋଗ ଆଣିଦେଇଛି । ଆଜିର ଏହି ସାଧାରଣତନ୍ତ୍ରର ଐତିହାସିକ ଦିବସରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଅବୁଲ କାଲାମ ଆଜାଦ୍,

ସମ୍ବିଧାନ ପ୍ରଣେତା ବାବା ସାହେବ ଡଃ. ଭୀମରାଓ ଆମ୍ବେଦକର ଏବଂ ପ୍ରମୁଖ ରାଷ୍ଟ୍ରନୀତିଜ୍ଞଙ୍କ ସହ ମହାନ୍ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ଆମେ ଆନ୍ତରିକ କୃତଜ୍ଞତା ଜଣାଉଛୁ ।

ସେହିପରି ଓଡିଶାର ମହାନ୍ ଯୋଦ୍ଧାମାନଙ୍କର ସଂଗ୍ରାମ, ତ୍ୟାଗ ଏବଂ ବୀରତ୍ୱ ସଂପର୍କରେ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଛି । ଆଜିର ଏହି ପବିତ୍ର ଦିବସ ଅବସରରେ ଆମେ ଆମ ମାଟିର ସେହି ମହାନ୍ ଦେଶପ୍ରେମୀ ଓ ଯଶସ୍ୱୀ ବରପୁତ୍ରମାନଙ୍କୁ ଗଭୀର କୃତଜ୍ଞତାର ସହ ସ୍ମରଣ କରିବା ଉଚିତ । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବକ୍ସି ଜଗବନ୍ଧୁ, ଜୟୀ ରାଜଗୁରୁ, ଶହୀଦ ଲକ୍ଷ୍ମଣ ନାଏକ, ବିର୍ସା ମୁଣ୍ଡା, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀ, ଡଃ ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ ଏବଂ ରାଜ୍ୟର ଆହୁରି ଅନେକ ବିଶିଷ୍ଟ ବ୍ୟକ୍ତିବିଶେଷଙ୍କ ନିଃସ୍ୱାର୍ଥପର ସେବା ଆଗାମୀ ପିଢ଼ିକୁ ଅନୁପ୍ରାଣିତ କରୁଥିବ ।

ଶାନ୍ତି ଓ ଅହିଂସାର ଭୂମି ହେଉଛି ଓଡିଶା । ଆମର ମାନବ ସମ୍ବଳ ଓ ପ୍ରାକୃତିକ ସମ୍ପଦର ସୁବିନିଯୋଗ ଏବଂ ଏକ ଅନୁକୂଳତମ ତଥା ଅଭିବୃଦ୍ଧିକାରକ ବାତାବରଣ, ଆମ ରାଜ୍ୟ ତଥା ଏହାର ଜନସାଧାରଣଙ୍କର ବିକାଶ ନିମନ୍ତେ ପର୍ଯ୍ୟାପ୍ତ ସୁଯୋଗ ଆଣିଦେଇଛି ।

ସମଗ୍ର ଦେଶ ଏବେ ମଧ୍ୟ କୋଭିଡ୍-୧୯ ମହାମାରୀ କବଳିତ । ଆମ ସମସ୍ତଙ୍କର ଦୃଢ ମନୋବଳ ଓ ନିରନ୍ତର ସହଯୋଗ ଦ୍ୱାରା ଆମ ରାଜ୍ୟ ଏହି ଭୂତାଣୁ ସଂକ୍ରମଣର ବ୍ୟାପକତାକୁ ସଫଳତାର ସହ ରୋକିପାରିଛି, ମୃତ୍ୟୁହାର ହ୍ରାସ ପାଇଛି ଏବଂ ବ୍ୟାପକ ପରୀକ୍ଷଣ ଏବଂ ସମୟଭିତ୍ତିକ ଚିକିତ୍ସା ଯୋଗୁଁ ଲକ୍ଷ ଲକ୍ଷ ଲୋକଙ୍କର ଜୀବନ ରକ୍ଷା ହୋଇପାରିଛି । ଆମ୍ଭମାନଙ୍କ ପାଇଁ ପ୍ରତ୍ୟେକ ଜୀବନ ମୂଲ୍ୟବାନ । କୋଭିଡ୍ ମାର୍ଗଦର୍ଶିକାର ସଠିକ୍ ଅନୁପାଳନ ନିମନ୍ତେ ଆମର ପ୍ରତିବଦ୍ଧତା ଦ୍ୱାରା ବର୍ତ୍ତମାନର ସଂକ୍ରମଣକୁ ଦମନ କରାଯାଇପାରିବ । ଓଡିଶାବାସୀଙ୍କ ଆନ୍ତରିକ ସହଯୋଗ ଓ ସମ୍ପୃକ୍ତି ବଳରେ ରାଜ୍ୟରେ ଟିକାକରଣ କାର୍ଯ୍ୟକ୍ରମ ଜାରି ରହିଛି ଏବଂ ଏହି ଭୂତାଣୁ ସଂକ୍ରମଣରୁ ଆମ ଲୋକମାନଙ୍କୁ ରକ୍ଷା କରିବା ପାଇଁ ଏହି ଟିକାକରଣ କାର୍ଯ୍ୟକ୍ରମକୁ ଆହୁରି ଅଧିକ ବ୍ୟାପକ କରାଯିବ ।

ଏହି ପରିପ୍ରେକ୍ଷୀରେ ମୋର ସମସ୍ତଙ୍କୁ ନିବେଦନ ଯେ, ସମସ୍ତେ ଏ ସମ୍ପର୍କରେ ସତର୍କ ରହି ସ୍ୱତଃସ୍ଫୂର୍ତ୍ତ ଭାବେ କୋଭିଡ୍ ମାର୍ଗଦର୍ଶିକାର ସଠିକ୍ ଅନୁପାଳନ କଲେ ଜନସାଧାରଣ ସୁରକ୍ଷିତ ରହିବା ସଙ୍ଗେ ସଙ୍ଗେ ସେମାନଙ୍କର ମୂଲ୍ୟବାନ ଜୀବନ ରକ୍ଷା ହୋଇପାରିବ ।

ଆଜିର ଦିନ ହେଉଛି ଆମ ସାଧାରଣତନ୍ତ୍ର ନିମନ୍ତେ ଆତ୍ମସମୀକ୍ଷାର ଦିବସ । ଦେଶର ଏକତା, ସଂହତି ଏବଂ ସମ୍ମାନକୁ ବଜାୟ ରଖିବା ହେଉଛି ଭାରତର ପ୍ରତ୍ୟେକ ନାଗରିକଙ୍କର ସର୍ବୋଚ୍ଚ ନୈତିକ କର୍ତ୍ତବ୍ୟ ତଥା ଗୁରୁଦାୟିତ୍ୱ ।

ଆଜିର ଏହି ପବିତ୍ର ଦିବସ ପାଳନ ଅବସରରେ, ଆସନ୍ତୁ, ଆମେ ସମସ୍ତେ ଏକତା ମନ୍ତ୍ରରେ ଦୀକ୍ଷିତ ହୋଇ ଦୃଢ ପ୍ରତିବଦ୍ଧତା ଓ ସଂକଳ୍ପର ସହ ଆମର ନୈତିକ କର୍ତ୍ତବ୍ୟ ସଂପାଦନ କରିବା ।

**ଜୟ ହିନ୍ଦ୍ ।**

# ସାଧାରଣତନ୍ତ୍ର ଦିବସ -୨୦୨୨ ଅବସରରେ
# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା



ପ୍ରିୟ ଭାଇ ଓ ଭଉଣୀମାନେ,

ପବିତ୍ର ସାଧାରଣତନ୍ତ୍ର ଦିବସ ଅବସରରେ ଆପଣମାନଙ୍କୁ ସମସ୍ତଙ୍କୁ ମୋର ଅଭିନନ୍ଦନ ଜଣାଉଛି ।

ଏହି ଅବସରରେ ଜାତିର ଜନକ ମହାତ୍ମା ଗାନ୍ଧୀ, ପଣ୍ଡିତ ନେହେରୁ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ମୌଲାନା ଆଜାଦ୍, ଡଃ ଆମ୍ବେଦକର, ବୀର ସୁରେନ୍ଦ୍ର ସାଏ, ବକ୍ସି ଜଗବନ୍ଧୁ, ଡଃ ରାଜେନ୍ଦ୍ର ପ୍ରସାଦ, ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ସହିଦ୍ ଲକ୍ଷ୍ମଣ ନାୟକ, ମା' ରମାଦେବୀ, ସହିଦ୍ ବାଜି ରାଉତ, ମାଳତୀ ଚୌଧୁରୀ, ପାର୍ବତୀ ଗିରି, ଡଃ ହରେକୃଷ୍ଣ ମହତାବ ଓ ବିଜୁ ପଟ୍ଟନାୟକଙ୍କ ପରି ମହାନ୍ ସଂଗ୍ରାମୀମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଦେଶର ଏକତା ଓ ସୁରକ୍ଷା ପାଇଁ ବଳିଦାନ ଦେଇଥିବା ଅମର ସହିଦ୍‌ମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ସେହିପରି ସହିଦ୍ ହୋଇଥିବା ଆମର କୋଭିଡ ଯୋଦ୍ଧାମାନଙ୍କ ପ୍ରତି ମଧ୍ୟ ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି ।

ଚଳିତ ବର୍ଷ ସାରା ଦେଶ ସ୍ୱାଧୀନତାର ୭୫ ବର୍ଷ ପୂର୍ତ୍ତି ପାଳନ କରୁଛି । ମହାନ୍ ସଂଗ୍ରାମୀ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ୧୨୫ତମ ଜୟନ୍ତୀ ମଧ୍ୟ ଚଳିତ ବର୍ଷର ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ।

ଆମର ସ୍ୱାଧୀନତା ସଂଗ୍ରାମ କେବଳ ଏକ ରାଜନୈତିକ ସଂଗ୍ରାମ ନ ଥିଲା । ଏହା ଥିଲା ସମତା ଓ ନ୍ୟାୟ ପାଇଁ ସଂଗ୍ରାମ ।  ହିଂସା ଓ ଶୋଷଣ ବିରୁଦ୍ଧରେ ସଂଗ୍ରାମ । ଆମର ସଂଗ୍ରାମ କେବଳ ଆମ ପାଇଁ ସ୍ୱାଧୀନତା ଆଣି ନଥିଲା । ଏହା ଥିଲା ସାରା ବିଶ୍ୱ ପାଇଁ ମାନବତାର ସବୁଠାରୁ ବଡ ବିଜୟ । ଆମର ସ୍ୱାଧୀନ

ମୂଲ୍ୟବୋଧ ହିଁ ସମସ୍ତ ବିବିଧତା ସତ୍ତ୍ୱେ ଭାରତକୁ ମଜବୁତ କରି ରଖିଛି । ବିବିଧତା ହିଁ ଆମର ଶକ୍ତି । ଆମ ଜୀବନଧାରାର ଗୁରୁତ୍ୱପୂର୍ଣ୍ଣ ଦିଗ ।  ଏହାକୁ ଆମେ କେବେ ବି ନଷ୍ଟ ହେବାକୁ ଦେବା ନାହିଁ ।

ସେହିପରି ଆମ ସମ୍ବିଧାନ ଏକ ଆଦର୍ଶ ସମ୍ବିଧାନ ।  ଆମ ଗଣତନ୍ତ୍ରର ଆତ୍ମା । ଏକ ମହାନ୍ ଦେଶର ନାଗରିକ ଭାବରେ ଆମର ସକଳ ଶକ୍ତିର ଆଧାର ହେଉଛି ଆମର ସମ୍ବିଧାନ । ଏକ ସମୃଦ୍ଧ ତଥା ନ୍ୟାୟପୂର୍ଣ୍ଣ ସମାଜ ଗଠନ ପାଇଁ ଏହା ଆମକୁ ସବୁବେଳେ ପ୍ରେରଣା ଦେଇଆସିଛି । ଆମ କଥା ଓ କାର୍ଯ୍ୟରେ ସମ୍ବିଧାନର ମୂଲ୍ୟବୋଧ ପ୍ରତିଫଳିତ ହୋଇପାରିଲେ, ଭାରତ ବିଶ୍ୱର ଶ୍ରେଷ୍ଠ ଗଣତାନ୍ତ୍ରିକ ରାଷ୍ଟ୍ର ହୋଇପାରିବ ।

ବନ୍ଧୁଗଣ, କରୋନାର ତୃତୀୟ ଲହରୀ ଏବେ ସାରା ବିଶ୍ୱରେ ବ୍ୟାପିଛି । ଆମେ ମଧ୍ୟ ଏହାର ମୁକାବିଲା କରୁଛୁ । ମୋର ଅନୁରୋଧ ଆମେ ଭୟଭୀତ ହେବା ନାହିଁ । କରୋନାର ସବୁ ଗାଇଡ ଲାଇନ୍ସକୁ ଠିକ୍ ଭାବରେ ପାଳନ କରିବା ଏବଂ କରୋନାକୁ ହରାଇବା । ମୋର ବିଶ୍ୱାସ, ସମସ୍ତଙ୍କ ସହଯୋଗରେ କରୋନା ଶୀଘ୍ର ଦୂର ହେବ ଏବଂ ଜୀବନ ଜୀବିକା ଆଗ ଭଳି ପୁଣି ସ୍ୱାଭାବିକ ହେବ ।

**ଜୟ ହିନ୍ଦ୍ ।**

# ସାଧାରଣତନ୍ତ୍ର ଦିବସ –୨୦୨୨ ଅବସରରେ
# ଓଡ଼ିଶାର ମାନ୍ୟବର ଜଳ ସମ୍ପଦ, ସୂଚନା ଓ ଲୋକ ସମ୍ପର୍କ ମନ୍ତ୍ରୀ
# ଶ୍ରୀ ରଘୁନନ୍ଦନ ଦାସଙ୍କ



# ବାର୍ତ୍ତା

୭୩ତମ ସାଧାରଣତନ୍ତ୍ର ଦିବସ ପାଳନ ଉପଲକ୍ଷେ ମୁଁ ରାଜ୍ୟବାସୀ ଭାଇ ଓ ଭଉଣୀମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଉଛି ।

ସ୍ୱାଧୀନ ଭାରତର ଇତିହାସରେ ସାଧାରଣତନ୍ତ୍ର ଦିବସ ଅତ୍ୟନ୍ତ ଗୁରୁତ୍ୱ ବହନ କରେ । ୭୨ ବର୍ଷ ତଳେ ଏହି ଦିବସରେ ଆମ୍ଭେ ଭାରତୀୟମାନେ ଆମ ଦେଶକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ପ୍ରତିଷ୍ଠିତ କଲୁ । ଆମ ଦେଶର ବୁଦ୍ଧିଜୀବୀ, ଚିନ୍ତାନାୟକ, ରାଷ୍ଟ୍ରନୀତିଜ୍ଞ ତଥା କିମ୍ବଦନ୍ତୀ ନେତୃବର୍ଗଙ୍କ ଚିନ୍ତନ ଓ ଫଳପ୍ରସୂ ନିଷ୍କର୍ଷ ହେଉଛି ଆମର ସମ୍ବିଧାନ । ଭାରତର ସମ୍ବିଧାନ ସଭା ଦ୍ୱାରା ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ଗୃହୀତ ହେବା ପରେ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଏହା କାର୍ଯ୍ୟକାରୀ ହୋଇଥିଲା । ଆଜି ଭାରତୀୟ ଗଣତନ୍ତ୍ର ପୃଥିବୀର ସର୍ବବୃହତ୍ ଗଣତନ୍ତ୍ରର ମାନ୍ୟତା ଲାଭ କରିଛି । ଭାରତବର୍ଷକୁ ଗଣତାନ୍ତ୍ରିକ ରାଷ୍ଟ୍ରରେ ପରିଣତ କରି ଏହାର ସମ୍ବିଧାନ ପ୍ରଣୟନ ଓ ଏହାକୁ କାର୍ଯ୍ୟକାରୀ କରିବାରେ ଦେଶର ଯେଉଁ ସୁଯୋଗ୍ୟ ସନ୍ତାନମାନେ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି, ସେମାନେ ଆମ ପାଇଁ ଚିର ନମସ୍ୟ ଓ ସ୍ମରଣୀୟ ।

ଆମେ ସମସ୍ତେ ଆମ ଜନ୍ମଭୂମିକୁ ନେଇ ଗର୍ବିତ । ବିଦେଶୀ ଶାସନରୁ ଆମ ଦେଶକୁ ମୁକ୍ତ କରିବା ପାଇଁ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଅହିଂସା ମାର୍ଗ ଥିଲା ଅନନ୍ୟ । ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ସରୋଜିନୀ ନାଇଡୁ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ପରି ଆହୁରି ଅନେକ ଜାତୀୟବାଦୀ ଦେଶପ୍ରେମୀ ଓ ଅନେକ ମହାନ୍ ସଂଗ୍ରାମୀଙ୍କ ଅବିରତ ସଂଗ୍ରାମ, ତ୍ୟାଗ ଓ ବଳିଦାନର ଫଳସ୍ୱରୂପ ଆମେ ସ୍ୱାଧୀନତା ଲାଭ କଲୁ । ସେହିପରି ଦେଶର ସ୍ୱାଧୀନତା ସଂଗ୍ରାମରେ ଓଡିଶାରୁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଶହୀଦ ଲକ୍ଷ୍ମଣ ନାଏକ, ଡକ୍ଟର ହରେକୃଷ୍ଣ ମହତାବ, ମା' ରମାଦେବୀ, ମାଳତୀ ଦେବୀ, ବିଜୁ ପଟ୍ଟନାୟକଙ୍କ ପରି ଓଡିଶାର ଅନେକ ଦେଶପ୍ରେମୀମାନଙ୍କର ସ୍ୱାଧୀନତା ସଂଗ୍ରାମ କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ଆଗାମୀ ପିଢି ନିମନ୍ତେ ପ୍ରେରଣାର ଉତ୍ସ ହୋଇ ରହିଛି ।

ସଂପ୍ରତି, ଆମ ଦେଶ ସ୍ୱାଧୀନତାର ୭୫ ବର୍ଷ ପାଳନକୁ ସ୍ମରଣୀୟ କରିବା ଉଦ୍ଦେଶ୍ୟରେ 'ଆଜାଦୀ କା ଅମୃତ' ମହୋତ୍ସବ ପାଳନ କରୁଛି । ଆମ ଦେଶ ଓ ରାଜ୍ୟର ବହୁ ଅନାଲୋଚିତ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ଏବଂ ଆମର ଗୌରବମୟ ଇତିହାସ, ସଂସ୍କୃତି ଓ ସଫଳତାର ସ୍ମୃତିଚାରଣ ଏହି ମହୋତ୍ସବ ପାଳନର ମହତ୍ତ୍ୱ ଆଭିମୁଖ୍ୟ । ଏହି ମହୋତ୍ସବରେ ସମଗ୍ର ଦେଶ ତଥା ଆମ ରାଜ୍ୟ ସାମିଲ ହୋଇ ବିବିଧ କାର୍ଯ୍ୟକ୍ରମ ଗ୍ରହଣ କରିଛି । ଏହି ଅବସରରେ ଆଜାଦ୍ ହିନ୍ଦ୍ ଫୌଜର ପ୍ରତିଷ୍ଠାତା ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କ ୧୨୫ ତମ ଜୟନ୍ତୀ ମଧ୍ୟ ପାଳନ କରାଯାଉଛି । ସାଧାରଣତନ୍ତ୍ର ଦିବସ ପାଳନର ଏହି ମହାର୍ଘ ଅବସରରେ ଆମ ଦେଶ ତଥା ରାଜ୍ୟର ସଂଗ୍ରାମୀ, ନେତୃବୃନ୍ଦ, ଶହୀଦ ଯବାନ ଓ ଆମ ସମ୍ବିଧାନର ପ୍ରଣେତାମାନଙ୍କ ପ୍ରତି ଆସନ୍ତୁ, ଆମ୍ଭେମାନେ ଭକ୍ତିପୂତ ଶ୍ରଦ୍ଧା ଓ ସମ୍ମାନ ଅର୍ପଣ କରିବା ।

କରୋନା ମୁକାବିଲା ଆମ ସମସ୍ତଙ୍କ ପାଇଁ ବଡ ଆହ୍ୱାନ ହୋଇଛି । କୋଭିଡ୍-୧୯ ମାର୍ଗଦର୍ଶିକା ଅନୁସାରେ ଚଳିତ ବର୍ଷର ସାଧାରଣତନ୍ତ୍ର ଦିବସ ପାଳନ ହେଉଥିଲେ ହେଁ ସ୍ୱାଧୀନତା ପ୍ରାପ୍ତି ଓ ବିଶ୍ୱର ଏକ ବୃହତ୍ ଗଣତନ୍ତ୍ର ପ୍ରତିଷ୍ଠା ଦିବସର ସ୍ମୃତିଚାରଣ ତଥା ମହାନ୍ ସମ୍ବିଧାନର ଗରିମା ରକ୍ଷା ଦିଗରେ ଆମର ଉତ୍ସାହ ଓ ଉଦ୍ଦୀପନା କୌଣସି ଗୁଣରେ କମ୍ ହୋଇନାହିଁ । କରୋନା ମହାମାରୀ ଆମକୁ ଏକତା ଓ ସଂହତିର ନୂଆ ବାର୍ତ୍ତା ଦେଇଛି । ନିଜକୁ କୋଭିଡ୍ ସଂକ୍ରମଣରୁ ସୁରକ୍ଷିତ ରଖିବା ସହ ନିଜ ପରିବାର, ଆତ୍ମୀୟସ୍ୱଜନ, ବନ୍ଧୁ ଓ ସମାଜର ପ୍ରତ୍ୟେକ ବର୍ଗ ମଧ୍ୟରେ ପାରସ୍ପରିକ ସହଯୋଗ ବୃଦ୍ଧି ସହକାରେ ଏହି ସଂକ୍ରମଣକୁ ରୋକିବା ଦିଗରେ ମୁଁ ସମସ୍ତଙ୍କର ସହଯୋଗ କାମନା କରୁଛି ।

ସାଧାରଣତନ୍ତ୍ର ଦିବସ ଆମ ସମ୍ବିଧାନରେ ଲିପିବଦ୍ଧ ହୋଇଥିବା ଗଣତନ୍ତ୍ରର ସ୍ୱାତନ୍ତ୍ର୍ୟ ଓ ମୂଲ୍ୟବୋଧକୁ ସୁରକ୍ଷିତ ରଖିବାର ସଂକଳ୍ପର ଦିବସ । ଆସନ୍ତୁ, ପୁଣି ଥରେ ସେହି ମହାମନୀଷୀମାନଙ୍କର ଚରମ ତ୍ୟାଗ ଓ ବଳିଦାନକୁ ମନେ ପକାଇ ଏକ ସମୃଦ୍ଧ ଓଡିଶା ତଥା ବିକଶିତ ଭାରତବର୍ଷ ଗଠନରେ ସଂକଳ୍ପବଦ୍ଧ ହୋଇ କାର୍ଯ୍ୟ କରିବା ।

**ଜୟ ହିନ୍ଦ୍ ।**

# ସମ୍ପାଦକୀୟ



ସାଧାରଣତନ୍ତ୍ର ଦିବସ ପାଳନର ପବିତ୍ର ଅବସରରେ ମୁଁ ସମସ୍ତଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଜଣାଉଛି । ଏହି ଐତିହାସିକ ମୁହୂର୍ତ୍ତରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଏବଂ ଅନ୍ୟାନ୍ୟ ନେତୃବୃନ୍ଦଙ୍କ ପରି ମହାନ୍ ଜନନେତାମାନଙ୍କ ଆଦର୍ଶଭିତ୍ତିକ ନେତୃତ୍ୱ ଅଧୀନରେ ସ୍ୱାଧୀନତା ସଂଗ୍ରାମରେ ଭାଗ ନେଇଥିବା ସଂଗ୍ରାମୀମାନଙ୍କ ପ୍ରତି ଆସନ୍ତୁ, ଆମେ ଆମର ସମ୍ମାନ ପ୍ରଦର୍ଶନ କରିବା । ଆମ ବରପୁତ୍ରମାନଙ୍କ ଉତ୍ସର୍ଗୀକୃତ ଦେଶପ୍ରେମ ଏବଂ ଜାତୀୟତାବୋଧ ଆଗାମୀ ପିଢ଼ିଙ୍କ ମନରେ ସବୁଦିନ ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ଏହି ପବିତ୍ର ଦିବସ ଅବସରରେ ଦେଶ ପାଇଁ ବଳିଦାନ ଦେଇଥିବା ଅମର ଶହୀଦମାନଙ୍କ ପ୍ରତି ମୁଁ ମୋର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଭାରତୀୟ ସମ୍ବିଧାନର ପ୍ରଣେତା ବାବା ସାହେବ ଡକ୍ଟର ଭୀମରାଓ ଆମ୍ବେଦକରଙ୍କ ପ୍ରତି ମଧ୍ୟ ଆମେ ଆମର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁ । ଆଜିର ଏହି ପବିତ୍ର ଦିବସରେ ଆମର ଭାରତୀୟ ସମ୍ବିଧାନ କାର୍ଯ୍ୟକ୍ଷମ ହୋଇଥିଲା । ଭାରତବର୍ଷକୁ ଏକ ସାର୍ବଭୌମ, ସମାଜବାଦ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ, ସାଧାରଣତନ୍ତ୍ର ରୂପେ ଅଭିହିତ କରି ଆମେ ଆମ ନିଜ ପାଇଁ ଏକ ସମ୍ବିଧାନ ପ୍ରଣୟନ କରିଥିଲେ । ଭାରତୀୟ ସମ୍ବିଧାନ ୨୬ ନଭେମ୍ବର ୧୯୪୯ ମସିହାରେ ସମ୍ବିଧାନ ପ୍ରଣୟନ ସଭା ଦ୍ୱାରା ଗୃହୀତ ହୋଇଥିଲା ଏବଂ ୨୬ ଜାନୁଆରୀ ୧୯୫୦ ମସିହାରେ ଏହା କାର୍ଯ୍ୟକ୍ଷମ ହୋଇଥିଲା । ଆମ ସମ୍ବିଧାନର ମୁଖବନ୍ଧ ଏହାର ସ୍ୱତନ୍ତ୍ରତା ଦୃଷ୍ଟିରୁ ଆମକୁ ଅନ୍ୟମାନଙ୍କଠାରୁ ପୃଥକ୍ କରିଥାଏ । ଆମ ଜାତୀୟ ପତାକା ଏବଂ ଜାତୀୟ ସଙ୍ଗୀତ ଏହି ମହାନ୍ ରାଷ୍ଟ୍ରର ପ୍ରତ୍ୟେକ ନାଗରିକ ପାଇଁ ଗର୍ବ ଏବଂ ଆତ୍ମସମ୍ମାନର ପରିଚିତି ବହନ କରିଥାଏ । ଆମ ଭାରତୀୟ ସମ୍ବିଧାନର ମହନୀୟ ଗୁଣବତ୍ତା ଏବଂ ନୈତିକତାବୋଧ ପ୍ରତି ଆମର ଆନୁଗତ୍ୟ ପ୍ରକାଶ କରିବା ଦ୍ୱାରା ଆମ ଦେଶର ଏକତା ଏବଂ ଅଖଣ୍ଡତା ବଜାୟ ରହିପାରିବ ।

ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା ମଧ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିର୍ବାହ କରିଥିଲା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ବକ୍ସି ଜଗବନ୍ଧୁ, ଶହୀଦ୍ ଲକ୍ଷ୍ମଣ ନାଏକ, ବୀର ସୁରେନ୍ଦ୍ର ସାଏ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମାଳତୀ ଚୌଧୁରୀ, ମା' ରମାଦେବୀ, ଡକ୍ଟର ହରେକୃଷ୍ଣ ମହତାବ ଏବଂ ବିଜୁ ପଟ୍ଟନାୟକଙ୍କ ପରି ଅଗଣିତ ବୀର ପୁରୋଧାମାନଙ୍କ ଦ୍ୱାରା ଅବିଶ୍ରାନ୍ତ ସଂଗ୍ରାମ ଏବଂ ନିଃସ୍ୱାର୍ଥପର ସେବା ଆମର ବହୁ ପ୍ରତୀକ୍ଷିତ ସ୍ୱପ୍ନକୁ ସାକାର କରିବାରେ ସହାୟକ ହୋଇଥିଲା । ବିପୁଳ ପ୍ରାକୃତିକ ଏବଂ ଦକ୍ଷ ମାନବ ସମ୍ବଳରେ ଭରପୂର ଓଡ଼ିଶା ରାଜ୍ୟ ଏହାର ଜନସାଧାରଣଙ୍କ ଜୀବନ ନିର୍ବାହରେ ଉନ୍ନତି ଆଣି ସେମାନଙ୍କୁ ଜାତୀୟ ମହାସ୍ରୋତରେ ସାମିଲ କରିପାରିଛି ।

ଅହିଂସା, ଶାନ୍ତି ଏବଂ ବିଶ୍ୱଭ୍ରାତୃତ୍ୱର ବାର୍ତ୍ତା ପ୍ରଚାର କରୁଥିବା ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅପୂର୍ବ ଗାଥା ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ୨୬ ଜାନୁଆରୀ ପ୍ରତ୍ୟେକ ଭାରତୀୟଙ୍କ ପାଇଁ ଗର୍ବ, ଗୌରବ ଓ ଅଫୁରନ୍ତ ଉଲ୍ଲାସର ଏକ ମହାନ୍ ଦିବସ । ଆସନ୍ତୁ, ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସଂକଳ୍ପବଦ୍ଧ ହୋଇ ଏକ ସମୃଦ୍ଧ ଏବଂ ବିକଶିତ ରାଷ୍ଟ୍ର ନିର୍ମାଣରେ ଆଗେଇ ଯିବା ।

**ଜୟ ହିନ୍ଦ୍ ।**

ଲେନିନ୍ ମହାନ୍ତି

**ସମ୍ପାଦକ**

# ଆମ ଶିକ୍ଷାର ସ୍ୱରୂପ ଓ ଆମ ସମ୍ବିଧାନ

ଡକ୍ଟର ଅଶୋକ କୁମାର ମହାନ୍ତି

୧୯୫୦ ମସିହା ପୂର୍ବରୁ ପୃଥିବୀରେ କୌଣସି ସମୟରେ କୌଣସି ଦେଶରେ ଗୋଟିଏ ସାମ୍ବିଧାନିକ ପରିଚୟରେ ବିଶ୍ୱ ଜନସଂଖ୍ୟାର ଏକ ସପ୍ତମାଂଶ ଜନସାଧାରଣ ସ୍ୱାଧୀନ ଭାବେ ଗଣତାନ୍ତ୍ରିକ ମୂଲ୍ୟବୋଧରେ ବିଶ୍ୱାସ ରଖି ବା ଆପଣେଇ ଏକାଠି ବସବାସ କରିନଥିଲେ । ୧୯୫୦ ମସିହା ପୂର୍ବରୁ ଭାରତ ମଧ୍ୟ ଏକ ସଂଯୁକ୍ତ ଦେଶ ହୋଇ ରହିନଥିଲା । ଆଧୁନିକ ବିଶ୍ୱରେ ଆମେ ହୋଇଛୁ ବିଶ୍ୱର ୨୨ତମ ପୁରୁଣା ଗଣତନ୍ତ୍ର । ଭାରତର ସମ୍ବିଧାନ ବିଶ୍ୱର ସବୁଠାରୁ ବଡ଼ ସମ୍ବିଧାନ ଓ ଏହା ୩୯୫ ଧାରା ବିଶିଷ୍ଟ ।

ଆମେରିକାରେ ଏବେ ହୋଇଥିବା ରାଷ୍ଟ୍ରପତି ନିର୍ବାଚନରେ କ୍ଷମତା ହସ୍ତାନ୍ତରକୁ ନେଇ ଯେଉଁ ପରିସ୍ଥିତି ଉପୁଜିଲା, ଭାରତରେ ସେଭଳି କେବେ ଘଟିନାହିଁ । ଏଠାରେ ନିର୍ବାଚନ ହାରିଗଲେ ଗୋଟିଏ ସରକାର ଜନମତକୁ ସମ୍ମାନ ଦେଇ ଆପେ ଆପେ ଇସ୍ତଫା ଦେଇ ଦେଇଥାଏ ଏବଂ ପରବର୍ତ୍ତୀ ନିର୍ବାଚିତ ସଂଖ୍ୟାଗରିଷ୍ଠ ଦଳକୁ କ୍ଷମତା ହସ୍ତାନ୍ତର କରି ଉତ୍କୃଷ୍ଟ ଶାସନ ପରିଚାଳନା ପାଇଁ ପଥ ପରିଷ୍କାର କରିଦେଇଥାଏ ।

ଗଣତନ୍ତ୍ର ମୂଳଦୁଆ ପ୍ରତିଷ୍ଠା କରିଥିବା ଓ ଆମକୁ ଗଣତନ୍ତ୍ର ଶିଖାଇଥିବା ଇଂଲଣ୍ଡରେ 'ନାଇଟ୍ ହୁଡ୍' ସର୍ବୋଚ୍ଚ ସମ୍ମାନ ପାଇବାବେଳେ ଇଂଲଣ୍ଡର ସାମ୍ବିଧାନିକ ମୁଖ୍ୟ ରାଜା କିମ୍ବା ରାଣୀଙ୍କ ସମକ୍ଷରେ ଆଣ୍ଠୁ ମାଡ଼ି ଆଶୀର୍ବାଦ ନେବାକୁ ପଡ଼ିଥାଏ । କିନ୍ତୁ ଆମ ଦେଶରେ ଏବେ ଏବେ ପଦ୍ମ ପୁରସ୍କାର ପାଇଥିବା ଯାଜପୁରର ଚାହାଳୀ ବା ଚାଟଶାଳୀର ଅବୈତନିକ ଶତାୟୁ 'ନନ୍ଦ ସାର୍' ହାତଟେକି ରାଷ୍ଟ୍ରପତିଙ୍କୁ ଆଶୀର୍ବାଦ ଦେଇପାରନ୍ତି । ଏହା ଭାରତୀୟମାନଙ୍କ ସଂସ୍କାର ।

ସଂସ୍କାର ଶିକ୍ଷାରୁ ଆସେ । ଉତ୍ତମ ଓ ଆଦର୍ଶ ମାନବ ତିଆରି କରିବା ପାଇଁ ଶିକ୍ଷା ହେଉଛି ପ୍ରକୃଷ୍ଟ ମାର୍ଗ । ବ୍ୟକ୍ତିଗତ ସ୍ତରରେ ଆମ୍ଭକୁ ସମଷ୍ଟିଗତ ଭାବରେ ଜାଣି ସଭ୍ୟତାକୁ ପରିପୁଷ୍ଟ କରିବା ଦିଗରେ ଶିକ୍ଷା ଏକ ପ୍ରଧାନ ଅସ୍ତ୍ର ।

ଗତ ୨୦୧୫ରେ କେନ୍ଦ୍ର ସରକାର ନଭେମ୍ବର ୨୬ ତାରିଖକୁ ଜାତୀୟ ସମ୍ବିଧାନ ଦିବସ ରୂପେ ପାଳନ କରାଯିବା ପାଇଁ ଘୋଷଣା କଲେ । ସେହି ବର୍ଷ ଥିଲା ବାବା ସାହେବ ଆମ୍ବେଦକରଙ୍କ ୧୨୫ତମ ଜନ୍ମବାର୍ଷିକୀ । ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମ୍ବିଧାନ ପ୍ରଣୟନ ସଭାଦ୍ୱାରା ଭାରତର ସମ୍ବିଧାନଟି ଗୃହୀତ ହେବା ପରେ ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଏହା ସମଗ୍ର ଦେଶରେ ପ୍ରଚଳନ ହେଲା ।

ଦେଶ ସ୍ୱାଧୀନ ହେଲାବେଳେ ଓ ସମ୍ବିଧାନ ପ୍ରଣୟନ ହେବାବେଳେ ଦେଶର ଜନସଂଖ୍ୟା ପ୍ରାୟ ୪୦ କୋଟି ଥିବାବେଳେ, ଏବେ ସ୍ୱାଧୀନତା ପାଇବାର ୭୫ ବର୍ଷ ପରେ ଆମେ ଜନସଂଖ୍ୟାରେ ପ୍ରାୟ ୧୦୦ କୋଟି ଯୋଗ କଲୁଣି । ଆମେରିକାର ସମ୍ବିଧାନ ମାତ୍ର ୨୭ ଥର ସଂଶୋଧିତ ହୋଇଥିବାବେଳେ ଆମ

ସମ୍ବିଧାନ ୧୦୪ ଥର ସଂଶୋଧନ ହେଲାଣି । ୧୯୭୬ ମସିହାରେ ହୋଇଥିବା ସମ୍ବିଧାନର ୪୨ତମ ସଂଶୋଧନର ଆଇନର ପ୍ରସ୍ତାବନାରେ 'ସମାଜବାଦୀ ଓ ଧର୍ମନିରପେକ୍ଷ' ଶବ୍ଦ ଦୁଇଟି ଯୋଗ କରାଯାଇଛି । ଏହି ସମ୍ବିଧାନ ସଂଶୋଧନ ଅନୁସାରେ ଭାରତକୁ ଏକ 'ସାର୍ବଭୌମ ସମାଜବାଦୀ ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ, ସାଧାରଣତନ୍ତ୍ର'ରୂପେ ଘୋଷଣା କରାଯାଇଛି ।

ପ୍ରଥମରୁ ସମ୍ବିଧାନ ପ୍ରଣେତାମାନେ ଯେଉଁ କେତୋଟି ବିଷୟ ଦେଶ ପାଇଁ ନିହାତି ଜରୁରୀ ମନେକରିଥିଲେ ତହିଁରୁ ଗୋଟିଏ ହେଲା ଶିକ୍ଷା ବ୍ୟବସ୍ଥା । ସବୁ ମଣିଷ ଏକାପ୍ରକାର ପ୍ରକୃତି ନେଇ ଜନ୍ମ ହୋଇଥାନ୍ତି କିନ୍ତୁ ଶିକ୍ଷା ହିଁ ସେମାନଙ୍କ ମଧ୍ୟରେ ପାର୍ଥକ୍ୟ ସୂଚାଇ ଦିଏ ବୋଲି କେହିକେହି ସମାଜବିଜ୍ଞାନୀ ମତ ଦେଇଥାନ୍ତି । ଶିକ୍ଷା ଏକ ମାନବ ଅଧିକାର ହୋଇଥିବା ସଙ୍ଗେସଙ୍ଗେ ଅନ୍ୟମାନଙ୍କୁ ମାନବ ଅଧିକାର ହୃଦୟଙ୍ଗମ କରିବାର ଏକ ମୁଖ୍ୟ ମାଧ୍ୟମ । ପୁରାଣ ପୃଷ୍ଠାରେ ମାତୃଗର୍ଭରୁ ମାନବ ଶିଶୁ ଶିକ୍ଷା ପାଇଥିବାର ଉଦାହରଣ ରହିଛି । ମାନବର ଶିକ୍ଷା ଅହରହ ଚାଲିଥାଏ । ପରିବାରରୁ, ସମାଜରୁ ଶିକ୍ଷା ଆହରଣ କରି ମାନବ ତା' ଜୀବନକୁ ପରିପୁଷ୍ଟ ଓ ସୁନ୍ଦର କରିଥାଏ । ଶିକ୍ଷାର ଅନ୍ତ ନାହିଁ । ଶିକ୍ଷା ବହୁବିଧ ।

କିନ୍ତୁ ଆନୁଷ୍ଠାନିକ ଶିକ୍ଷା ଦାରିଦ୍ର୍ୟ ଦୂର କରିପାରେ । ଦାୟିତ୍ୱବୋଧ ମନେ ପକାଇପାରେ । ସାଂସ୍କୃତିକ ମୂଲ୍ୟବୋଧ ବୁଝାଇ ଦେଇପାରେ । ପରିବେଶ ସହ ଖାପ ଖୁଆଇ ବଂଚିବାକୁ ବାଟ ବତାଇ ଦେଇପାରେ । ଶିକ୍ଷା ଆମ ବ୍ୟବହାରରେ ପରିବର୍ତ୍ତନ କରାଇ ସମାଜରେ ଆମକୁ ସୁନାଗରିକ କରି ଗଢ଼ିତୋଳେ ।

ଆଜିର ଶିଶୁ ଭବିଷ୍ୟତର ନାଗରିକ । ନାଗରିକ ବିକଶିତ ହେଲେ ଦେଶ ବିକଶିତ ହୋଇପାରିବ । ସମ୍ବିଧାନର ଅନୁଚ୍ଛେଦ ୪୫ରେ ରାଜ୍ୟଗୁଡ଼ିକ ସମ୍ବିଧାନ କାର୍ଯ୍ୟାରମ୍ଭରୁ ଦଶ ବର୍ଷ ମଧ୍ୟରେ ଅର୍ଥାତ୍ ୧୯୬୦ ସୁଦ୍ଧା ସମସ୍ତ ଶିଶୁ ୧୪ ବର୍ଷ ହେବା ପର୍ଯ୍ୟନ୍ତ ବିନା ମୂଲ୍ୟରେ ଶିକ୍ଷା ପାଇପାରିବା ପାଇଁ ବ୍ୟବସ୍ଥା ଥିଲା । ସମ୍ବିଧାନ ପ୍ରଣୟନ ହେବାର ୫୦ ବର୍ଷ ପରେ ୨୦୦୨ ମସିହାରେ ସମ୍ବିଧାନର ୮୬ତମ ସଂଶୋଧନ ସହିତ ଦେଶର ସମସ୍ତ ଶିଶୁ ୬ ବର୍ଷ ହେବା ପର୍ଯ୍ୟନ୍ତ ଏପରିକି ବିଦ୍ୟାଳୟକୁ ଯିବା ପାଇଁ ସମର୍ଥ ହେବା ପର୍ଯ୍ୟନ୍ତ ସେମାନଙ୍କ ବାଲ୍ୟାବସ୍ଥାର ଯତ୍ନ ଓ ପ୍ରାରମ୍ଭିକ ଶିକ୍ଷା ଯୋଗାଇ ଦେବାର ବ୍ୟବସ୍ଥା ରହିଛି । ଯେଉଁ ବ୍ୟବସ୍ଥାରୁ 'ଅଙ୍ଗନବାଡ଼ି' ଓ 'ବାଲ୍ୱାଡ଼ି' କେନ୍ଦ୍ର ସମଗ୍ର ଦେଶରେ କାର୍ଯ୍ୟ କରୁଛି । ୨୦୦୯ ମସିହାରେ ଶିକ୍ଷା ଅଧିକାର ଆଇନ୍ ପ୍ରଣୟନ ହୋଇ ପ୍ରାଥମିକ ଶିକ୍ଷା କ୍ଷେତ୍ରରେ କାମ କରୁଛି ।

ସମ୍ବିଧାନର ଅନୁଚ୍ଛେଦ ୪୧ରେ ଉଚ୍ଚଶିକ୍ଷା କ୍ଷେତ୍ରରେ ରାଜ୍ୟର ଆର୍ଥିକ ଅବସ୍ଥା ଓ ବିକାଶର ସର୍ତ୍ତ ଥାଇ କୌଣସି ସମୟସୀମା ଧାର୍ଯ୍ୟ କରାଯାଇ ନଥିଲା । ଉଚ୍ଚ ଶିକ୍ଷାର ଛଅଗୋଟି ଅଙ୍ଗ ଯଥା– ଅଧ୍ୟାପକ, ଅଧ୍ୟକ୍ଷ, ଶିକ୍ଷାୟତନ, ଅଭିଭାବକ, ପରିଚାଳନା କମିଟି ତଥା ଛାତ୍ରଛାତ୍ରୀ ।

ବ୍ୟକ୍ତିବିଶେଷ, ରାଜନେତା କିମ୍ବା ଅଂଚଳବାସୀଙ୍କ ଉଦ୍ୟମରେ ଏ ରାଜ୍ୟରେ ଅନେକ ମହାବିଦ୍ୟାଳୟ ପ୍ରତିଷ୍ଠା ହୋଇଛି । ଗୋଟିଏ ପରିଚାଳନା କମିଟିଦ୍ୱାରା କଲେଜଗୁଡ଼ିକ ନିୟନ୍ତ୍ରିତ । ପରିଚାଳନା କମିଟି କଲେଜ ପରିଚାଳନା କରିଥାନ୍ତି । ପରିଚାଳନା ପରିଷଦ ଦ୍ୱାରା ସଭାପତି ଓ ସଂପାଦକ ନିର୍ବାଚିତ ହୋଇଥାନ୍ତି ।

ଅଧ୍ୟାପକମାନଙ୍କ ମଧ୍ୟରୁ ଜଣେ ଭାରପ୍ରାପ୍ତ ଅଧ୍ୟକ୍ଷ ହୋଇଥାନ୍ତି । ୟୁ.ଜି.ସି/ ବିଶ୍ୱବିଦ୍ୟାଳୟ ଅନୁଦାନ– ଆୟୋଗ ପ୍ରତ୍ୟେକ ଅଧ୍ୟାପକଙ୍କ ପାଇଁ ଗୋଟିଏ 'ଓରିଏଣ୍ଟେସନ୍' ଓ 'ରିଫ୍ରେସର' କୋର୍ସର ବ୍ୟବସ୍ଥା ରଖିଛି । ଅଧ୍ୟାପକମାନଙ୍କ ଦାୟିତ୍ୱ କେବଳ ଶ୍ରେଣୀ ଗୃହରେ ନଥାଏ । ଗବେଷଣା, ସମ୍ମାନ, କର୍ମଶାଳା, ନିବନ୍ଧ ଲିଖନ, ପାଠ୍ୟଶୈଳୀ ଇତ୍ୟାଦି ବିଷୟରେ ବହୁ ଅଧ୍ୟାପକ ସ୍ପୃହା ରଖିଥାଆନ୍ତି ।

ଶିକ୍ଷାୟତନର ଉନ୍ନତି ନିମନ୍ତେ ୟୁ.ଜି.ସି, ରୁସା ଇତ୍ୟାଦି ପାଣ୍ଠି ସହିତ ବିଧାୟକ, ସାଂସଦ ପାଣ୍ଠି ମଧ୍ୟ ଏ କ୍ଷେତ୍ରରେ କାର୍ଯ୍ୟ କରିଥାଏ । ବିଶ୍ୱବ୍ୟାଙ୍କ୍ ମଧ୍ୟ ଏ କ୍ଷେତ୍ରରେ ଅର୍ଥ ସହାୟତା ଯୋଗାଇ ଦେଉଛନ୍ତି ।

ଅଭିଭାବକମାନଙ୍କ ସହ ଶିକ୍ଷାନୁଷ୍ଠାନର କର୍ମକର୍ତ୍ତା ଓ ଶିକ୍ଷକ, ଶିକ୍ଷୟିତ୍ରୀମାନଙ୍କର ସମୟେ ସମୟେ ସଭା ଆୟୋଜନ ହୋଇଥାଏ । ଶିକ୍ଷାୟତନର ଭିତ୍ତିଭୂମିର ଉନ୍ନତି, ପାଠପଢ଼ାର ମାନବୃଦ୍ଧି, ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କର ବିଶେଷ ସୁବିଧା ଅସୁବିଧା ବାବଦରେ ଅଭିଭାବକମାନେ ସଚେତନ ଥାଆନ୍ତି । ରହିବା କଥା ମଧ୍ୟ । ପିଲାର ଉନ୍ନତି ପାଇଁ 'ଟ୍ୟୁସନ' ଓ 'କୋଚିଂ' ଯୋଗାଡ଼ କରିବାରେ ଅଭିଭାବକ ବ୍ୟସ୍ତ ନ ରହି ସ୍ଥାନୀୟ ବିଦ୍ୟାଳୟ ଓ ମହାବିଦ୍ୟାଳୟର ମୌଳିକ ସମସ୍ୟା ପ୍ରତି ସଚେତନ ରହିବା ଜରୁରୀ ଓ ସରକାରଙ୍କ ଉପରେ ଏ ନିମନ୍ତେ ଚାପ ପ୍ରୟୋଗ କରିବା କଥା ।

ଆମ ମହାବିଦ୍ୟାଳୟ ବିଶ୍ୱବିଦ୍ୟାଳୟ ଉଚ୍ଚ ଶିକ୍ଷାକୁ ୫'ଟି' ଅନ୍ତର୍ଭୁକ୍ତ କରାଯାଇଛି । କଲେଜ ପରିସରରେ ଅନ୍ୟୂନ ୭ ଘଣ୍ଟା ରହିବା ଓ ବାୟୋମେଟ୍ରିକ ଦ୍ୱାରା ଉପସ୍ଥାନ ସୁନିଶ୍ଚିତ କରାଯିବାର ବ୍ୟବସ୍ଥା ରହିଛି । ଛାତ୍ର ଉପସ୍ଥାନକୁ ୭୫ ଶତାଂଶ ଦୃଢ଼ତର ଭାବେ ଧରାଯାଇଛି । ଛାତ୍ରମାନଙ୍କ ପାଇଁ ପାଠାଗାର ଓ ପ୍ରୋକ୍ଟରିଆଲ ବ୍ୟବସ୍ଥା କରାଯାଇଛି ।

ଶିକ୍ଷକ ଓ ଛାତ୍ରଛାତ୍ରୀମାନଙ୍କ ପାଇଁ ବର୍ଷ ଆରମ୍ଭରୁ ଏକ କାର୍ଯ୍ୟସୂଚୀ ପ୍ରକାଶ ପାଇଥାଏ । ଶିକ୍ଷକମାନେ ବର୍ଷକ ପାଇଁ ପାଠ୍ୟଖସଡ଼ା ଓ ଅଗ୍ରଗତି ପୁସ୍ତିକା ପ୍ରସ୍ତୁତ କରି ତଦନୁଯାୟୀ ଶିକ୍ଷାଦାନ କରି ଛାତ୍ରଛାତ୍ରୀମାନଙ୍କଠାରୁ ବାର୍ଷିକ ଫଳାଫଳ ଆଶା ରଖିଥାଆନ୍ତି । ସରକାର ଏବେ ବିଦ୍ୟାଳୟ ରୂପାନ୍ତରଣର ଏକ ଅଭିନବ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ଆଦର୍ଶ ବିଦ୍ୟାଳୟଗୁଡ଼ିକରୁ ବହୁତ ମେଧାବୀ ଛାତ୍ର ଅଧ୍ୟୟନ କରିବାର ସୁଯୋଗ ପାଇବେ ବୋଲି କୁହାଯାଇଛି । ମହାବିଦ୍ୟାଳୟର ଉଚ୍ଚ ଶିକ୍ଷାରେ ଏବେ 'ନୈତିକ ଶିକ୍ଷା' ପାଇଁ ସରକାର ଚେଷ୍ଟା କରିବା ପ୍ରଶଂସନୀୟ । ଯାହା ଫଳରେ ଛାତ୍ରସମାଜ ଭବିଷ୍ୟତ ଅବକ୍ଷୟମୁଖୀ ଅବସ୍ଥାରୁ ବଂଚି ଯାଇପାରିବ । ପରିବେଶ ସୁରକ୍ଷା, ଶିକ୍ଷା, କ୍ରୀଡ଼ା ଓ ବ୍ୟାୟାମ, ଯୋଗ, ସମାଜସେବା ପାଇଁ ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ସ୍କାଉଟ୍, ଜାତୀୟ ସେବା ଯୋଜନା, ରେଡ଼କ୍ରସ୍ ଆଦି କାର୍ଯ୍ୟକ୍ରମ ଓ ଦେଶ ରକ୍ଷା ପାଇଁ କାର୍ଯ୍ୟ ଓ ବାଳିକାମାନଙ୍କ ପାଇଁ ଆତ୍ମରକ୍ଷା କୌଶଳ ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି । ଏସବୁ ସତ୍ତ୍ୱେ ଦୁଃଖର ବିଷୟ ଯେ ଭାରତବର୍ଷର କୌଣସି ବିଶ୍ୱବିଦ୍ୟାଳୟ ଆନ୍ତର୍ଜାତିକ ସ୍ତରରେ ମାନ୍ୟତା ପାଇଥିବା ଶହେଟି ବିଶ୍ୱବିଦ୍ୟାଳୟ ମଧ୍ୟରେ ସ୍ଥାନ ପାଇପାରି ନାହାନ୍ତି ।

ଶିକ୍ଷା ପାଇଁ 'ଭାଷା' ଅପରିହାର୍ଯ୍ୟ ମାଧ୍ୟମ । ତା.୦୯.୧୨.୧୯୪୬ ମସିହାରେ ୨୯୨ ସଦସ୍ୟ ବସି ସମ୍ବିଧାନର ସଂପୂର୍ଣ୍ଣ ଚିଠା ପ୍ରସ୍ତୁତ କଲେ । ୧୯୪୯ ମସିହା ନଭେମ୍ବର ୨୧ ତାରିଖରେ ରାଜଭାଷା ଓ ରାଷ୍ଟ୍ରଭାଷା ସଂପର୍କରେ ବହୁତ ତର୍କ ବିତର୍କ ହେଲା । ଦକ୍ଷିଣ ଭାରତୀୟମାନେ ସଂସ୍କୃତକୁ ରାଷ୍ଟ୍ରଭାଷା କରିବା ପାଇଁ କହୁଥିବା ବେଳେ ଉତ୍ତର ଭାରତୀୟମାନେ ହିନ୍ଦୀ ପାଇଁ ମତାମତ ଦେଲେ । ବହୁ ଆଲୋଚନା ପରେ ନିଷ୍ପତ୍ତି ନିଆଗଲା ଯେ, ମୌଳିକ ଅଧିକାର ବ୍ୟତୀତ ଚତୁର୍ଥ ଖଣ୍ଡରେ ସମ୍ବିଧାନର ମାର୍ଗଦର୍ଶିକାରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ବହୁ ପରିମାଣରେ ସ୍ଥାନ ପାଇଲା ।

ମହାତ୍ମା ଗାନ୍ଧୀ କୌଣସି ଭାଷାକୁ ବିରୋଧ କରୁନଥିଲେ । ଘରର ଝର୍କା କବାଟ ଖୋଲା ରଖିବାକୁ କହି ସେ ସବୁ ଭାଷାକୁ ଆଦର କରୁଥିଲେ ମଧ୍ୟ ହିନ୍ଦୀ, ଇଂରାଜୀ ଓ ଆଂଚଳିକ ଭାଷା ଉପରେ ଗୁରୁତ୍ୱ ପ୍ରଦାନ କରୁଥିଲେ । ସେହିଥିରୁ ଜନ୍ମ ନେଇଥିଲା 'ତ୍ରିଭାଷୀ ସୂତ୍ର' ।

୧୯୬୭ ମସିହାରେ କୋଠାରୀ କମିଶନ ଆଂଚଳିକ ଭାଷା ବା ମାତୃଭାଷାରେ ଶିକ୍ଷାଦାନ ପାଇଁ ମତପୋଷଣ କରିଛନ୍ତି । ପ୍ରାଦେଶିକ ସ୍ତରରୁ ଶିକ୍ଷାକୁ ଶକ୍ତିଶାଳୀ ଓ ସଫଳ କରିବାକୁ ହେଲେ ମାତୃଭାଷାରେ ଶିକ୍ଷା ଦିଆଯିବା ଦରକାର । ଫଳରେ ଛାତ୍ର ଇଂରାଜୀ ପ୍ରତି ପୋଷଣ କରୁଥିବା ଭୟ ଦୂରେଇ ଯାଇ ଶିକ୍ଷାପ୍ରତି ଆଗ୍ରହ ସୃଷ୍ଟି ହେବ । ଶିକ୍ଷକ ଛାତ୍ର ମଧ୍ୟରେ ଥିବା ସଂପର୍କ ଦୃଢ଼ୀଭୂତ ହେବ । ଜଟିଳ ବିଜ୍ଞାନ ଓ ଅନ୍ୟାନ୍ୟ କଠିନ ବିଦ୍ୟାକୁ ଛାତ୍ର ଓ ଜନଗଣ ହୃଦୟଙ୍ଗମ କରିପାରିବେ ।

୧୯୬୮ ମସିହାରେ ପାର୍ଲିଆମେଣ୍ଟରେ ରାଜ୍ୟରେ ମାତୃଭାଷାରେ ଶିକ୍ଷାଦାନ ପାଇଁ ଗୁରୁତ୍ୱ ପ୍ରଦାନ କରି ପ୍ରସ୍ତାବ

ଗୃହୀତ ହୋଇଥିଲା । ମାଧ୍ୟମିକ ସ୍ତରରେ ଭାରତବର୍ଷରେ ଆଂଚଳିକ ଭାଷା ମାଧମରେ ଶିକ୍ଷାଦାନ ହେଉଛି । ମହାବିଦ୍ୟାଳୟ ସ୍ତରରେ, ତାମିଲନାଡୁ, ଆନ୍ଧ୍ରପ୍ରଦେଶ, ପଶ୍ଚିମବଙ୍ଗ, କର୍ଣ୍ଣାଟକ ଆଦି ପ୍ରଦେଶମାନଙ୍କରେ ଆଂଚଳିକ ଭାଷାରେ ଶିକ୍ଷାଦାନ ସଫଳଭାବେ ଚାଲିଛି । ଓଡ଼ିଶାରେ ଏହି କାର୍ଯ୍ୟକ୍ରମ ମଧ୍ୟ ଆରମ୍ଭ ହୋଇଛି । ଏଥିପ୍ରତି ପ୍ରତ୍ୟେକ ସ୍ତରରେ ଅଧିକ ଗୁରୁତ୍ୱ ପ୍ରଦାନ କରାଗଲେ ଅଧିକ ସୁଫଳ ମିଳିପାରନ୍ତା । ଏହାଦ୍ୱାରା ମାତୃଭାଷା ସମୃଦ୍ଧ ହେବା ସହିତ ଜାତୀୟ କାର୍ଯ୍ୟ ମଧ୍ୟ ସାଧିତ ହୋଇପାରନ୍ତା ।

ରାଷ୍ଟ୍ରର ସ୍ୱରୂପ ଆଙ୍କିବା ବା ସରକାର ଗଠନର ମାର୍ଗଦର୍ଶନ ନିମନ୍ତେ ସମ୍ବିଧାନ ଗଠିତ ହୋଇନଥିଲା । ଆଇନ ତିଆରି, କାର୍ଯ୍ୟକାରିତା ଓ ଆଇନର ଶାସନ ନିଶ୍ଚିତ କରିବାରେ ଏହା ସୀମିତ ନୁହେଁ । ସମ୍ବିଧାନ ତିଆରି ହୋଇଛି ରାଜତନ୍ତ୍ରରୁ ବା ସାମନ୍ତବାଦରୁ ମୁକ୍ତ ଏକ ପ୍ରଜାପ୍ରଧାନ ଗଣରାଜ୍ୟ ପ୍ରତିଷ୍ଠା ଲକ୍ଷ୍ୟରେ । ୩୯୫ ଧାରା ବିଶିଷ୍ଟ ଏହି ସମ୍ବିଧାନରେ ପ୍ରତିଫଳିତ ହୋଇଛି ସମାନତା, ସ୍ୱାଧୀନତା, ନ୍ୟାୟ, ସ୍ୱଧର୍ମ ସମାନତା, ବ୍ୟକ୍ତି ମର୍ଯ୍ୟାଦା, ପାରସ୍ପରିକ ସଦ୍‌ଭାବ, ଜାତିଗତ ଭେଦ ଓ ଶୋଷଣରୁ ମୁକ୍ତି, ମହିଳାଙ୍କୁ ସୁରକ୍ଷା ଓ ପୁରୁଷସମ ମର୍ଯ୍ୟାଦା ପ୍ରଦାନ ଏବଂ ଅସ୍ପୃଶ୍ୟ ଭଳି ଅମାନୁଷିକ ପ୍ରଥାର ଉଚ୍ଛେଦ, ନାଗରିକମାନଙ୍କ ମଧ୍ୟରେ ବିଜ୍ଞାନସମ୍ମତ ମାନସିକତା ଜାଗରଣର ଆହ୍ୱାନ ଅର୍ଥାତ୍ ପ୍ରାଚୀନ କୁସଂସ୍କାର ଓ ଅନ୍ଧବିଶ୍ୱାସଗୁଡ଼ିକରୁ ମୁକ୍ତ ଏକ ସ୍ୱଚ୍ଛ ଆଲୋକିତ ସମାଜର ସ୍ୱପ୍ନ । କାରଣ ଭାରତର ଜନସାଧାରଣ ହେଉଛନ୍ତି ସମ୍ବିଧାନର ପ୍ରକୃତ ଉତ୍ସ ।

ବିଶ୍ୱର ୪୯ଟି ବୃହତ୍ ସଭ୍ୟତା ମଧ୍ୟରୁ ଭାରତବର୍ଷ ଏକ ପ୍ରାଚୀନ ସଭ୍ୟତା । ଅନ୍ୟ ବୃହତ୍ ସଭ୍ୟତାଗୁଡ଼ିକ ମଧ୍ୟରୁ କେତେକ ଶିକ୍ଷାର ଆହ୍ୱାନକୁ ମୁକାବିଲା କରିନପାରି ନୂଆ ବିଶ୍ୱାସ ଓ ନୂଆ ନିୟମକୁ ରୂପାନ୍ତରିତ ହୋଇଗଲେ । ଭାରତୀୟ ସଭ୍ୟତା ତିଷ୍ଠି ରହିବାର କାରଣ ହେଲା ଏହା ଜ୍ଞାନଭିତ୍ତିକ ସଭ୍ୟତା ।

ଶିକ୍ଷାର ଉନ୍ନତି ପାଇଁ ପ୍ରତ୍ୟେକ ଭାଗୀଦାର ଅଙ୍ଗ ମଧ୍ୟରେ ଉତ୍ତମ ସମନ୍ୱୟ ରହିବା ବିଧେୟ । ଅନୁଷ୍ଠାନଗତ ପ୍ରକ୍ରିୟାକୁ ଓ ଜ୍ଞାନର ଆଧାର ଯଥା– ଆହରଣ, ସଂରକ୍ଷଣ, ସୃଷ୍ଟି ଓ ପ୍ରୟୋଗ ଇତ୍ୟାଦି ପ୍ରତି ବିଶେଷ ଦୃଷ୍ଟି ଦିଆଯିବାର ଆବଶ୍ୟକତା ରହିଛି ।

ମକ୍ରବନ (୪ର୍ଥ ଗଳି)
ନବକଳେବର ରୋଡ, ପୁରୀ–୨



# ଐତିହାସିକ ଜାନୁଆରୀ ଛବିଶ

ରମାକାନ୍ତ ନାୟକ

ଦେଶ ବ୍ୟାପୀ ହରତାଳ ଓ କଳା ପତାକା ପ୍ରଦର୍ଶନ ତଥା ଘୋର ପ୍ରତିବାଦର ଧ୍ୱନି 'ସାଇମନ କମିଶନ ଫେରିଯାଅ' ସହିତ ସାଇମନ କମିଶନ ପ୍ରତ୍ୟାବର୍ତ୍ତନ କଲେ ୧୯୨୯ ଅପ୍ରେଲ, ୧୩ ତାରିଖରେ । ଏହା ପରେ ପରେ ଜାତୀୟ କଂଗ୍ରେସର ଲାହୋର ଅଧିବେଶନରେ ଜବାହରଲାଲ ନେହେରୁଙ୍କ ସଭାପତିତ୍ୱରେ 'ପୂର୍ଣ୍ଣ ସ୍ୱରାଜ'ପ୍ରସ୍ତାବ ପୂର୍ଣ୍ଣ ସମର୍ଥନ ସହିତ ଗୃହୀତ ହେଲା । ସେହିବର୍ଷ ଡିସେମ୍ବର ୩୧ ତାରିଖ ଦିନ ଭାରତ ଇତିହାସରେ ପ୍ରଥମଥର ପାଇଁ ତ୍ରିରଙ୍ଗା ପତାକା ଉତ୍ତୋଳିତ ହେଲା । ୧୯୩୦ ମସିହା ଆରମ୍ଭରୁ ବ୍ରିଟିଶ ଶାସନରୁ ମୁକ୍ତ କରାଗଲା ବୋଲି କଂଗ୍ରେସ ଘୋଷଣା କଲା । ଗାନ୍ଧିଜୀଙ୍କର ବକ୍ତବ୍ୟ ଥିଲା, 'ଏଣିକି ସ୍ୱରାଜ କହିଲେ ପୂର୍ଣ୍ଣ ସ୍ୱାଧୀନତାକୁ ବୁଝାଇବ ।' ସେ ଦେଶବାସୀଙ୍କୁ ଆହ୍ୱାନ କଲେ ଯେ, ୧୯୩୦ ଜାନୁଆରୀ ୨୬ ତାରିଖ ଦିନ ପୁରପଲ୍ଲୀଠାରୁ ନଗର ପର୍ଯ୍ୟନ୍ତ ସଭିଏଁ ଜାତୀୟ ପତାକା ଉତ୍ତୋଳନ କରି ସ୍ୱାଧୀନତା ଦିବସ ପାଳନ କରନ୍ତୁ । ବହୁ ପୂର୍ବରୁ ନିର୍ଦ୍ଧାରିତ ଉକ୍ତ ଦିବସର ସମାରୋହ ପାଇଁ ଉଦ୍‌ଘୋଷଣା ସମଗ୍ର ଦେଶକୁ ଚଳଚଞ୍ଚଳ କରିଦେଲା । ଏହି ଅବସରରେ ବାପୁଜୀ ଉଲ୍ଲେଖ କରିଛନ୍ତି, 'ଇଂରେଜ ସରକାର କେବଳ ଭାରତୀୟମାନଙ୍କୁ ସେମାନଙ୍କର ସ୍ୱାଧୀନତାରୁ ବଞ୍ଚିତ କରିନାହାନ୍ତି, ଅଧିକନ୍ତୁ ଭାରତୀୟ ଜନତାଙ୍କୁ ଲୁଣ୍ଠନ କରି ତିଷ୍ଠିଛନ୍ତି । ଏ ଦେଶକୁ ଅର୍ଥନୈତିକ, ରାଜନୈତିକ, ସାଂସ୍କୃତିକ ଓ ଆଧ୍ୟାତ୍ମିକ – ସବୁ ଦିଗରୁ ଇଂଲଣ୍ଡ ଶୋଷଣ କରିଛି । ତେଣୁ ଆମେ ବିଶ୍ୱାସ କରୁ ଯେ ଭାରତକୁ ଇଂଲଣ୍ଡଠାରୁ ସମସ୍ତ ସମ୍ପର୍କ ଛିନ୍ନ କରିବାକୁ ହେବ । ପୂର୍ଣ୍ଣ ସ୍ୱରାଜ ହାସଲ କରିବାକୁ ପଡ଼ିବ ।' ଏଥି ସହିତ ବ୍ରିଟିଶ ସରକାରଙ୍କର ଏକଛତ୍ରବାଦୀ ଶାସନର ପ୍ରତିବାଦରେ ଆରମ୍ଭ ହୋଇଥିଲା ଆଇନ ଅମାନ୍ୟ ଆନ୍ଦୋଳନ । ବାସ୍ତବରେ ୧୯୩୦ ମସିହା ଜାନୁଆରୀ ୨୬ ତାରିଖ ଥିଲା ଭାରତ ଇତିହାସରେ ଏକ ଯୁଗାନ୍ତକାରୀ ଘଟଣା । ଭାରତର ପ୍ରଥମ ସ୍ୱାଧୀନତା ଦିବସ ଭାବରେ ବିଦିତ ଏହି ଐତିହାସିକ ଦିବସଠାରୁ ପ୍ରତିବର୍ଷ ଜାନୁଆରୀ ୨୬ ତାରିଖରେ କଂଗ୍ରେସ କର୍ମୀମାନେ ପ୍ରଭାତଫେରି କରୁଥିଲେ ଓ ଦେଶଭକ୍ତି ସଂଗୀତ ଗାନ କରି ତ୍ରିରଙ୍ଗା ପତାକା ଉତ୍ତୋଳନ କରୁଥିଲେ । ଏପରିକି ୧୯୪୭ ଜାନୁଆରୀ ୨୬ ତାରିଖରେ ଭାରତକୁ ସ୍ୱାଧୀନତା ଅର୍ପଣ କରିବା ମଧ୍ୟ ଥିଲା ଇଂରେଜ ସରକାରଙ୍କର ଇଚ୍ଛା । ମାତ୍ର ସାମ୍ପ୍ରଦାୟିକ ଦଙ୍ଗା ଏହି ପରିକଳ୍ପନାକୁ ସାକାର କରିବାରେ ଅନ୍ତରାୟ ହୋଇଥିଲା ।

ଭାରତବର୍ଷରେ ସମ୍ବିଧାନ ସଭା ଗଠନର ଦାବି ଥିଲା ରାଷ୍ଟ୍ରୀୟ ସ୍ୱାଧୀନତାର ଦାବି । ଏହି ନ୍ୟାୟ ସଙ୍ଗତ ଅଧିକାରର ପ୍ରଥମ ଫଳଶ୍ରୁତି ଥିଲା ୧୮୯୫ ମସିହାରେ, 'ସ୍ୱରାଜ୍ୟ ବିଧେୟକ' । ୧୯୨୨ରେ ମହାତ୍ମା ଗାନ୍ଧୀଙ୍କର ଆହ୍ୱାନ ଥିଲା, 'ଭାରତୀୟ ସମ୍ବିଧାନ ଭାରତୀୟମାନଙ୍କ ଇଚ୍ଛା ଅନୁସାରେ ହିଁ ହେବ ।' ୧୯୨୪ରେ ସମ୍ବିଧାନ ସଭାର ଗଠନ ପାଇଁ ବ୍ରିଟିଶ ସରକାରଙ୍କଠାରେ ଦାବି ଉପସ୍ଥାପନ କରିଥିଲେ ମୋତିଲାଲ ନେହେରୁ । କିନ୍ତୁ ତତ୍କାଳୀନ ସରକାର ଏଥିପ୍ରତି କର୍ଣ୍ଣପାତ କରିନଥିଲେ । ୧୯୨୭ ମସିହାରେ ଇଂରେଜ ସରକାରଙ୍କ ଭାରତ ମନ୍ତ୍ରୀ ବର୍କନ ହେଡ଼ଙ୍କ ମତରେ

ଯେହେତୁ ଭାରତବାସୀ ନିଜେ ସେମାନଙ୍କ ସମ୍ବିଧାନ ପ୍ରସ୍ତୁତି ନିମିତ୍ତ ଅକ୍ଷମ, ତେଣୁ ପ୍ରଶାସନିକ ସଂସ୍କାର ଉଦ୍ଦେଶ୍ୟରେ ସାଇମନ କମିଶନକୁ ପ୍ରେରଣ କରାଯାଇଥିଲା । କିନ୍ତୁ ବର୍କନ ହେଡ଼ଙ୍କର ଏତାଦୃଶ ମନ୍ତବ୍ୟକୁ ପ୍ରତିବାଦ କରି ୧୯୨୮ରେ ଦିଲ୍ଲୀଠାରେ କଂଗ୍ରେସର ନେତୃବୃନ୍ଦ ଏକ ସର୍ବଭାରତୀୟ ସଭାର ଆୟୋଜନ କରିଥିଲେ । ସେଠାରେ ଭାରତୀୟ ସମ୍ବିଧାନ ନିମନ୍ତେ ଆବଶ୍ୟକୀୟ ପରାମର୍ଶ ଦେବାକୁ ଏକ ନଅ ଜଣିଆ କମିଟି ଗଠନ କରାଯାଇଥିଲା । ଏହି କମିଟିର ଅଧକ୍ଷ ଥିଲେ ପଣ୍ଡିତ ମୋତିଲାଲ ନେହେରୁ ଏବଂ ସମ୍ପାଦକ ଥିଲେ ପଣ୍ଡିତ ଜବାହରଲାଲ ନେହେରୁ । ଏହାକୁ କୁହାଯାଉଥିଲା 'ନେହେରୁ କମିଟି' । ସାଇମନ କମିଶନ ଭାରତରେ ଭ୍ରମଣ କରୁଥିବା ବେଳେ 'ନେହେରୁ କମିଟି' ତାହାର ବିବରଣୀ ପ୍ରଦାନ କଲା ଏବଂ ୧୯୨୮ ଅଗଷ୍ଟ ମାସରେ ଏକ ସର୍ବଦଳୀୟ ସମ୍ମିଳନୀରେ ଉକ୍ତ ରିପୋର୍ଟ ଗୃହୀତ ହେଲା । ଭାରତୀୟମାନଙ୍କୁ ମତବ୍ୟକ୍ତ କରିବାର ଅଧିକାର, ସଂସଦୀୟ ସରକାର ଗଠନ, ଦୁଇକକ୍ଷ ବିଶିଷ୍ଟ ସଂସଦ, ସାବାଳକ ଭୋଟ ବ୍ୟବସ୍ଥା, କେନ୍ଦ୍ର ଓ ପ୍ରଦେଶଗୁଡ଼ିକ ମଧ୍ୟରେ ବିଭାଗ ବଣ୍ଟନ, ଭାଷାକୁ କେନ୍ଦ୍ରକରି ପ୍ରଦେଶର ସୀମା ନିର୍ଦ୍ଧାରଣ, ଏକ ସ୍ୱାଧୀନ ନ୍ୟାୟପାଳିକା ପ୍ରଭୃତି ସମ୍ବନ୍ଧରେ କମିଟି ସୁପାରିସ୍ କରିଥିଲା । କମିଟି ସାମ୍ପ୍ରଦାୟିକ ନିର୍ବାଚନ ମଣ୍ଡଳୀ ଗଠନ ବ୍ୟବସ୍ଥାକୁ ପରିହାର କରି ଉଭୟ କେନ୍ଦ୍ର ଓ ପ୍ରଦେଶ ପାଇଁ ମିଳିତ ନିର୍ବାଚନ ମଣ୍ଡଳୀ ସୁପାରିସ୍ କଲା । ରିପୋର୍ଟରେ କୁହାଗଲା ଡୋମିନିଅନ ପଦ ଭାରତର ଆଶୁ ଲକ୍ଷ୍ୟ । ମାତ୍ର ଏହି କମିଟିର ସୁପାରିସ୍‌କୁ ଇଂରେଜ ସରକାର ସ୍ୱୀକାର କରିନଥିଲେ ।

ଆଇନ ଅମାନ୍ୟ ଆନ୍ଦୋଳନ ଭାରତୀୟମାନଙ୍କର ଇଂରେଜ ଶାସନ ବିରୋଧରେ ତୀବ୍ର ବିକ୍ଷୋଦ୍‌ଗାରକୁ ଅଧିକ କ୍ରିୟାଶୀଳ କରାଇଥିଲା । ଲବଣ ଆଇନକୁ ଉଲ୍ଲଘଂନ କରି ସତ୍ୟାଗ୍ରହ ମାଧ୍ୟମରେ ମହାତ୍ମା ଗାନ୍ଧୀ ଭାରତୀୟମାନଙ୍କ ମୌଳିକ ଅଧିକାରକୁ ସାବ୍ୟସ୍ତ କରିଥିଲେ ଦାଣ୍ଡିଠାରେ । ପ୍ରଥମ ପର୍ଯ୍ୟାୟରେ ଏହାର ବ୍ୟାପକତାକୁ ଲକ୍ଷ୍ୟ କରି ଇଂରେଜ ସରକାର କଠୋର ପଦକ୍ଷେପ ନେବାକୁ ବାଧ୍ୟ ହୋଇଥିଲେ । ଗାନ୍ଧିଜୀ, ଜବାହରଲାଲ ନେହେରୁ ଏବଂ କଂଗ୍ରେସର ଅନେକ ତୁଙ୍ଗ ନେତୃବୃନ୍ଦଙ୍କ ସମେତ ସହସ୍ର ସହସ୍ର ବିକ୍ଷୁବ୍ଧ ଜନତାଙ୍କୁ ଗିରଫ କରି ବନ୍ଦୀଶାଳାକୁ ନିକ୍ଷେପ କଲେ । ଲାଠିମାଡ଼ରେ ଅଗଣିତ ଜନତା କ୍ଷତବିକ୍ଷତ ହେଲେ । କିନ୍ତୁ ଆନ୍ଦୋଳନକୁ ଦମନ କରିବାରେ ବ୍ୟର୍ଥ ହେବା ପରେ, ଇଂଲଣ୍ଡ ପାର୍ଲାମେଣ୍ଟ ଆପୋଷ ଆଲୋଚନା ମାଧ୍ୟମରେ ସମାଧାନ କରିବାକୁ ବ୍ୟଗ୍ର ହୋଇଉଠିଲେ । ଏହି ଉଦ୍ଦେଶ୍ୟରେ ଆହୂତ ତିନିଗୋଟି ଗୋଲଟେବୁଲ ବୈଠକ କିନ୍ତୁ ନିଷ୍ଫଳ ହୋଇଥିଲା । ତେବେ ତୃତୀୟ ଗୋଲଟେବୁଲ ବୈଠକରେ ଏକ ଶ୍ୱେତପତ୍ର ପ୍ରସ୍ତୁତ କରାଯାଇ ତାହାର ସମୀକ୍ଷା ପାଇଁ ବ୍ରିଟିଶ ପାର୍ଲାମେଣ୍ଟରେ ଉପସ୍ଥାପିତ ହୋଇଥିଲା । ଏହି ଶ୍ୱେତପତ୍ରକୁ ଭିତ୍ତିକରି ଏକ ଚିଠା ପ୍ରସ୍ତାବ ପାର୍ଲାମେଣ୍ଟ ଦ୍ୱାରା ଅନୁମୋଦିତ ହେଲା । ଏହା ଥିଲା ୧୯୩୫ ଭାରତ ଶାସନ ଆଇନ । ଏହି ଆଇନ ଅନୁଯାୟୀ ଭାରତ ଶାସନର ଭବିଷ୍ୟତ ନିର୍ଦ୍ଧାରଣ ସମ୍ପର୍କରେ ଚୂଡ଼ାନ୍ତ ନିଷ୍ପତ୍ତି ନେବାର ଅଧିକାର ବ୍ରିଟିଶ ପାର୍ଲାମେଣ୍ଟକୁ ଅର୍ପିତ ହେଲା । ଉକ୍ତ ପ୍ରସ୍ତାବରେ ସର୍ବ ଭାରତୀୟ ରାଷ୍ଟ୍ର ସଂଘ ପ୍ରତିଷ୍ଠା, ଦୁଇ ସଂସଦ ବିଶିଷ୍ଟ ବ୍ୟବସ୍ଥାପକ ସଭା ଗଠନ, ବଡ଼ଲାଟ୍ ଓ ମନ୍ତ୍ରୀ ପରିଷଦକୁ ନେଇ ସଂଘୀୟ କାର୍ଯ୍ୟପାଳିକା ଗଠନ, ବଡ଼ଲାଟ୍‌ଙ୍କୁ ସହାୟତା କରିବାକୁ ତିନିଜଣ ପରାମର୍ଶଦାତା ନିଯୁକ୍ତି, ରାଷ୍ଟ୍ର ସଂଘ ତାଲିକା, ପ୍ରାଦେଶିକ ତାଲିକା ଓ ମିଳିତ ତାଲିକା ପ୍ରସ୍ତୁତ କରାଯାଇ କାର୍ଯ୍ୟ ପରିସର ନିର୍ଦ୍ଧାରଣ, ସଂପତ୍ତିଗତ ଯୋଗ୍ୟତା ଉପରେ ଆଧାରିତ ଭୋଟ ଦେବାର ଅଧିକାର ପ୍ରଦାନ, ସଂଘୀୟ ବ୍ୟବସ୍ଥାପକ ସଭାର ଆଇନ ପ୍ରଣୟନ କ୍ଷମତା, ବଡ଼ଲାଟ୍‌ଙ୍କର ବ୍ୟବସ୍ଥାପକ ସଭାଠାରୁ ଅଧିକ କ୍ଷମତା ଉପଭୋଗ, ରିଜର୍ଭ ବ୍ୟାଙ୍କ ପ୍ରତିଷ୍ଠା, ସଂଘୀୟ ବିଚାରାଳୟ ପ୍ରତିଷ୍ଠା ଏବଂ ପ୍ରାଦେଶିକ ସ୍ୱାୟତ୍ତ ଶାସନର ପ୍ରବର୍ତ୍ତନ ଇତ୍ୟାଦି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ସ୍ଥାନିତ ହୋଇଥିଲା । ବାସ୍ତବରେ ୧୯୩୫ ମସିହା ଆଇନ ଭାରତରେ ଇଂରେଜମାନଙ୍କର ସ୍ୱାର୍ଥରକ୍ଷା ପାଇଁ ଚତୁର ଲୋକମାନଙ୍କର ଏକ ଷଡ଼ଯନ୍ତ୍ର ଥିଲା । ଏହାକୁ ସମାଲୋଚନା କରି ଜବାହରଲାଲ ନେହେରୁ କହିଥିଲେ, 'ନୂଆ ସମ୍ବିଧାନ ଶକ୍ତ ବ୍ରେକ୍ ଥାଇ ଇଞ୍ଜିନ ନଥିବା ଏକ ଗାଡ଼ି ।' ସେ ଏହାକୁ ଦାସତ୍ୱର ସନନ୍ଦ ବୋଲି

ବ୍ୟାଖ୍ୟା କଲେ । କଂଗେସ ନେତୃମଣ୍ଡଳୀ ଏହାକୁ 'ସାମ୍ରାଜ୍ୟବାଦୀ ଶାସନ ଓ ଅର୍ଥନୈତିକ ଶୋଷଣ' ଉପରେ ପ୍ରସ୍ତୁତ ହୋଇଛି ବୋଲି ବର୍ଣ୍ଣନା କଲେ ।

୧୯୩୯ରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ଅୟମାରମ୍ଭ ସହିତ ଭାରତୀୟ ମୁକ୍ତି ସଂଗ୍ରାମର ଅନ୍ୟ ଏକ ଅଧ୍ୟାୟ ଉନ୍ମୋଚିତ ହେଲା । ୧୯୪୧ରେ ଭାରତ ଗସ୍ତରେ ଆସିଥିବା କ୍ରିପ୍ସ ମିଶନ ଯେତେବେଳେ ଭାରତକୁ ବିଭାଜନ କରିବାର ଚକ୍ରାନ୍ତମୂଳକ ପନ୍ଥା ଆବିଷ୍କାର କରିଥିଲା, ତାହା ଉଦ୍‌ବେଜିତ କରିଥିଲା ଜାତିର ଜନକ ମହାତ୍ମା ଗାନ୍ଧୀଙ୍କୁ । ଇଂରେଜମାନଙ୍କର ଆଉ ଗୋଟିଏ ମୁହୂର୍ତ୍ତ ଭାରତରେ ରହିବାର ଅଧିକାର ନାହିଁ ବୋଲି ସେ ଉପଲବ୍‌ଧି କଲେ । ଇଂରେଜମାନଙ୍କର ନକାରାତ୍ମକ ମନୋଭାବ ତାଙ୍କୁ ଖୁବ୍ ବ୍ୟଥିତ କରିଥିଲା । ଇଂରେଜମାନଙ୍କୁ ଭାରତ ଛାଡ଼ି ଯଥାଶୀଘ୍ର ଚାଲିଯିବା ପାଇଁ ପରାମର୍ଶ ଦେବା ଉଦ୍ଦେଶ୍ୟରେ ୧୯୪୨ ଅଗଷ୍ଟ ୮ ତାରିଖରେ ଭାରତୀୟ ଜାତୀୟ କଂଗ୍ରେସର ବମ୍ବେ ଅଧିବେଶନରେ ଗୃହୀତ ହୋଇଥିଲା 'ଭାରତ ଛାଡ଼ ପ୍ରସ୍ତାବ' । ବ୍ରିଟିଶ ସରକାର ବିରୁଦ୍ଧରେ ସାଧାରଣ ଜନତାଙ୍କୁ ଉଦ୍‌ବୋଧନ ଦେଇ ଗାନ୍ଧିଜୀ ବ୍ୟକ୍ତ କରିଥିଲେ, 'ଏହି ମୁହୂର୍ତ୍ତଠାରୁ କି ପୁରୁଷ କି ନାରୀ ଆପଣମାନେ ସମସ୍ତେ ନିଜକୁ ଜଣେ ଜଣେ ସ୍ୱାଧୀନ ମଣିଷ ବୋଲି ବିବେଚନା କରନ୍ତୁ । ପୂର୍ଣ୍ଣ ସ୍ୱାଧୀନତା ବ୍ୟତୀତ ମୁଁ ଅନ୍ୟ କୌଣସିଥିରେ ସନ୍ତୁଷ୍ଟ ହେବି ନାହିଁ । ଆମେ କରିବୁ ନଚେତ୍ ମରିବୁ ।' ଗାନ୍ଧୀଙ୍କର ଏହି ଉଦ୍‌ବୋଧନ ସମଗ୍ର ଦେଶରେ ତୀବ୍ର ଆଲୋଡ଼ନ ସୃଷ୍ଟି କଲା । ସମଗ୍ର ଦେଶରେ ବିପ୍ଳବର ସ୍ୱର ପ୍ରତିଧ୍ୱନିତ ହେଲା । ବ୍ରିଟିଶ ସରକାର ଏହି ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରିଥିଲେ ମଧ୍ୟ ଏହାର ଫଳାଫଳ ସୁଦୂରପ୍ରସାରୀ ଥିଲା । ସ୍ୱାଧୀନତା ପ୍ରାପ୍ତି ପାଇଁ ଏହା ଭାରତୀୟମାନଙ୍କ ମନରେ ବିପୁଳ ଉନ୍ମାଦନା ସୃଷ୍ଟି କରିଥିଲା । ଅସୀମ ପ୍ରେରଣା, ଅଦମ୍ୟ ଉତ୍ସାହ ସହିତ ବୀରଦର୍ପରେ ଭାରତୀୟମାନେ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ । ବ୍ରିଟିଶ ସାମ୍ରାଜ୍ୟର ଗୌରବ ରବିକୁ ଭାରତବର୍ଷରୁ ଅସ୍ତମିତ କରିବା ପାଇଁ ଆବାହନୀ ସଂଗୀତ ଗାଇଥିଲା ଭାରତଛାଡ଼ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବ । ବଡ଼ଲାଟ୍ ଲିନଲିଥଗୋ ଇଂଲଣ୍ଡ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କ ନିକଟକୁ ପତ୍ର ଲେଖିଲେ, '୧୮୫୭ ପରେ ଭାରତଛାଡ଼ ଆନ୍ଦୋଳନ ସବୁଠାରୁ ସାଂଘାତିକ ଜନବିପ୍ଳବ ।' 'ଭାରତ ଛାଡ଼' କେବଳମାତ୍ର ଗୋଟିଏ ସ୍ଲୋଗାନ ନଥିଲା । ସମୟ ସ୍ରୋତରେ ଏହି ସ୍ଲୋଗାନ ନିଷ୍ପ୍ରଭ ହୋଇଯାଇ ନଥିଲା । ଏହା ଥିଲା ଭାରତବର୍ଷର ଆତ୍ମାର ଚିତ୍କାର । 'ଭାରତ ଛାଡ଼' ସ୍ୱରକୁ ଅବଦମିତ କରିବା ଉଦ୍ଦେଶ୍ୟରେ ବ୍ରିଟିଶ ସରକାର ବହୁବିଧ ପଦକ୍ଷେପ ଗ୍ରହଣ କରିଥିଲେ ମଧ୍ୟ ଏହାକୁ କ୍ଷୀଣ କରିବା ପରିବର୍ତ୍ତେ ପାଞ୍ଚବର୍ଷ ପରେ ଏହା ସଶକ୍ତ ହୋଇ 'ଏସିଆ ଛାଡ଼' ସ୍ୱରରେ ରୂପାନ୍ତରିତ ହୋଇଥିଲା । ବଙ୍ଗଳାରେ ଉତ୍କଟ ଦୁର୍ଭିକ୍ଷ ପଡ଼ିଥିବା ବେଳେ, ଇଂରେଜ ସରକାର ଭାରତରୁ ଖାଦ୍ୟଶସ୍ୟ ରପ୍ତାନି କରୁଥିଲେ । ୧୯୪୩–୪୪ରେ ସରକାରୀ ରିପୋର୍ଟ ବ୍ୟକ୍ତ କରିଥିଲା 'ବଙ୍ଗଳାରେ ଦୁର୍ଭିକ୍ଷ ଯୋଗୁଁ ପନ୍ଦରରୁ କୋଡ଼ିଏ ଲକ୍ଷ ପର୍ଯ୍ୟନ୍ତ ଲୋକ ମୃତ୍ୟୁବରଣ କରିଥିଲେ । ଗାନ୍ଧିଜୀଙ୍କୁ ବନ୍ଦୀ କରି ଆଗା ଖାଁ ପ୍ରାସାଦକୁ ପ୍ରେରଣ କରିବା ଓ ଭାରତୀୟମାନଙ୍କୁ କୋରଡ଼ା ମାଡ଼ କରିବା ନୈତିକତା ଦୃଷ୍ଟିରୁ ଆମକୁ ହିଟଲର ପାଖାପାଖି ନେଇଆସିଛି । ବ୍ରିଟିଶ ସମ୍ରାଟ୍ ତୁରନ୍ତ ଗାନ୍ଧିଜୀଙ୍କୁ ମୁକ୍ତ କରି ତାଙ୍କ ମନ୍ତ୍ରିମଣ୍ଡଳର ମୁଖ୍ୟ ଅପରାଧ ପାଇଁ ଗାନ୍ଧୀଙ୍କୁ କ୍ଷମା ପ୍ରାର୍ଥନା କରିବା ଉଚିତ ।'

ଭାରତଛାଡ଼ ଆହ୍ୱାନ ଦେଇ ଜେଲ ମଧ୍ୟରେ ବନ୍ଦୀ ଜୀବନ ଭୋଗିବାକୁ ପଡ଼ିବ ବୋଲି ଗାନ୍ଧିଜୀ କେବେହେଲେ ଆଶା କରିନଥିଲେ । ଗୋଟିଏ ମହାସମର କାଳରେ, ଯେତେବେଳେ ଜାପାନର ଆକ୍ରମଣାତ୍ମକ ଅଗ୍ରସର କ୍ଷିପ୍ର ହେଉଥିଲା, ସେହି ସମୟରେ ଇଂରେଜ ସରକାର ସମସ୍ତ ଭାରତୀୟ ନେତାମାନଙ୍କୁ ବନ୍ଦୀ କରିଦେଲେ । ବ୍ରିଟିଶ ସୈନିକ ଲୋକମାନଙ୍କୁ ନିର୍ମମ ଭାବରେ ଦମନ କରିବାକୁ ସାମାନ୍ୟ କୁଣ୍ଠା ପ୍ରକାଶ କରୁନଥିଲେ । ୧୯୪୨ ଅଗଷ୍ଟ ୯ ତାରିଖରେ ତ୍ରିରଙ୍ଗା ପତାକା ଉଡ଼ାଇବାକୁ ଯାଇ ଅନେକ ଯୁବକଯୁବତୀ ଶହୀଦ ହେଲେ । ଇତିମଧ୍ୟରେ ନୂତନ ବଡ଼ଲାଟ୍ ୱାଭେଲ ପତ୍ରଲେଖି ଜଣାଇଲେ ଯେ, ଭାରତକୁ ସ୍ୱାଧୀନତା ଦେବା ପାଇଁ ବ୍ରିଟିଶ ସରକାର ଆନ୍ତରିକ ଭାବରେ ଇଚ୍ଛା କରନ୍ତି । କିନ୍ତୁ କଂଗ୍ରେସ ଭାରତ ଛାଡ଼ ପ୍ରସ୍ତାବ ପ୍ରତ୍ୟାହାର ନକଲେ,

ନେତାମାନେ ଜେଲରୁ ଛାଡ଼ ପାଇବେ ନାହିଁ । ବଡ଼ଲାଟ୍ ୱାଭେଲଙ୍କ ଅଧ୍ୟକ୍ଷତାରେ ୧୯୪୫ ଜୁନ ୨୫ ତାରିଖରୁ ସିମଳା ଆଲୋଚନା ଆରମ୍ଭ ହୋଇ ଜୁଲାଇ ୧୪ ତାରିଖ ପର୍ଯ୍ୟନ୍ତ ଚାଲିଲା । ସିମଳା ସମ୍ମିଳନୀ ସମାପ୍ତିର ଦୁଇ ସପ୍ତାହ ପରେ ୧୯୪୫ ଜୁଲାଇ ମାସରେ ଇଂଲଣ୍ଡ ନିର୍ବାଚନରେ ଅପ୍ରତ୍ୟାଶିତ ଭାବରେ ଚର୍ଚ୍ଚିଲଙ୍କ ଜାଠ ଦଳ ପରାଜିତ ହେଲା । ଶ୍ରମିକ ଦଳର ନେତା ଅଟଲୀ ପ୍ରଧାନମନ୍ତ୍ରୀ ପଦରେ ଆସୀନ ହେଲେ । ଶ୍ରମିକ ଦଳ ଭାରତବର୍ଷକୁ ସ୍ୱାଧୀନତା ଦେବା ପାଇଁ ପୂର୍ବରୁ ପ୍ରତିଶ୍ରୁତି ପ୍ରଦାନ କରିଥିଲା । ଇଂଲଣ୍ଡ ଜନସାଧାରଣ ନିର୍ବାଚନ ମାଧ୍ୟମରେ ଏହାକୁ ଅନୁମୋଦନ କଲେ । ୧୯୪୬ ଆଦ୍ୟ ଭାଗରେ ବ୍ରିଟିଶ ସରକାରଙ୍କ ସହିତ ପରାମର୍ଶ କରି ୱାଭେଲ ଭାରତରେ ନିର୍ବାଚନ ଘୋଷଣା କଲେ । ୧୯୪୬ ମାର୍ଚ୍ଚ ୧୫ ତାରିଖ ଦିନ ପ୍ରଧାନମନ୍ତ୍ରୀ ଅଟଲୀ ହାଉସ ଅଫ୍ କମନ୍ସରେ ଘୋଷଣା କଲେ ଯେ, ଇଂରେଜମାନେ ଭାରତ ଛାଡ଼ିବାକୁ ନିଷ୍ପତ୍ତି ନିଆଯାଇଛି । ଏଥର ଭାରତବର୍ଷରେ ଜାତୀୟ ସରକାର ଗଠନ ଦାୟିତ୍ୱ କେବଳ ବଡ଼ଲାଟ୍‌ଙ୍କ ଉପରେ ନିର୍ଭର ନ କରି ବ୍ରିଟିଶ ସରକାର ତାଙ୍କର ତିନିଜଣ ବିଶିଷ୍ଟ କ୍ୟାବିନେଟ ମନ୍ତ୍ରୀଙ୍କୁ ଏହି ଦିଗରେ ନିଷ୍ପତ୍ତି ନେବା ପାଇଁ ଭାରତକୁ ପ୍ରେରଣ କଲେ । ଏହି କମିଟିକୁ କ୍ୟାବିନେଟ ମିଶନ କୁହାଯାଉଥିଲା ।

କ୍ୟାବିନେଟ ମିଶନ ଭାରତବର୍ଷରେ ଚାରିମାସ ଅବସ୍ଥାନ କରି ସମସ୍ତ ନେତା ଓ ସମସ୍ତ ଶ୍ରେଣୀର ଜନତାଙ୍କ ସହିତ ବିଶଦ୍ ଆଲୋଚନା କରି ଏକମାସ ପରେ ଜାତୀୟ କଂଗ୍ରେସ ଓ ମୁସଲିମ ଲିଗ୍‌ର ବିଚାର ପାଇଁ କେତେକ ଗୁରୁତ୍ୱପୂର୍ଣ୍ଣ ପ୍ରସ୍ତାବ ଉପସ୍ଥାପନ କରିଥିଲା । ଭାରତବର୍ଷ ଗୋଟିଏ କେନ୍ଦ୍ର ଶାସନ ଅଧୀନରେ ରହିବ । ସମଗ୍ର ଭାରତର ବୈଦେଶିକ ନୀତି, ପ୍ରତିରକ୍ଷା ଓ ଗମନାଗମନ କେନ୍ଦ୍ର ଦ୍ୱାରା ନିୟନ୍ତ୍ରିତ ହେବ । ଦେଶରେ ସମ୍ପ୍ରଦାୟ ଭିତ୍ତିରେ ଦୁଇ ପ୍ରକାର ରାଜ୍ୟ ରହିବେ, ଯଥା ହିନ୍ଦୁ ବହୁଳ ଓ ମୁସଲମାନ ବହୁଳ ରାଜ୍ୟ । ପ୍ରାଦେଶିକ ସରକାରମାନେ ବୈଦେଶିକ, ପ୍ରତିରକ୍ଷା ଓ ଗମନାଗମନ ବ୍ୟତୀତ ପ୍ରଦେଶର ଅନ୍ୟସବୁ ବିଷୟ ପରିଚାଳନା କରିବେ । କ୍ୟାବିନେଟ ମିଶନ ଭାରତରୁ ବିଦାୟ ନେବାର ଅଢ଼େଇମାସ ପରେ କଲିକତାରେ ଭୟଙ୍କର ସାମ୍ପ୍ରଦାୟିକ ହିଂସାକାଣ୍ଡ ଘଟିଲା । ଏଥିରେ ମର୍ମାହତ ଗାନ୍ଧିଜୀ କହିଲେ, 'ଗୃହଯୁଦ୍ଧର ଇଏ ଆରମ୍ଭ ମାତ୍ର ।' ୧୯୪୬ ମେ ୧୬ ତାରିଖରେ ବ୍ରିଟିଶ ସରକାରଙ୍କ ଅନୁମୋଦନ କ୍ରମେ ଏକ ବିଜ୍ଞପ୍ତି ପ୍ରକାଶ ପାଇଲା । ଏହା ଅନୁଯାୟୀ ଭାରତ ୟୁନିଅନ ଓ ଦେଶୀୟ ରାଜ୍ୟମାନେ ବୈଦେଶିକ ନୀତି, ପ୍ରତିରକ୍ଷା ଓ ଗମନାଗମନ ବିଭାଗ ତିନୋଟିର ଦାୟିତ୍ୱ ଗ୍ରହଣ କରିବେ । ଅବଶିଷ୍ଟ ବିଭାଗର ଦାୟିତ୍ୱ ରାଜ୍ୟମାନେ ନିର୍ବାହ କରିବେ । ବିଜ୍ଞପ୍ତି ଅନୁସାରେ ପ୍ରଦେଶଗୁଡ଼ିକୁ ତିନି ଭାଗରେ ବିଭକ୍ତ କରିଦିଆଗଲା । 'ଖ' ବିଭାଗରେ ପଞ୍ଜାବ, ବେଲୁଚିସ୍ଥାନ, ସିନ୍ଧୁ ଓ ସୀମାନ୍ତ ପ୍ରଦେଶ, 'ଗ' ବିଭାଗରେ ବଙ୍ଗ ଓ ଆସାମ ରହିଲେ । ଅନ୍ୟ ସମସ୍ତ ହିନ୍ଦୁ ବହୁଳ ରାଜ୍ୟଗୁଡ଼ିକୁ 'କ' ବିଭାଗରେ ସ୍ଥାନିତ କରାଗଲା । ୧୯୪୬ ସେପ୍ଟେମ୍ବର ୨ ତାରିଖରେ ନେହେରୁଙ୍କ ନେତୃତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠିତ ହେଲା । ଡିସେମ୍ବର ୯ ତାରିଖରେ ଜାତୀୟ କଂଗ୍ରେସ ତାହାର ଭବିଷ୍ୟତ କାର୍ଯ୍ୟପନ୍ଥା ଆରମ୍ଭ କଲା । କେବଳ ମାତ୍ର ୨୧୧ ଜଣ ସଦସ୍ୟଙ୍କୁ ନେଇ ଆରମ୍ଭ ହେଲା ସମ୍ବିଧାନ ପ୍ରଣୟନ ସଭା । ୧୯୪୭ ଜୁନ ୨୬ ତାରିଖରେ ଲର୍ଡ଼ ମାଉଣ୍ଟବେଟେନ ପାକିସ୍ଥାନ ପାଇଁ ଏକ ପୃଥକ ସମ୍ବିଧାନ ପ୍ରଣୟନ ସଭା ଗଠନ ପାଇଁ ସ୍ୱୀକୃତି ପ୍ରଦାନ କଲେ ।

୧୯୪୭ ଫେବୃଆରୀ ୨୦ ତାରିଖ ଦିନ ବ୍ରିଟିଶ ପ୍ରଧାନମନ୍ତ୍ରୀ ଅଟଲୀ ପାର୍ଲାମେଣ୍ଟରେ ଘୋଷଣା କଲେ 'ମହାମାନ୍ୟ ବ୍ରିଟିଶ ସମ୍ରାଟ୍ ଚାହାନ୍ତି ଯେ, ୧୯୪୮ ଜୁନ ସୁଦ୍ଧା ଏକ ଦାୟିତ୍ୱବାନ ଭାରତୀୟ ସରକାର ହାତରେ କ୍ଷମତା ଅର୍ପଣ କରାଯିବ ।' ସେହିଦିନ ଅଟଲୀ ପୁନଶ୍ଚ ଘୋଷଣା କଲେ, 'ଯୁଦ୍ଧକାଳୀନ ବଡ଼ଲାଟ୍ ଲର୍ଡ଼ ୱାଭେଲଙ୍କର କାର୍ଯ୍ୟକାଳ ସମାପ୍ତ ହେଲା ।' ମାର୍ଚ୍ଚ୨୨ ତାରିଖରେ ଭାରତର ଶେଷ ବଡ଼ଲାଟ୍ ଭାବରେ ଲର୍ଡ଼ ମାଉଣ୍ଟବେଟେନ ଦାୟିତ୍ୱ ଗ୍ରହଣ କଲେ । ୧୯୪୭ ଜୁନ୨୦ ତାରିଖରେ ବଙ୍ଗ ଓ ୨୩ ତାରିଖରେ ପଞ୍ଜାବ ବିଭାଜିତ ହେଲା । ସିନ୍ଧୁ ଆସେମ୍ବ୍ଲି ପାକିସ୍ଥାନ ସହିତ ସମ୍ମିଶ୍ରିତ ହେବାକୁ ନିଷ୍ପତ୍ତି କଲା । ଭାରତ ବିଭାଜନର ସବୁଠାରୁ କରୁଣ ଦୃଶ୍ୟ ସୀମାନ୍ତ ପ୍ରଦେଶରେ

ଅଭିନୀତ ହୋଇଗଲା । ଜିନ୍ନାଙ୍କ ଚକ୍ରାନ୍ତ ଓ ମୁସଲମାନମାନେ ପାକିସ୍ଥାନରେ ରହିବେ ବୋଲି ଇଂରେଜମାନଙ୍କର ଅନ୍ଧବିଶ୍ୱାସର ଶିକାର ହୋଇ ସୀମାନ୍ତ ପ୍ରଦେଶ ପାକିସ୍ଥାନରେ ମିଶିଗଲା । ୧୯୪୭ ଜୁଲାଇ ପ୍ରଥମ ସପ୍ତାହରେ ଜିନ୍ନା ନିଜକୁ ପାକିସ୍ଥାନର ଗଭର୍ଣ୍ଣର ଜେନେରାଲ ଭାବରେ ଘୋଷଣା କଲେ । ୧୯୪୭ ଜୁଲାଇ ୪ ତାରିଖରେ ଆଗତ ହୋଇ ଜୁଲାଇ ୧୯ ତାରିଖରେ ଭାରତ ସ୍ୱାଧୀନତା ବିଲ୍ ବ୍ରିଟିଶ ପାର୍ଲାମେଣ୍ଟରେ ଗୃହୀତ ହୋଇଗଲା । ଏହା ପରେ ବଡ଼ଲାଟ୍ ମଧ୍ୟବର୍ତ୍ତୀ ସରକାରଙ୍କୁ ଦୁଇଭାଗରେ ବିଭକ୍ତ କରି ଗୋଟିଏକୁ ଭାରତ ଓ ଅନ୍ୟଟିକୁ ପାକିସ୍ଥାନ ଶାସନଭାର ଅର୍ପଣ କଲେ । ପୂର୍ବରୁ ମାଉଣ୍ଟବେଟେନ ଘୋଷଣା କରିଥାଆନ୍ତି ଯେ, ଅଗଷ୍ଟ ୧୫ ତାରିଖରେ ଭାରତବର୍ଷ ସ୍ୱାଧୀନତା ଲାଭ କରିବ । ଏହି ତାରିଖଟିର ତାତ୍ପର୍ଯ୍ୟ ହେଉଛି, ଦୁଇବର୍ଷ ପୂର୍ବେ ଏହି ଦିନରେ ଦ୍ୱିତୀୟ ବିଶ୍ୱଯୁଦ୍ଧର ପରିସମାପ୍ତି ଘଟିଥିଲା । ଅଗଷ୍ଟ ୧୫ ତାରିଖରେ ବିଶ୍ୱ ସୁପ୍ତ ଥିବା ସମୟରେ ଭାରତବର୍ଷ ସ୍ୱାଧୀନତା ଲାଭକଲା । ରାଜ୍ୟ ସଚିବ ଲର୍ଡ଼ ଲିଷ୍ଟୋୱେଲ କହିଲେ, 'କେବଳ ଆଇନ ପ୍ରଣୟନ ମାଧ୍ୟମରେ ପୃଥିବୀର ସର୍ବାଧିକ ସଂଖ୍ୟକ ଲୋକ ପୂର୍ବରୁ କେବେହେଲେ ପୂର୍ଣ୍ଣ ସ୍ୱାଧୀନତା ହାସଲ କରିନଥିଲେ ।' ହାଉସ ଅଫ ଲର୍ଡ଼ସରେ ସାମୁଏଲ କହିଲେ 'ଭବିଷ୍ୟତର ବଂଶଧରମାନଙ୍କ ପାଇଁ ଏହି ବିଲ୍‌ଟି ଏକ ନୀତିଶିକ୍ଷା । ବିନା ଯୁଦ୍ଧରେ ଏହା ଏକ ଶାନ୍ତିର ଚୁକ୍ତି ।' ବଲ୍ଲଭଭାଇ ପଟେଲ କହିଥିଲେ, ଗୋଟିଏ ପ୍ରେସ ସମ୍ମିଳନୀରେ, 'ଏହା ଭାରତର ସବୁଠାରୁ ଶ୍ରେଷ୍ଠ କୃତିତ୍ୱପୂର୍ଣ୍ଣ କାର୍ଯ୍ୟ ।'

ଭାରତ ସ୍ୱାଧୀନତା ଆଇନର ଧାରାଗୁଡ଼ିକ ଥିଲା, ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ଓ ପାକିସ୍ଥାନ ଦୁଇଟି ସ୍ୱାଧୀନ ରାଷ୍ଟ୍ର ଜନ୍ମନେବେ । ସିନ୍ଧୁ, ବେଲୁଚିସ୍ଥାନ, ସୀମାନ୍ତ ପ୍ରଦେଶ, ପଶ୍ଚିମ ପଞ୍ଜାବ ଓ ପୂର୍ବବଙ୍ଗ ଅଞ୍ଚଳଗୁଡ଼ିକୁ ନେଇ ପାକିସ୍ଥାନ ଗଠିତ ହେବ । ପ୍ରତ୍ୟେକ ରାଷ୍ଟ୍ରର ସଂସଦ ନିଜ ନିଜର ରାଷ୍ଟ୍ର ପାଇଁ ଆଇନ ପ୍ରଣୟନ କରିବାର ପୂର୍ଣ୍ଣ କ୍ଷମତା ଉପଭୋଗ କରିବେ । ଭାରତୀୟ ଦେଶୀୟ ରାଜ୍ୟଗୁଡ଼ିକ ଉପରେ ବ୍ରିଟିଶ ସାର୍ବଭୌମତ୍ୱ ଲୋପ ହେବ ଏବଂ ସେମାନେ ସ୍ୱାଧୀନ ଭାବରେ ସ୍ୱଇଚ୍ଛାରେ ଯେକୌଣସି ରାଷ୍ଟ୍ର ସହିତ ସଂଯୁକ୍ତ ହୋଇପାରିବେ । ଗଭର୍ଣ୍ଣର ଜେନେରାଲଙ୍କ ସ୍ୱତନ୍ତ୍ର ଓ ସଂରକ୍ଷିତ କ୍ଷମତା ବିଲୟ ଘଟିବ । ଉଭୟ ରାଷ୍ଟ୍ରର ଶାସନ ବିଧାୟକ ସଭା ସେମାନଙ୍କର କେନ୍ଦ୍ରୀୟ ସଂସଦ ଉପରେ କ୍ଷମତା ପ୍ରୟୋଗ କରିପାରିବେ ଏବଂ ପ୍ରଚଳିତ କେନ୍ଦ୍ରୀୟ ବିଧାନସଭା ଓ ରାଜ୍ୟ ପରିଷଦଗୁଡ଼ିକର ସ୍ୱତଃ ବିଲୟ ଘଟିବ । ଭାରତ ସଚିବଙ୍କ କାର୍ଯ୍ୟାଳୟ ବିଲୋପ ହୋଇ ସେହି କ୍ଷମତା ରାଜ୍ୟଗୋଷ୍ଠୀ ସଚିବଙ୍କୁ ହସ୍ତାନ୍ତର କରାଯିବ ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଭାରତବର୍ଷର ଶାସନଗତ ସୁବିଧା ନିମନ୍ତେ ଏକ ସମ୍ବିଧାନର ଆବଶ୍ୟକତାକୁ ଅନୁଭବ କରି ସମ୍ବିଧାନ ସଭା ୧୯୪୬ ମସିହା ଅକ୍ଟୋବର ୩୧ ତାରିଖରେ ଗଠିତ ହୋଇଥିଲା । ୧୯୪୬ ଡିସେମ୍ବର ୯ ତାରିଖରେ ଏହାର ପ୍ରଥମ ବୈଠକ ଅନୁଷ୍ଠିତ ହୋଇଥିଲା । ସେତେବେଳେ ଏହି କକ୍ଷର ସଭ୍ୟ ସଂଖ୍ୟା ଥିଲା ୩୮୫ ଏବଂ ସେଥିମଧ୍ୟରୁ ପ୍ରାଦେଶିକ ବିଧାନସଭା ସଦସ୍ୟଙ୍କ ଦ୍ୱାରା ମନୋନୀତ ସଦସ୍ୟ ଥିଲେ ୨୯୨ ଜଣ ଓ ଦେଶୀୟ ରାଜ୍ୟ ପ୍ରତିନିଧି ସଂଖ୍ୟା ଥିଲା ୯୩ । ପୁନର୍ବାର ସମ୍ବିଧାନ ପ୍ରଣୟନ ସଭା ପୁନର୍ଗଠିତ ହୋଇ ୨୮୪ଜଣ ସଭ୍ୟ ପଦବୀ ନିର୍ଦ୍ଧାରିତ ହୋଇଥିଲା । ତତ୍କାଳୀନ କଂଗ୍ରେସ ସଭାପତି ଜେ.ବି.କୃପାଳିନୀଙ୍କ ପ୍ରସ୍ତାବ କ୍ରମେ ସଚ୍ଚିଦାନନ୍ଦ ସିହ୍ନା ପ୍ରଥମ ବୈଠକରେ ସଭାପତିତ୍ୱ କରିଥିଲେ । ତାଙ୍କର ମୃତ୍ୟୁ ପରେ ଡ.ରାଜେନ୍ଦ୍ର ପ୍ରସାଦ ସମ୍ବିଧାନ ପ୍ରଣୟନ ସଭାର ସଭାପତି ରୂପେ ନିର୍ବାଚିତ ହେଲେ । ସମ୍ବିଧାନ ପ୍ରଣୟନ ସଭା ସମ୍ବିଧାନ ପ୍ରସ୍ତୁତି ପାଇଁ ମୁଖ୍ୟତଃ ପାଞ୍ଚଟି କମିଟି ଗଠନ କରିଥିଲେ । ସେଗୁଡ଼ିକ ହେଲା, ନେହେରୁଙ୍କ ସଭାପତିତ୍ୱରେ ୯ ଜଣ ସଭ୍ୟ ବିଶିଷ୍ଟ କେନ୍ଦ୍ର କ୍ଷମତା କମିଟି, ସର୍ଦ୍ଦାର ପଟେଲଙ୍କ ନେତୃତ୍ୱରେ ୫୪ ଜଣ ସଭ୍ୟ ବିଶିଷ୍ଟ ମୌଳିକ ଅଧିକାର ଏବଂ ସଂଖ୍ୟାଲଘୁ କମିଟି, ନେହେରୁଙ୍କ ଅଧ୍ୟକ୍ଷତାରେ ୧୫ ଜଣ ସଭ୍ୟ ବିଶିଷ୍ଟ କେନ୍ଦ୍ର ସମ୍ବିଧାନ କମିଟି, ସର୍ଦ୍ଦାର ପଟେଲଙ୍କ ପୌରହିତ୍ୟରେ ୨୫ ଜଣ ସଦସ୍ୟ ବିଶିଷ୍ଟ ରାଜ୍ୟ ସମ୍ବିଧାନ କମିଟି ଏବଂ କେ.ଏମ୍. ମୁନ୍‌ସୀଙ୍କ

ଅଧିନାୟକତ୍ୱରେ ୩ ଜଣ ସଭ୍ୟ ବିଶିଷ୍ଟ ଷ୍ଟିଅରିଂ କମିଟି । ସାମ୍ବିଧାନିକ ପରାମର୍ଶଦାତା ବି.ଏନ.ରାଉ ୧୯୪୭ ଅକ୍ଟୋବର ମାସରେ ଡ.ଭୀମରାଓ ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଗଠିତ ଚିଠା କମିଟି ନିକଟରେ ସମ୍ବିଧାନର ଚିଠା ଉପସ୍ଥାପନ କଲେ । ସେସମୟରେ ସମ୍ବିଧାନ ଚିଠାରେ ରହିଥିଲା ୨୪୦ଟି ଧାରା ଓ ୧୩ଟି ଅନୁଚ୍ଛେଦ ।

୧୯୪୭ ମସିହା ଅଗଷ୍ଟ ୨୯ ତାରିଖରେ ସମ୍ବିଧାନର ଚୂଡ଼ାନ୍ତ ରୂପରେଖ ଧାର୍ଯ୍ୟ କରିବାକୁ ଡକ୍ଟର ବି.ଆର. ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଏକ ସାତଜଣିଆ କମିଟି ଗଠିତ ହୋଇଥିଲା । ଏଥିରେ ଅନ୍ୟ ସଦସ୍ୟମାନେ ଥିଲେ ସାର୍ ଆଲ୍ଲାଦି କୃଷ୍ଣ ସ୍ୱାମୀ ଆୟାଙ୍ଗାର, କେ.ଏମ୍.ମୁନସୀ, ଟି.ଟି.କୃଷ୍ଣମାଚାରୀ, ଏନ୍.ଗୋପାଳ ସ୍ୱାମୀ, ଅହମ୍ମଦ ଅବଦୁଲା ଏବଂ ବି.ଏଲ୍. ମିତର । ସାର୍ ଆଲ୍ଲାଦି କୃଷ୍ଣସ୍ୱାମୀ ଆୟାଙ୍ଗାର ସମ୍ବିଧାନର ମୌଳିକ ଅଧିକାର, ଉଚ୍ଚ ଓ ସର୍ବୋଚ୍ଚ ନ୍ୟାୟାଳୟ ସମ୍ବନ୍ଧୀୟ, ଟି.ଟି. କୃଷ୍ଣମାଚାରୀ ମୁଖ୍ୟତଃ ସଂଘୀୟ ସ୍ୱରୂପ, ଅର୍ଥ ଓ ଅନ୍ତଃରାଜ୍ୟ ବାଣିଜ୍ୟ ସମ୍ବନ୍ଧୀୟ, ଏନ୍.ଗୋପାଳସ୍ୱାମୀ ଭାଷା ସମ୍ବନ୍ଧୀୟ ବିଷୟରେ ଅନୁଶୀଳନ କରିଥିଲେ । ବି.ଏନ୍.ରାଉ ସମ୍ବିଧାନର ପ୍ରଥମ ପ୍ରାରୂପକୁ ଅଧ୍ୟୟନ କରିବା ଅବସରରେ ଏଚ.ବି. କାମାଥ କିଛି ସଂଶୋଧନ କରିଥିଲେ । ନାଜିରୁଦ୍ଦିନ ଅହମ୍ମଦ କମା, ପୂର୍ଣ୍ଣଚ୍ଛେଦ, ବିରାମଗୁଡ଼ିକର ଶୁଦ୍ଧି କରିଥିଲେ । ଏଚ୍.ଏନ୍.କୁର, ଫ୍ରାଙ୍କ ଆଣ୍ଟୋନୀ, ମହାବୀର ତ୍ୟାଗି, ଦୁର୍ଗାବାହି ପ୍ରମୁଖ ଅନେକ ବିଦ୍ୱାନ ଅନେକାଂଶରେ ସହାୟତା କରିଥିଲେ । ଏହି ଚିଠା ଉପରେ ବହୁ ତର୍କ ବିତର୍କ ପରେ ନିର୍ଯ୍ୟାସ ସ୍ୱରୂପ ଦ୍ୱିତୀୟ ଚିଠା ୧୯୪୮ ମସିହା ଫେବୃଆରୀ ୨୧ ତାରିଖରେ ସମ୍ବିଧାନ ସଭାରେ ଆଗତ ହେଲା । ଏଥିରେ ଥିଲା ୩୧୫ଟି ଧାରା ଓ ୯ଟି ଅନୁଚ୍ଛେଦ । ତୃତୀୟ ପଠନ ଆରମ୍ଭ ହେଲା ୧୯୪୯ ନଭେମ୍ବର ୧୪ ତାରିଖରେ ଏବଂ ଶେଷ ହେଲା ସେହିମାସ ୨୬ ତାରିଖରେ । ୩୯୫ଟି ଧାରା ଓ ୮ଟି ଅନୁଚ୍ଛେଦ ସମ୍ବଳିତ ସମ୍ବିଧାନ ସେହିଦିନ ହିଁ ସମ୍ବିଧାନ ସଭାର ସ୍ୱୀକୃତି ଲାଭ କଲା । ଏହି ସମ୍ବିଧାନ ପ୍ରସ୍ତୁତ ହେବା ପାଇଁ ୨ବର୍ଷ ୧୧ମାସ ୧୭ଦିନ ଲାଗିଥିବା ବେଳେ, ମୋଟ ୧୧ଟି ଅଧିବେଶନରେ ୧୬୫ଦିନ ପାଇଁ ବୈଠକ ଅନୁଷ୍ଠିତ ହୋଇଥିଲା ଏବଂ ୧୧୪ ଦିନ ବ୍ୟାପୀ ସମ୍ବିଧାନର ବିଭିନ୍ନ ଧାରା ଓ ଉପଧାରା ଉପରେ ଆଲୋଚନା ଅନୁଷ୍ଠିତ ହୋଇଥିଲା । ଆଗତ ହୋଇଥିବା ୭୬୩୫ଟି ସଂଶୋଧନୀ ପ୍ରସ୍ତାବ ମଧ୍ୟରୁ ୨୪୭୩ଟି ପ୍ରସ୍ତାବ ଗୃହୀତ ହୋଇଥିଲା । ୧୯୪୯ ମସିହା ନଭେମ୍ବର ୨୬ ତାରିଖରେ ସମ୍ବିଧାନ ପ୍ରଣୟନ ସଭା ଦ୍ୱାରା ଉକ୍ତ ସମ୍ବିଧାନ ଅନୁମୋଦିତ ହୋଇଥିଲେ ମଧ୍ୟ ୧୯୩୦ ମସିହା ଜାନୁଆରୀ ୨୬ ତାରିଖରେ ଦେଶବ୍ୟାପୀ ପାଳିତ ହୋଇଥିବା ପ୍ରଥମ ସ୍ୱାଧୀନତା ଦିବସକୁ ସ୍ମରଣୀୟ କରିବା ଉଦ୍ଦେଶ୍ୟରେ ଏହାକୁ ଜାନୁଆରୀ ୨୬ ତାରିଖରେ କାର୍ଯ୍ୟକାରୀ କରାଗଲା । ଜନସାଧାରଣଙ୍କ ଇଚ୍ଛା, ଆଦର୍ଶ, ପରମ୍ପରା, ଐତିହ୍ୟ ଓ ବିଶ୍ୱାସକୁ ଆଧାର କରି ପ୍ରସ୍ତୁତ ହୋଇଥିବା ପୃଥିବୀର ଏହି ସର୍ବଶ୍ରେଷ୍ଠ, ଦୀର୍ଘତମ ବିଶଦ ସମ୍ବିଧାନ ଦେଶରେ ସ୍ଥିରତା, ଜାତି ଗଠନ, ସାମାଜିକ ଓ ଅର୍ଥନୀତିକ ବ୍ୟବସ୍ଥା ପାଇଁ ଉପାଦେୟ ସାବ୍ୟସ୍ତ ହୋଇଛି । ଡକ୍ଟର ଭୀମରାଓଙ୍କ ବିଶେଷ ଅବଦାନ ଯୋଗୁଁ ତାଙ୍କୁ ଭାରତୀୟ ସମ୍ବିଧାନର ପିତା ଭାବରେ ବର୍ଣ୍ଣନା କରାଯାଏ ।

୧୯୫୦ରେ ସାଧାରଣତନ୍ତ୍ର ଦିବସରେ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥି ଥିଲେ ଇଣ୍ଡୋନେସିଆର ରାଷ୍ଟ୍ରପତି ଡ. ସୁକର୍ଣ୍ଣ । ସେଦିନ ସର୍ବଧର୍ମ ପ୍ରାର୍ଥନା ସଭା ପରେ ରାଜ୍ୟପାଳମାନେ ପ୍ରଦେଶମାନଙ୍କରେ ଶପଥ ଗ୍ରହଣ କରିଥିଲେ । ରାଜ୍ୟପାଳ ଭବନ ଉପରେ ଜାତୀୟ ପତାକା ଉତ୍ତୋଳିତ ହେବା ସହିତ ରାଜ୍ୟପାଳମାନଙ୍କୁ ୧୭ ତୋପ ସଲାମୀ ପ୍ରଦାନ କରାଯାଇଥିଲା । ରାଜ୍ୟର ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନେ ଭାରତୀୟ ସମ୍ବିଧାନ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରି ଶପଥ ଗ୍ରହଣ କରିବା ପରେ ନିମନ୍ତ୍ରିତ ଅତିଥିମାନଙ୍କ ସହିତ ଏକ ବନ୍ଧୁମିଳନର ଆୟୋଜନ କରିଥିଲେ । ଉଚ୍ଚ ନ୍ୟାୟାଳୟର ମୁଖ୍ୟ ବିଚାରପତି ଓ ଅନ୍ୟ ବିଚାରପତିଗଣ ମଧ୍ୟ ଏହିଦିନ ଶପଥ ଗ୍ରହଣ କରିଥିଲେ । ସବୁ ପ୍ରଦେଶରେ ପୁଲିସ ଓ ସାମରିକ ବିଭାଗର ପ୍ୟାରେଡ଼ ବିଶେଷ ଭୂମିକା ଗ୍ରହଣ କରିଥିଲା । ଜାନୁଆରୀ ୨୬ ତାରିଖ ଆମ ଜାତୀୟ ଜୀବନର ଏକ ସ୍ମରଣୀୟ ଦିବସ ।

---

ଅଧ୍ୟକ୍ଷ, ଆନନ୍ଦପୁର ମହାବିଦ୍ୟାଳୟ
ସିନେମାହଲ ଛକ, ଆନନ୍ଦପୁର,
ପିନ୍–୭୫୮୦୨୨

# ଦାର୍ଶନିକ ଓ ସନ୍ଥ ସ୍ୱାମୀ ବିବେକାନନ୍ଦ

**ଉମା ଶଙ୍କର ପ୍ରସାଦ**

ପୃଥିବୀରେ ଯେତେବେଳେ ଧର୍ମର ଗ୍ଲାନି ଘଟେ, ଅଜ୍ଞାନତା ଓ କୁସଂସ୍କାର ମନୁଷ୍ୟ ସମାଜକୁ ପଥଭ୍ରଷ୍ଟ କରେ, ସେତେବେଳେ ମହାପୁରୁଷଗଣ ଆବିର୍ଭାବ ହୁଅନ୍ତି । ମନୁଷ୍ୟ ସମାଜକୁ ନୂତନ ଦିଗ୍‌ଦର୍ଶନ ପ୍ରଦାନ କରି ଧର୍ମ ସଂସ୍ଥାପନ କରନ୍ତି । ନବ ଜାଗରଣ ଉନ୍ମେଷ ଘଟାଇ ସମାଜରେ ଶାନ୍ତି, ମୈତ୍ରୀ ଓ ପ୍ରୀତି ଆନୟନ କରନ୍ତି । ସ୍ୱାମୀ ବିବେକାନନ୍ଦ ଏତାଦୃଶ ଜଣେ ମହାପୁରୁଷ । ସେ ୧୮୬୩ ମସିହା ଜାନୁଆରୀ ମାସ ୧୨ ତାରିଖରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ଅଜାଙ୍କ ନାମ ଦୁର୍ଗାଚରଣ ଦତ୍ତ । ସ୍ୱର୍ଗୀୟ ବିଶ୍ୱନାଥ ଦତ୍ତ ହେଉଛନ୍ତି ବିବେକାନନ୍ଦଙ୍କ ଜନକ ଏବଂ ମାତା ଭୁବନେଶ୍ୱରୀ ଦେବୀ । ଭୁବନେଶ୍ୱରୀ ଦୁଇଟି କନ୍ୟାର ଜନନୀ ହେବା ପରେ ପୁତ୍ର କାମନା କରି ଶ୍ରୀ ବିଶ୍ୱେଶ୍ୱରଙ୍କ ନିକଟରେ ପୂଜା ପ୍ରାର୍ଥନା କରିଥିଲେ । ଫଳରେ ସେ ସ୍ୱପ୍ନରେ ଦେଖିଥିଲେ ତୁଷାର ଧବଳ ରଜତ କ୍ରାନ୍ତିଧାରୀ କୈଳାସେଶ୍ୱର ତାଙ୍କ ସମ୍ମୁଖରେ ଦଣ୍ଡାୟମାନ । ଗର୍ଭ ସଂଚାର ପରେ ପୌଷ ପାର୍ବଣର ଆନନ୍ଦୋତ୍ସବ ମଧ୍ୟରେ ଜନ୍ମ ନେଇଥିଲେ ବିବେକାନନ୍ଦ । ଅତି ଶୈଶବ କାଳରୁ ନରେନ୍ଦ୍ରନାଥ ଚକ୍ଷୁ ଦୁଇଟି ବନ୍ଦ କରିବା ମାତ୍ରେ ଦୁଇ ଭ୍ରୂଲତା ମଧ୍ୟରେ ଗୋଲାକାର ଦିବ୍ୟଜ୍ୟୋତି ଦର୍ଶନ କରୁଥିଲେ । ଦିବ୍ୟଜ୍ୟୋତି ଧ୍ୟାନ ଫଳରେ ମନ ସହିତ  ବାସନାର ଦ୍ୱନ୍ଦ୍ୱ ନ ଥିବାରୁ ତାଙ୍କୁ କୌଣସି ଦିନ ଧ୍ୟାନସ୍ଥ ହେବା ପାଇଁ ପ୍ରବଳ ଚେଷ୍ଟା କରିବାକୁ ପଡୁ ନ ଥିଲା । ବାଲ୍ୟକାଳରୁ ଭକ୍ତ ହନୁମାନଙ୍କ ଅଲୌକିକ କାର୍ଯ୍ୟାବଳୀ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇ ପର



ଜୀବନରେ ଶିଷ୍ୟମାନଙ୍କୁ ମହାବୀରଙ୍କର ଆଦର୍ଶ ଅନୁସରଣ କରିବାକୁ ପରାମର୍ଶ ଦେଇଥିଲେ ।

ପିତାମାତାଙ୍କ ସ୍ନେହ-କୋଳରେ ପ୍ରାଚୁର୍ଯ୍ୟ ମଧ୍ୟରେ ନରେନ୍ଦ୍ରନାଥଙ୍କ ଶୈଶବ ଓ କୈଶୋର ଜୀବନ ହସ, ଆନନ୍ଦ ଓ ଖେଳ କୌତୁକରେ କଟିଥିଲା । ତାଙ୍କର ବାଲ୍ୟଜୀବନ

ଅଲୌକିକ ବା ଅସାଧାରଣ ନ ହେଲେ ମଧ୍ୟ ଅନୁପମ । ଷୋଳ ବର୍ଷ ବୟସରେ ସେ ଯେପରି ତୀକ୍ଷ୍ଣ ବିଦ୍ୟାବୁଦ୍ଧି, ପ୍ରବଳ ଆତ୍ମନିଷ୍ଠା ଓ ଜ୍ଞାନଜୀବନ ପ୍ରତି ପ୍ରବଳ ଆଗ୍ରହ ଦେଖାଇଥିଲେ ତାହା ବସ୍ତୁତଃ ଦୁର୍ଲଭ । ସେ ବାଲ୍ୟକାଳରୁ ପିତାଙ୍କଠାରୁ ସଙ୍ଗୀତ ଶିକ୍ଷା କରିଥିଲେ । ଗୀତ ବାଦ୍ୟରେ ମଧ୍ୟ ଦକ୍ଷତା ଅର୍ଜନ କରିଥିଲେ । ଏପରି ମେଧାବୀ, ତେଜସ୍ୱୀ, ଚଞ୍ଚଳ ଚପଳ ବାଳକ ଗୋଟିଏ ଦିଗରେ ଯେପରି ପରିହାସ ରସିକ, କ୍ରୀଡାପ୍ରିୟ ଓ ଉଗ୍ର ସ୍ୱଭାବ ଥିଲେ ଅପର ଦିଗରେ ସେହିପରି ଗଭୀର ଚିନ୍ତାଶୀଳ, ଧର୍ମପରାୟଣ, ଦୟାଳୁ ଓ ବନ୍ଧୁବତ୍ସଳ ଥିଲେ । ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କଲେଜରେ ପ୍ରବେଶ କରିବା ପରଠାରୁ ଘଟଣାର ଘାତ ପ୍ରତିଘାତ ଫଳରେ ନରେନ୍ଦ୍ରଙ୍କର ସହଜ ଓ ସ୍ୱାଭାବିକ ଜୀବନର ଗୋଟିଏ ବିଚିତ୍ର ରହସ୍ୟମୟ ଜଟିଳ ଅଧ୍ୟାୟ ଆରମ୍ଭ ହେଲା ।

ମାତ୍ର ଅଠର ବର୍ଷ ବୟସରେ କଲେଜରେ ପ୍ରବେଶ କଲେ । କଲେଜରେ ଥିବା ସମୟରେ ମ୍ୟାଲେରିଆରେ ଆକ୍ରାନ୍ତ ହୋଇ ସେହି ବର୍ଷ କଲେଜ ଛାଡିଲେ । ପର ବର୍ଷ ସେ ଆସେମ୍ବ ଇନ୍‌ଷ୍ଟିଚ୍ୟୁସନରେ ନାମ ଲେଖାଇ ପଢିଲେ । ଏକ ସୁଲଭ ଉଦ୍ଦାମ କଳ୍ପନାପ୍ରବଣ ପ୍ରତିଭାର ଅଧିକାରୀ ହୋଇ ନରେନ୍ଦ୍ରନାଥ ନିବିଷ୍ଟ ମନରେ ଦର୍ଶନ ଶାସ୍ତ୍ର ଅଧ୍ୟୟନ କରିଥିଲେ । ଏଫ୍.ଏ ପରୀକ୍ଷା ପୂର୍ବରୁ ସେ ମିଲ୍ ପ୍ରମୁଖ ପାଶ୍ଚାତ୍ୟ ନୈୟାୟିକମାନଙ୍କ ମତବାଦ ସହିତ ପରିଚିତ ହୋଇଥିଲେ ଏବଂ ହ୍ୟୁମ୍ ଓ ହାରବାର୍ଡଙ୍କ ଦାର୍ଶନିକ ଗ୍ରନ୍ଥମାନ ପଢିବାକୁ ଆରମ୍ଭ କରିଥିଲେ ।

**ଶ୍ରୀରାମକୃଷ୍ଣଙ୍କ ସାକ୍ଷାତ୍**

ଦିନେ କଲିକତା ଶିମଳାପଲ୍ଲୀରେ ରହୁଥିବା ସୁରେନ୍ଦ୍ରନାଥ ମିତ୍ର ରାମକୃଷ୍ଣଙ୍କୁ ନିଜ ଗୃହକୁ ଡାକି ଆଣିଥିଲେ । ଏକ ଆନନ୍ଦ ଉତ୍ସବର ଆୟୋଜନ କରାଯାଇଥିଲା । ସେ ଦିନ ଜଣେ ସୁକଣ୍ଠ ଗାୟକଙ୍କର ଅଭାବ ହେବାରୁ ସେ ନିଜ ପଡୋଶୀ ନରେନ୍ଦ୍ରନାଥଙ୍କୁ ଡାକିଲେ । ଠାକୁରଙ୍କ ସହିତ ନରେନ୍ଦ୍ରନାଥଙ୍କର ଏହା ଥିଲା ପ୍ରଥମ ସାକ୍ଷାତ୍ । ତାଙ୍କର ସୁଲଳିତ କଣ୍ଠରୁ ସଙ୍ଗୀତ ଶୁଣି ଠାକୁର ସମଧିକ ପ୍ରୀତ ହୋଇଗଲେ ଓ ବିଦାୟ ସମୟରେ ତାଙ୍କର ପରିଚୟ ଗ୍ରହଣ କରି ନରେନ୍ଦ୍ରନାଥଙ୍କୁ ଦକ୍ଷିଣେଶ୍ୱର ଯିବା ନିମିତ୍ତ ଅନୁରୋଧ ଜଣାଇଲେ ।

ଏହା ମଧ୍ୟରେ ନରେନ୍ଦ୍ରନାଥ ଏଫ୍.ଏ ପରୀକ୍ଷା ସକାଶେ ବ୍ୟସ୍ତ ରହି ଦକ୍ଷିଣେଶ୍ୱର ଯିବା କଥା ଭୁଲିଗଲେ । ଏଫ୍.ଏ ପରୀକ୍ଷା ଶେଷ ହେବା ପରେ ତାଙ୍କର ପିତା ବିବାହ କରିବା ପାଇଁ ତାଙ୍କୁ କହିଲେ । ଆଜନ୍ମ ବିବାହ–ବିତୃଷ୍ଣ ନରେନ୍ଦ୍ର ଏ ବିଷୟରେ ଭୀଷଣ ଆପତ୍ତି ଉଠାଇଲେ । ଶ୍ରୀରାମକୃଷ୍ଣଙ୍କର ଗୃହୀ ଭକ୍ତମାନଙ୍କ ମଧ୍ୟରେ ରାମଚନ୍ଦ୍ର ଦତ୍ତ ଅନ୍ୟତମ । ସେ ନିୟମିତ ବିଶ୍ୱନାଥଙ୍କ ଗୃହକୁ ଆସୁଥିଲେ । ତାଙ୍କୁ ନରେନ୍ଦ୍ରନାଥ ବିବାହ ପ୍ରତି ବିତୃଷ୍ଣା ବିଷୟରେ ମନ ଖୋଲି କହିଲେ । ରାମଚନ୍ଦ୍ର ନରେନ୍ଦ୍ରନାଥଙ୍କ ଯୁକ୍ତି ଶୁଣିବା ପରେ କହିଲେ, ଯଦି ପ୍ରକୃତ ସତ୍ୟ ଲାଭ କରିବା ପାଇଁ ଇଚ୍ଛା ଥାଏ ତେବେ ବ୍ରାହ୍ମସମାଜ ଇତ୍ୟାଦି ସ୍ଥାନରେ ନ ବୁଲି ଦକ୍ଷିଣେଶ୍ୱର ପରମହଂସ ଦେବଙ୍କ ନିକଟକୁ ଯାଅ । ନରେନ୍ଦ୍ରନାଥ ମନେ ମନେ ଭାବିଲେ ଓ ଦକ୍ଷିଣେଶ୍ୱର ଯିବାର ସମ୍ମତି ପ୍ରକାଶ କଲେ । ଦୁଇ ଚାରି ଜଣ ବନ୍ଧୁଙ୍କ ସହ ଦକ୍ଷିଣେଶ୍ୱରରେ ଉପସ୍ଥିତ ହେଲେ ।

ନରେନ୍ଦ୍ରନାଥଙ୍କୁ ଦେଖିବା ମାତ୍ରେ ଜଣେ ଚିର ପରିଚିତ ଲୋକପରି ଶ୍ରୀରାମକୃଷ୍ଣ ସରଳ ଭାବରେ ଆଳାପ କରିବାକୁ ଲାଗିଲେ । ସଙ୍ଗୀତ ଓ କଥୋପକଥନ ଶେଷ ହେବା ପରେ ନରେନ୍ଦ୍ରଙ୍କୁ ଗୋଟିଏ ଏକାନ୍ତ ସ୍ଥାନକୁ ଡାକି ନେଇ ଠାକୁର କହିଲେ, 'ତୁ କିପରି ଏତେ କାଳ ମୋତେ ଭୁଲିଯାଇଥିଲୁ ? ତୁ ଆସିବୁ ବୋଲି ମୁଁ କେତେ ଦିନ ହେଲା ବାଟ ଚାହିଁ ବସିଛି । ବିଷୟୀ ଲୋକମାନଙ୍କ ସହ କଥା କହି କହି ମୋ ମୁହଁ ପୋଡିଗଲାଣି । ଆଜିଠାରୁ ତୋ ଭଳି ଜଣେ ଯଥାର୍ଥ ତ୍ୟାଗୀ ସହିତ କଥା କହି କହି ଶାନ୍ତି ପାଇବି' । ଏହା କହୁ କହୁ ଠାକୁରଙ୍କ ଚକ୍ଷୁ ଅଶ୍ରୁସିକ୍ତ ହୋଇଉଠିଲା । ବିସ୍ମୟ–ବିମର୍ଶ ବିହ୍ୱଳ ଦୃଷ୍ଟିରେ ନରେନ୍ଦ୍ରନାଥ ଏହି ଅଦ୍ଭୁତ ସନ୍ନ୍ୟାସୀଙ୍କୁ ଚାହିଁ ରହିଲେ, କଅଣ କହିବେ ଭାବି ପାରିଲେ ନାହିଁ ।

କ୍ରମଶଃ ସେ ଠାକୁରଙ୍କ ପ୍ରତି ଆକର୍ଷିତ ହୋଇ ଉଠିଲେ । କ୍ରମାଗତ ତିନି ବର୍ଷ ଠାକୁରଙ୍କୁ ନାନା ପ୍ରକାର

ପରୀକ୍ଷା କରିସାରିବା ପରେ ଶେଷରେ ସମ୍ପୂର୍ଣ୍ଣ ରୂପେ ଆତ୍ମ ସମର୍ପଣ କରିଦେଲେ । ତଥାପି ସେ ଠାକୁରଙ୍କୁ ଠିକ୍ ଭାବରେ ବୁଝିପାରୁ ନଥାନ୍ତି । ଦିନେ ଉତ୍ସୁକତା ସହକାରେ ଠାକୁରଙ୍କୁ ପ୍ରଶ୍ନ କଲେ, 'ମହାଶୟ! ଆପଣ କଅଣ ଈଶ୍ୱରଙ୍କୁ ଦେଖିଛନ୍ତି'? ମୃଦୁ ହାସ୍ୟ ରଞ୍ଜିତ ଠାକୁରଙ୍କର ପ୍ରଶାନ୍ତ ମୁଖମଣ୍ଡଳ ଅପୂର୍ବ ଶାନ୍ତି ଓ ପୁଣ୍ୟ ବୈଭବରେ ଉଦ୍ଭାସିତ ହୋଇ ଉଠିଲା । ସେ ଇତସ୍ତତଃ ନ ହୋଇ ଉତ୍ତର ଦେଲେ, 'ବତ୍ସ! ମୁଁ ଈଶ୍ୱର ଦର୍ଶନ କରିଛି । ମୁଁ ତୁମକୁ ଯେପରି ପ୍ରତ୍ୟକ୍ଷ ଦେଖୁଛି ତାହାଠାରୁ ସ୍ପଷ୍ଟତର ଭାବରେ ଈଶ୍ୱରଙ୍କୁ ଦେଖୁଛି' । ନରେନ୍ଦ୍ରଙ୍କ ବିସ୍ମୟକୁ ଶତଗୁଣ ବର୍ଦ୍ଧିତ କରି ପୁଣି କହିଲେ, 'ତୁମେ ଦେଖିବାକୁ ଚାହୁଁଛ ? ତୁମକୁ ମଧ୍ୟ ଦେଖାଇ ଦେଇପାରିବି, ଯଦି ତୁମେ ମୋ କହିବା ଅନୁସାରେ ଆଚରଣ କର' ।

ଏକଦା ବ୍ରାହ୍ମଣମାନଙ୍କର ଶ୍ରୀରାମକୃଷ୍ଣଙ୍କ ପ୍ରତି ଅଶୋଭନୀୟ ଆଚରଣରେ ବ୍ୟଥିତ ହୋଇ ନରେନ୍ଦ୍ର ବ୍ରାହ୍ମସମାଜ ପରିତ୍ୟାଗ କଲେ । ବାଲ୍ୟକାଳରୁ ନରେନ୍ଦ୍ରନାଥଙ୍କ ହୃଦୟରେ କୌଣସି ସଂଶୟ ଉପସ୍ଥିତ ହେଲେ ତାହାର ମୀମାଂସା ନ କରିବା ପର୍ଯ୍ୟନ୍ତ ସେ ଶାନ୍ତି ଲାଭ କରୁ ନ ଥିଲେ । ଅହୋରାତ୍ର ଚିନ୍ତା କରି ମଧ୍ୟ ସେ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ କୌଣସି ସିଦ୍ଧାନ୍ତରେ ପହଂଚି ନପାରି ଅସ୍ଥିର ହୋଇଉଠିଲେ । ମାତ୍ର ତାଙ୍କର ଆତ୍ମବିଶ୍ୱାସ ଓ ଦୃଢ଼ତା ଏପରି ଅନମନୀୟ ଥିଲା ଯେ ସେ ଠାକୁରଙ୍କ ବିଷୟରେ ଅଧିକରୁ ଅଧିକ ଜାଣିବା ନିମନ୍ତେ ଓ ତାଙ୍କୁ ପରୀକ୍ଷା କରିବା ଲାଗି ତାଙ୍କ ନିକଟକୁ ଗମନାଗମନ କଲେ, ଏପରି କି ଦକ୍ଷିଣେଶ୍ୱରରେ ରାତ୍ରିରେ ମଧ୍ୟ ରହିଲେ । ଥରେ ସନ୍ଧ୍ୟା ସମୟରେ ସନ୍ଧ୍ୟା ଆରତି ଘଣ୍ଟ ବାଜି ନ ଥାଏ । ଠାକୁର ନରେନ୍ଦ୍ରଙ୍କୁ ଚାହିଁ ହଠାତ୍ ତାଙ୍କ ଆସନରୁ ଉଠି ନରେନ୍ଦ୍ରଙ୍କ କାନ୍ଧ ଉପରେ ନିଜ ଡାହାଣ ଗୋଡକୁ ଥୋଇଦେଲେ । ତତ୍‌କ୍ଷଣାତ୍ ତାଙ୍କର ଭାବାନ୍ତର ଉପସ୍ଥିତ ହେଲା । ସେ ଅନୁଭବ କଲେ ଯେପରି ତାଙ୍କ ଆଖି ପାଖରେ ଦୃଶ୍ୟମାନ ପଦାର୍ଥଗୁଡିକ ଗୋଟିଏ ଅନନ୍ତ ସତ୍ତାରେ ବିଲୀନ ହୋଇଯାଉଛି । କେବଳ ସେ ଏକା । ଶେଷରେ ତାଙ୍କ ଅହଂତ୍ୱର ସତ୍ତା ବିଲୀନ ହେବାକୁ ଆରମ୍ଭ କଲା । ସେ ଭୟ ଓ ବିସ୍ମୟରେ ଚିତ୍କାର କରି କହିଲେ, 'ଆହେ! ତୁମେ ଏ କ'ଣ କଲ'? ମୋର ଯେ ବାପା-ମାଆ ଅଛନ୍ତି ଠାକୁର ନରେନ୍ଦ୍ରଙ୍କ ବକ୍ଷରେ ହସ୍ତ ସ୍ପର୍ଶମାତ୍ରେ ପୁନରାୟ ସ୍ୱାଭାବିକ ଅବସ୍ଥା ଫେରିଆସିଲା । ନରେନ୍ଦ୍ରନାଥ ପିତାମାତାଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିବାରୁ ଯେପରି ଠାକୁର ତାଙ୍କୁ ଆଉ ପ୍ରଭାବିତ କରି ନ ପାରନ୍ତି ସେଥିପାଇଁ ସାବଧାନ ରହିଲେ । କ୍ରମଶଃ ତାଙ୍କର ସଂସାର ପ୍ରତି ଅନାସକ୍ତ ଭାବ ଜାଗ୍ରତ ହେଲା ।

**ଠାକୁରଙ୍କ ଭବିଷ୍ୟତବାଣୀ, ଲୀଳା ସମ୍ବରଣ ଓ ଅନ୍ତିମ ବାଣୀ**

ଦିନେ ନରେନ୍ଦ୍ରଙ୍କୁ ଦେଖାଇ ଠାକୁର ଉପସ୍ଥିତ ବ୍ୟକ୍ତିମାନଙ୍କୁ କହିଲେ, ''ଏହି ଯେଉଁ ପିଲାଟିକୁ ଦେଖୁଛ ସେ ଜନ୍ମ ବେଳରୁ ବ୍ରହ୍ମଜ୍ଞାନୀ- ଏହାଙ୍କ ପରି ପିଲାମାନେ ନିତ୍ୟସିଦ୍ଧ । ଏମାନେ କେବେହେଲେ କାମିନୀ-କାଂଚନ ମାୟାରେ ଆବଦ୍ଧ ହୁଅନ୍ତି ନାହିଁ । ସ୍ୱାମୀ ଯୋଗାନନ୍ଦ ସ୍ୱାମିଜୀଙ୍କ ସମ୍ବନ୍ଧରେ କହିଛନ୍ତି, ''ସ୍ୱାମିଜୀଙ୍କ ମଧ୍ୟରେ ଋଷିଙ୍କ ସମାଧି-ତୃଷ୍ଣା, ଶୁକଙ୍କର ମାୟା ଶୂନ୍ୟତା, ଶଙ୍କରଙ୍କ ଜ୍ଞାନ, ନାରଦଙ୍କ ଭକ୍ତି ଏକତ୍ର ମିଳିତ ହୋଇଥିଲା । ସେହି ହେତୁ ଠାକୁର ତାଙ୍କର ଭିନ୍ନ ଭିନ୍ନ ଭାବ ଲକ୍ଷ୍ୟ କରି ଥରକୁ ଥର ଗୋଟିଏ ନାମରେ ଅଭିହିତ କରୁଥିଲେ'' । ଏହି ମୀମାଂସା ହିଁ ବିବେକାନନ୍ଦଙ୍କ ପ୍ରତି ସର୍ବାପେକ୍ଷା ଯୁକ୍ତିଯୁକ୍ତ ଓ ସମୀଚୀନ ଅଟେ ।

୧୮୮୬ ମସିହା ଜୁଲାଇ ମାସର ଶେଷ ଭାଗ । ଠାକୁରଙ୍କ ଗଳା ରୋଗ କ୍ରମଶଃ ଭୀଷଣ ହେଲା । ଠାକୁର ମୃଦୁ ସ୍ୱରରେ ଫିସ୍ ଫିସ୍ କରି କହିଲେ, ''ନରେନ୍ ! ମୋର ପିଲାଏ ରହିଲେ । ତୁ ସମସ୍ତଙ୍କ ମଧ୍ୟରେ ବୁଦ୍ଧିମାନ୍ ଓ ଶକ୍ତିମାନ୍ । ଏମାନଙ୍କୁ ରକ୍ଷା କରିବୁ ଓ ସତ୍‌ପଥରେ ଚଳାଇବୁ । ମୁଁ ଶୀଘ୍ର ଦେହ ତ୍ୟାଗ କରିବି'' ।

ଆଉ ଦିନେ ନରେନ୍ଦ୍ରଙ୍କୁ ଡାକି ସଜଳ ନୟନରେ କହିଲେ, ''ବାବା ! ଆଜି ତୋତେ ସର୍ବସ୍ୱ ଦେଇ ଫକିର ହେଲି'' ।

ସେ ଦିନ ଥିଲା ୧୮୮୬ ମସିହା ଅଗଷ୍ଟ ମାସ ଷୋହଳ ତାରିଖ । ଭକ୍ତବୃନ୍ଦ ଶଯ୍ୟାକୁ ଘେରି ଠିଆ ହୋଇଥାଆନ୍ତି । ନରେନ୍ଦ୍ର ଭାବୁଛନ୍ତି ଯେଉଁ ଶକ୍ତି ଯୁଗେ ଯୁଗେ ଧର୍ମ ସଂସ୍ଥାପନ ଲାଗି କରୁଣାରେ ଅବତୀର୍ଣ୍ଣ ହୁଅନ୍ତି ଶ୍ରୀରାମକୃଷ୍ଣ କଅଣ ତାଙ୍କର ସମଷ୍ଟି! ସତରେ କଅଣ ଶ୍ରୀରାମକୃଷ୍ଣ ଯୁଗଧର୍ମ ପ୍ରବର୍ତ୍ତକ ଅବତାର ପୁରୁଷ ? ପରମହଂସ ରାମକୃଷ୍ଣ ଚକ୍ଷୁ ଖୋଲି ନରେନ୍ଦ୍ରଙ୍କୁ ପୂର୍ଣ୍ଣ ଦୃଷ୍ଟିରେ ଚାହିଁ କହିଲେ, କ'ଣ ନରେନ୍ ! ଏ ପର୍ଯ୍ୟନ୍ତ ବି ତୋ'ର ବିଶ୍ୱାସ ହୋଇ ନାହିଁ ? ଯେ ରାମ, ସେ କୃଷ୍ଣ, ସେହି ଏଥର ଏକାଧାରରେ ଶ୍ରୀରାମକୃଷ୍ଣ, କିନ୍ତୁ ତୋ ବେଦାନ୍ତ ଦିଗରୁ ନୁହେଁ । କ୍ରମେ ବ୍ରାହ୍ମମୁହୂର୍ତ୍ତ ଉପସ୍ଥିତ ହେବା ମାତ୍ରେ ଠାକୁର ମହାସମାଧି ଯୋଗରେ ନଶ୍ୱର ଦେହ ତ୍ୟାଗ କଲେ ।

**ସ୍ୱାମିଜୀଙ୍କର ବିଦେଶ ଯାତ୍ରା**

୧୮୯୩ ମସିହାରେ ସ୍ୱାମିଜୀ ସମୁଦ୍ର ପଥରେ ଆମେରିକା ଯାତ୍ରା କଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ଚିକାଗୋ ସହରରେ ଅନୁଷ୍ଠିତ ବିଶ୍ୱଧର୍ମ ମହାସଭାରେ ଯୋଗଦାନ କରିବା । ମାତ୍ର ପ୍ରାଥମିକ ଅବସ୍ଥାରେ ତାଙ୍କର ରହିବାରେ ଅସୁବିଧା ସୃଷ୍ଟି ହୋଇଥିଲା । କିନ୍ତୁ ଜଣେ ଅଜ୍ଞାତ ଓ ନିଃସହାୟ ସମ୍ବଳହୀନ ତରୁଣ ସନ୍ନ୍ୟାସୀ ବାଧା ବିପତ୍ତି ଅତିକ୍ରମ କରି ସୁଦୂର ଆମେରିକା ଯାଇ ଯେଉଁ ଅଭୂତପୂର୍ବ ସାଫଲ୍ୟ ଅର୍ଜନ କରିଥିଲେ, ତାହା ଆଜି ବେଦାନ୍ତରେ ପରିଣତ ହୋଇଛି ।

ସ୍ୱାମିଜୀ ନିଜର ସାରଗର୍ଭକ ଭାଷାରେ ପ୍ରାଚ୍ୟର ଦର୍ଶନକୁ ଏପରି ଭାବରେ ପରିବେଷଣ କରିଥିଲେ ଯେ କେବଳ ଯେ ଦର୍ଶକମାନେ ଓ ପାଶ୍ଚାତ୍ୟ ମହାବିଦ୍ୱାନମାନେ ତନ୍ମୟ ହୋଇଥିଲେ ତାହା ନୁହେଁ, ସେମାନଙ୍କର ମନରେ ଥିବା ପ୍ରାଚ୍ୟ ଦର୍ଶନର ଭ୍ରମାତ୍ମକ ଧାରଣା ଦୂର ହୋଇ ପାରିଥିଲା ।

ମହୋଦଧି ସୋସାଇଟିର ସାଧାରଣ ସମ୍ପାଦକ ଶ୍ରୀଯୁକ୍ତ ଧର୍ମପାଳ ୧୮୯୪ ଅପ୍ରେଲ ମାସ ୧୨ ତାରିଖରେ ''ଇଣ୍ଡିଆନ୍ ମିରର'' ପତ୍ରିକାରେ ଲେଖିଥିଲେ– ''ସ୍ୱାମୀ ବିବେକାନନ୍ଦଙ୍କର ସୁବୃହତ୍ ପ୍ରତିଶ୍ରୁତିଗୁଡ଼ିକ ଚିକାଗୋର ରାସ୍ତାଘାଟରେ ଟଙ୍ଗା ହୋଇଛି । ତା' ତଳେ ସନ୍ନ୍ୟାସୀ ବିବେକାନନ୍ଦ ଲିଖିତ ହୋଇଛି । ହଜାର ହଜାର ବିଭିନ୍ନ ସମ୍ପ୍ରଦାୟର ପଥିକ ଏହି ପ୍ରତିଶ୍ରୁତିଗୁଡ଼ିକ ପ୍ରତି ଭକ୍ତିର ସମ୍ମାନ ପ୍ରଦର୍ଶନ କରି ଚାଲିଯାଉଛନ୍ତି'' । ସ୍ୱାମିଜୀ ୧୮୯୩– ୧୮୯୬ ମସିହା ମଧ୍ୟରେ ଆମେରିକା, ଇଂଲଣ୍ଡ ଓ ଇଉରୋପର ବିଭିନ୍ନ ଦେଶରେ ପରିଭ୍ରମଣ କରି ହିନ୍ଦୁ ଧର୍ମର ପ୍ରାଚ୍ୟ ଦର୍ଶନର ଯେଉଁ ସୂକ୍ଷ୍ମ ତତ୍ତ୍ୱ ବିଷୟରେ ଶିକ୍ଷା ପ୍ରଦାନ କରିଥିଲେ, ତାହା ଏବେ ବି ପାଶ୍ଚାତ୍ୟ ଦାର୍ଶନିକମାନଙ୍କର ସ୍ମରଣୀୟ ହୋଇ ରହିଛି ।

ଗ୍ରନ୍ଥକାର ତଥା ସମ୍ପାଦକ, ମାର୍ଗଦର୍ଶୀ
ମେନ୍ ରୋଡ଼, ଖୋର୍ଦ୍ଧା



# ନେତାଜୀ ସୁଭାଷ ଚନ୍ଦ୍ର ବୋଷ

ଡକ୍ଟର ନିର୍ମଳା କୁମାରୀ ମହାପାତ୍ର



ନେତାଜୀ କହିଲେ ସମସ୍ତେ ବୁଝନ୍ତି ଜଣକୁ, ସେ ହେଲେ ସୁଭାଷ ଚନ୍ଦ୍ର ବୋଷ । କଟକ ନଗରର ଓଡ଼ିଆ ବଜାରରେ ଜାନକୀନାଥ ଭବନ ହେଲା ତାଙ୍କର ଜନ୍ମସ୍ଥଳୀ । ୧୮୯୭, ଜାନୁଆରୀ ୨୩ ତାରଖରେ ତାଙ୍କର ଆବିର୍ଭାବ ମାତା ପ୍ରଭାବତୀ ଦେବୀ ଓ ପିତା ଜାନକୀନାଥ ବୋଷ (କେତେକଙ୍କ ମତରେ ବସୁ)ଙ୍କ ପରିବାରରେ । ଉତ୍ତର ଫାଲ୍‌ଗୁନି ନକ୍ଷତ୍ରରେ କନ୍ୟାରାଶି । ଜାନକୀନାଥ ଆଇନ ଶାସ୍ତ୍ରରେ ସ୍ନାତକ ଡିଗ୍ରୀ ପାଇ ୧୮୮୫ରେ କଟକ ଆସିଥିବା ପ୍ରକାଶ । ସ୍ୱପ୍ରତିଷ୍ଠା ବଳରେ ସେ ହୋଇଥିଲେ ସରକାରୀ ପ୍ରବକ୍ତା । ନିଜର ପ୍ରତିଭା ବଳରେ ହୋଇଥିଲେ ତତ୍‌କାଳୀନ କଟକ ମ୍ୟୁନିସିପାଲିଟିର ପ୍ରଥମ ଅଧ୍ୟକ୍ଷ । ବ୍ରିଟିଶ ସରକାରଙ୍କଠାରୁ ପାଇଥିଲେ ସେ 'ରାୟବାହାଦୁର' ଉପାଧି । ସ୍ୱାଧୀନତା ସଂଗ୍ରାମର ଆଇନ ଅମାନ୍ୟ ଆନ୍ଦୋଳନ କାଳର ବ୍ରିଟିଶ ଦମନ ଲୀଳାକୁ ତୀବ୍ର ବିରୋଧ କରି ଜାନକୀନାଥ ୧୯୩୦ରେ ପ୍ରୋକ୍ତ 'ରାୟବାହାଦୁର' ଉପାଧି ପ୍ରତ୍ୟାଖ୍ୟାନ କରିଥିଲେ । ପ୍ରଭାବତୀ ଦେବୀ ଓ ଜାନକୀନାଥଙ୍କର ଥିଲେ ୧୪ଜଣ ସନ୍ତାନ । ସେଥିରୁ ସୁଭାଷଚନ୍ଦ୍ରଙ୍କ ସ୍ଥାନ ଥିଲା ନବମ । ସେହି ଚଉଦ ଜଣଙ୍କର ନାମ ଏବେ ଦେଖିବା । ଯଥା–

| | | |
|---|---|---|
| ୧. ଝିଅ | : | ପ୍ରମିଳାବାଳା ମିତ୍ର |
| ୨. ଝିଅ | : | ସରଳାବାଳା ଦେ |
| ୩. ପୁଅ | : | ସତୀଶ ଚନ୍ଦ୍ର ବୋଷ |
| ୪. ପୁଅ | : | ଶରତ ଚନ୍ଦ୍ର ବୋଷ |
| ୫. ପୁଅ | : | ସୁରେଶ ଚନ୍ଦ୍ର ବୋଷ |
| ୬. ପୁଅ | : | ସୁଧୀର ଚନ୍ଦ୍ର ବୋଷ |
| ୭. ପୁଅ | : | ସୁନୀଲ ଚନ୍ଦ୍ର ବୋଷ |
| ୮. ଝିଅ | : | ତରୁବାଳା ରାୟ |
| ୯. ପୁଅ | : | ସୁଭାଷ ଚନ୍ଦ୍ର ବୋଷ |

୧୦. ଝିଅ : ମାଳିନୀ ଦତ୍ତ

୧୧. ଝିଅ : ପ୍ରତିଭା ମିତ୍ର

୧୨. ଝିଅ : କନକଲତା ମିତ୍ର

୧୩. ପୁଅ : ଶୈଳେଶ ଚନ୍ଦ୍ର ବୋଷ

୧୪. ପୁଅ : ସନ୍ତୋଷ ଚନ୍ଦ୍ର ବୋଷ

ସୁଭାଷ ଚନ୍ଦ୍ର ପ୍ରଥମେ କଟକର ଖ୍ରୀଷ୍ଟିଆନ୍ ସ୍କୁଲରେ ଓ ପରେ ରେଭେନ୍ସା କଲେଜିଏଟ୍ ସ୍କୁଲରେ ପଢ଼ି ୧୯୧୩ରେ ପ୍ରବେଶିକା ପରୀକ୍ଷାରେ କୃତିତ୍ୱ ସହକାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେତେବେଳେ ବଙ୍ଗ–ବିହାର–ଓଡ଼ିଶା ଏକ ଶାସନାଧୀନ । ପ୍ରୋକ୍ତ ପ୍ରବେଶିକା ପରୀକ୍ଷା ବା ଏଣ୍ଟ୍ରାନ୍ସ ଏକ୍ଜାମିନେସନ୍‌କୁ କଲିକତା ବିଶ୍ୱବିଦ୍ୟାଳୟ ପରିଚାଳନା କରୁଥିଲେ । ସୁଭାଷ ଚନ୍ଦ୍ର ଏଇ ପରୀକ୍ଷାରେ, ତିନୋଟି ରାଜ୍ୟରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ପ୍ରକାଶଥାଉ କି, ପ୍ରଥମ ସ୍ଥାନରେ ଥିଲେ ପ୍ରମଥନାଥ ସରକାର । ସୁଭାଷ ଚନ୍ଦ୍ର କଲେଜିଏଟ୍ ସ୍କୁଲର ପ୍ରଧାନଶିକ୍ଷକ ପ୍ରାଜ୍ଞ ଶ୍ରୀ ବେଣୀମାଧବ ଦାସଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ । ସୁଭାଷ ଚନ୍ଦ୍ରଙ୍କର କଲେଜ ଶିକ୍ଷାଲାଭ ହୋଇଥିଲା କଲିକତାର ପ୍ରେସିଡେନ୍ସି କଲେଜରେ । ଛାତ୍ରନେତା ଭାବେ ଅନ୍ୟାୟର ପ୍ରତିବାଦ କରି ସେ କଲେଜରେ ବହିଷ୍କୃତ ହୋଇଥିଲେ । ପରବର୍ତ୍ତୀ କାଳରେ ବିଶ୍ୱବିଦ୍ୟାଳୟର କୁଳପତି ବିଶିଷ୍ଟ ଶିକ୍ଷାବିତ୍ ସାର୍ ଆଶୁତୋଷ ମୁଖାର୍ଜୀଙ୍କ ସୁଦୃଷ୍ଟିକୁ ଆସି ସ୍କଟିଶ ଚର୍ଚ୍ଚ କଲେଜରେ ନାମଲେଖାଇ ଦର୍ଶନଶାସ୍ତ୍ରରେ ଅନର୍ସ ସହ ପ୍ରଥମ ଶ୍ରେଣୀରେ ପାଶ୍ କଲେ । ବିଲାତ ଯାଇ କେମ୍ବ୍ରିଜ୍‌ରେ ଅଧ୍ୟୟନ କଲେ । ଭାରତୀୟ ସିଭିଲ ସର୍ଭିସ୍ ପରୀକ୍ଷାରେ ସେ ଚତୁର୍ଥସ୍ଥାନ ଅଧିକାର କରିଥିଲେ । ତାଙ୍କ ମାର୍କସିଟ୍‌ରୁ ଜଣାଗଲା ଯେ English Compositionରେ ସର୍ବୋଚ୍ଚ ନମ୍ବର ହାସଲ କରିଥିଲେ । ସିଭିଲ୍ ସର୍ଭିସ୍‌ର ଶିକ୍ଷାନବିସମାନଙ୍କ ପାଇଁ ମୁଦ୍ରିତ ପାଠ୍ୟପୃଷ୍ଠାରେ ସେ ଦେଖିଲେ ଭାରତୀୟମାନଙ୍କ ଉଦ୍ଦେଶ୍ୟରେ କିଛି ମନ୍ଦ ମନ୍ତବ୍ୟ । ପ୍ରତିବାଦ କଲେ । ଉପସ୍ଥିତ ଅଧିକାରୀଙ୍କ ସହ ବିତର୍କ ହେଲା । ପରେ ଯେତେ ସାଲିସ୍ କରାଗଲେ ବି ସୁଭାଷଚନ୍ଦ୍ର ଚାକିରିକୁ ଆଡ଼ ଆଖିରେ ନ ଅନାଇ ଇସ୍ତଫା ଦେଲେ । ଦେଶ ସ୍ୱାଧୀନତାକୁ ଶ୍ରେୟ ଭାବି ସେ ହେଲେ ଦେଶସେବୀ ଓ ବିପ୍ଳବୀ ।

କଲିକତା ମହାନଗରୀର ନିର୍ବାଚିତ ମେୟର ସୁଭାଷଚନ୍ଦ୍ର ବହୁ ସ୍ଥଳରେ ଉଦାରତା ଓ ବଦାନ୍ୟତାର ପରିଚୟ ଦେଇଥିଲେ । ସେ ଦୁଇଥର ଭାରତୀୟ ଜାତୀୟ କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିଲେ । ତାଙ୍କର ପ୍ରତିଭାକୁ ସମ୍ମାନ ଜଣାଇ କବି ରବୀନ୍ଦ୍ରନାଥ ଠାକୁର ତାଙ୍କୁ 'ଦେଶ ନାୟକ' ପଦମର୍ଯ୍ୟାଦା ଦେଇଥିଲେ । ଏବେ ସମଗ୍ର ପଶ୍ଚିମବଙ୍ଗରେ ଜାନୁଆରୀ ୨୩ ତାରିଖ, ନେତାଜୀଙ୍କ ଜନ୍ମଦିବସକୁ 'ଦେଶ ନାୟକ ଦିବସ' ଭାବେ ପାଳନ କରାଯାଉଅଛି । ସୁଭାଷ ଚନ୍ଦ୍ରଙ୍କର ଦେଶକୁ ସ୍ୱାଧୀନ କରିବାର ଚିନ୍ତାଧାରା ଥିଲା ଭିନ୍ନ । ସେ କହୁଥିଲେ– ''ମୋତେ ରକ୍ତ ଦିଅ, ମୁଁ ସ୍ୱାଧୀନତା ଦେବି ।'' ତାଙ୍କର ଡାକରା ଥିଲା ''ଦିଲ୍ଲୀ ଚଲୋ'', ଇନ୍‌କିଲାବ: ଜିନ୍ଦାବାଦ ।

ସୁଭାଷ ଚନ୍ଦ୍ରଙ୍କ ପ୍ରତିଭାର ଚମତ୍କାରିତା ବହୁ ଘଟଣାରୁ ବାରି ହୋଇପଡ଼ିଥିଲା । ବିଲାତର ପ୍ରିନ୍ସ ଅଫ୍ ୱେଲ୍‌ସଙ୍କର କଲିକତା ଆଗମନ ଉପଲକ୍ଷେ ଘୋଷଣା ଥିଲା ସବୁଆଡ଼େ ବ୍ରିଟିଶ ପତାକା ଉଡ଼ିବ । ତାହା କରାଯାଇ ନଥିଲା ସୁଭାଷଙ୍କ ହରତାଳ ଡାକରା ଯୋଗୁଁ । ଅମାନବିକ ଅତ୍ୟାଚାର ଚଳାଉଥିବା ଶାସକମାନଙ୍କ ପ୍ରତି ଏତେ ସମ୍ମାନବୋଧ କାହିଁକି ? ସେ କହୁଥିଲେ ''ପୂର୍ଣ୍ଣ ସ୍ୱାଧୀନତା'' ପାଇଁ ପ୍ରୟାସ–ପ୍ରଚେଷ୍ଟା–ପ୍ରସ୍ତାବର ପ୍ରବାହ ଜାରି ରହୁ । ଏଣୁ ଭାରତୀୟ ଜାତୀୟ କଂଗ୍ରେସ (ସଂକ୍ଷେପରେ କଂଗ୍ରେସ)ର ଔପନିବେଶିକ ସ୍ୱାଧୀନତା ବା ଡୋମିନିଏନ୍ ଷ୍ଟାଟସ୍ ଦାବି ପ୍ରତି ତାଙ୍କର ସମର୍ଥନ ନଥିଲା । ତାଙ୍କର ମତକୁ ସମସ୍ତ ବାମପନ୍ଥୀ ସଦସ୍ୟ ସମର୍ଥନ କରୁଥିଲେ । ଫଳତଃ ୧୯୨୯ରେ ଲାହୋର ଅଧିବେଶନରେ 'ପୂର୍ଣ୍ଣ ସ୍ୱାଧୀନତା' ଭାରତୀୟ ଜାତୀୟ ସଂଗ୍ରାମର ଲକ୍ଷ୍ୟ ବୋଲି ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ପୁନଶ୍ଚ ୧୯୩୧, ମାର୍ଚ୍ଚ ୨୭ ତାରିଖରେ କରାଚିଠାରେ ଅନୁଷ୍ଠିତ ସମ୍ମିଳନୀରେ ସୁଭାଷଚନ୍ଦ୍ର ସଭାପତିତ୍ୱ କରି ବ୍ରିଟିଶ ସରକାରଙ୍କୁ ଚେତାବନୀ ଦେଇଥିଲେ । କାରଣ ଥିଲା ବିପ୍ଳବୀ ଭଗତ ସିଂହ,

ରାଜଗୁରୁ, ଶୁକଦେବଙ୍କୁ ଫାଶୀଦଣ୍ଡ । ଅନ୍ୟାୟର ମୂଳପୋଛ ପାଇଁ ଚରମ ପ୍ରତିଶୋଧର ଆଲୋଚନା ପ୍ରୋକ୍ତ ସମ୍ମିଳନୀରେ ହୋଇଥିଲା । ଏହାର ପ୍ରଭାବରେ ଗାନ୍ଧୀ–ଇର୍‌ଉଇନ୍ ଚୁକ୍ତି କିଛିଦିନ ବିଳମ୍ବିତ ହୋଇଥିଲା ମଧ୍ୟ ।

ସୁଭାଷ ଚନ୍ଦ୍ରଙ୍କ ସଭାପତିତ୍ୱରେ କଂଗ୍ରେସର ୧୯୩୮ ବାର୍ଷିକ ଅଧିବେଶନ ହରିପୁରରେ ବସିଥିଲା । ସେଥିରେ ତାଙ୍କର ଆହ୍ୱାନ ଥିଲା କି ପୂର୍ଣ୍ଣ ସ୍ୱାଧୀନତା ପାଇଁ ଜାତି–ଧର୍ମ–ବର୍ଣ୍ଣ ନିର୍ବିଶେଷରେ ସଂଗ୍ରାମ ଚଳାଇ ରଖାଯାଉ । ତା' ପରବର୍ଷ, ୧୯୩୯ରେ ସେ ପୁନଃ କଂଗ୍ରେସର ସଭାପତି ନିର୍ବାଚିତ ହୋଇଥିଲେ । ଏଇ ସମ୍ବାଦ ଭାରତ ତଥା ବିଲାତରେ ଚହଳ ପକାଇ ଦେଇଥିଲା । ପ୍ରମୁଖ କଂଗ୍ରେସ ନେତାଙ୍କ ସହ ମତପାର୍ଥକ୍ୟ ହେତୁ ସେ କଂଗ୍ରେସରୁ ଇସ୍ତଫା ଦେଇ 'ଫରୱାର୍ଡ଼ ବ୍ଲକ୍' ନାମକ ଦଳ ଗଢ଼ିଲେ । ଇତିମଧ୍ୟରେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଥିଲା । ଇଂରେଜ ସରକାର Section 129 of the Defence of India Rules ବଳରେ ସୁଭାଷଚନ୍ଦ୍ରଙ୍କୁ ବନ୍ଦୀ କଲେ । ଏହା ବିରୋଧରେ ଆମରଣ ଅନଶନ କରି ସେ ବଙ୍ଗଳାର ଗଭର୍ଣ୍ଣରଙ୍କୁ ଲେଖିଲେ ଯାହାର କିୟତ୍ ଅଂଶ ନିମ୍ନରେ ପ୍ରଦତ୍ତ । ଯଥା– "xxx The Individual must die, so that the nation may live. Today I must die, so that India may win freedom and glory." ଏଥିପରେ ଜେଲରୁ ଖଲାସ ହୋଇ ନଜରବନ୍ଦୀରେ ଥିବାବେଳେ ସରକାରଙ୍କ ଆଖିରେ ଧୂଳିଦେଇ ମୌଲବୀ ବେଶରେ ୧୯୪୧, ଜୁଲାଇ ୧୭ ତାରିଖ ମଧ୍ୟରାତ୍ରରେ କଲିକତାର ଏଲଗ୍ରୀନ୍ ରୋଡ଼ର ୩୮/୨ ଘରୁ ସେ ବାହାରିଗଲେ । ପାହାଡ଼–ପର୍ବତ ଅତିକ୍ରମ କରି ପହଞ୍ଚିଲେ କାବୁଲରେ । ସେତେବେଳେ ସେ ମୌଲବୀ ଜିଆଉଦ୍ଦିନ ଛଦ୍ମନାମ ବହନ କରିଥିଲେ । କାବୁଲରୁ ଗଲେ ମସ୍କୋ ଓ ବର୍ଲିନ । ଦେଶ ସ୍ୱାଧୀନ ହେବା ବିଷୟ ନେଇ ହିଟ୍‌ଲରଙ୍କ ସହ ତାଙ୍କର ସାକ୍ଷାତ୍ ଆଲୋଚନା ହେଲା । ସେ ଗଢ଼ିଲେ ଆଜାଦ ହିନ୍ଦ୍ ଫୌଜ । ନିଜେ ହେଲେ ଅଧିନାୟକ । ଫ୍ରାନ୍ସ, ସୁଇଜରଲାଣ୍ଡରେ ଥିବା ଭାରତୀୟମାନଙ୍କୁ ସେ ଏକାଠି କଲେ । ଜର୍ମାନୀରେ ରହୁଥିବା ଭାରତୀୟମାନେ ସୁଭାଷଚନ୍ଦ୍ରଙ୍କୁ 'ନେତାଜୀ' ସମ୍ବୋଧନ କଲେ । ସେତେବେଳେ ତାଙ୍କର ଛଦ୍ମନାମ ଥିଲା ଅର୍ଲାଣ୍ଡୋ ମେଜେଟା । ବାଦାମୀ ରଙ୍ଗର ପୋଷାକ, ଗୋଲକାଚର ଚଷମା, ଆଜାଦ ହିନ୍ଦ୍ ଫୌଜର ବ୍ୟାଜ୍ ଓ ପ୍ରତୀକ ଆଦି ତାଙ୍କୁ ସ୍ୱତନ୍ତ୍ର ପରିଚୟ ଦେଉଥିଲା । ଦେଶକୁ ସ୍ୱାଧୀନ କରିବା ପାଇଁ ଧନୀ–ଗରିବ ସକଳେ ତାଙ୍କ ପାଦପାଖରେ ଅର୍ଥ–ଅଳଙ୍କାର ଆଦି ଅଜାଡ଼ି ଦେଉଥିଲେ । ସେ କାଳରେ ତାଙ୍କୁ ଦିଆଯାଇଥିବା ଫୁଲମାଳଟି ସାତଲକ୍ଷ ଟଙ୍କାରେ ନିଲାମ ହୋଇଥିଲା । ତାଙ୍କଦ୍ୱାରା ଗଠିତ କାମଚଳା ସରକାର, ବ୍ୟାଙ୍କ, ନୋଟ୍ ଆଦି ଦେଖି ଲୋକେ ଚକିତ ହେଉଥିଲେ ।

ସିଙ୍ଗାପୁରର କାଥେ ହଲ୍‌ରେ ୨୧, ଅକ୍ଟୋବର ୧୯୪୩ରେ ସୁଭାଷଚନ୍ଦ୍ରଙ୍କର ଶପଥ ଗ୍ରହଣ ଥିଲା ଅନ୍ୟତମ ସ୍ମରଣୀୟ ଇତିହାସ । ସେ Provisional Govt. of Free Indiaର ଉଦ୍‌ଘାଟନୀ ଉତ୍ସବରେ କହିଲେ– "In the name of God, I take the sacred oath to liberate India and the thirty eight crore of my country men; I Subhash Chandra Bose will continue the sacred war of freedom till the last breath of my life. I shall always remain a servant of India. Even after winning freedom I will always be prepared to shed blood for the preservation of India's freedom."

ସୁଭାଷ ଚନ୍ଦ୍ରଙ୍କ ଦେଶପ୍ରୀତି, ବୀରତ୍ୱ, ତ୍ୟାଗ, ଦେଶବାସୀଙ୍କ ପ୍ରତି ସେବା ମନୋଭାବ ଏଥିରୁ ଆକଳିତ ହୁଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳର ହଟଚମକ ଭିତରେ ନେତାଜୀ ଥିଲେ ବହୁମାନିତ ସ୍ୱତନ୍ତ୍ର ବ୍ୟକ୍ତିତ୍ୱ । ଜାପାନ ଅଧିକାର କରିଥିବା 'ଆଣ୍ଡାମାନ' ଓ 'ନିକୋବର' ଦୁଇ ଅଞ୍ଚଳକୁ , ସେ ଦେଶର ପ୍ରଧାନମନ୍ତ୍ରୀ ଭାରତର ପ୍ରୋଭିଜିନାଲ ସରକାରଙ୍କୁ ହସ୍ତାନ୍ତର କରିଥିଲେ । ସେତେବେଳେ ନେତାଜୀ ଆଣ୍ଡାମାନକୁ ନାମିତ କରିଥିଲେ 'ସହିଦ୍' ଓ ନିକୋବରକୁ 'ସ୍ୱରାଜ୍ୟ' ଭାବେ । ପରବର୍ତ୍ତୀ କାଳରେ ନେତାଜୀ କୋହିମା

ଅଞ୍ଚଳକୁ ଅଧିକାର କରି ସେଠାରେ ଲମ୍ଫ ଦେଉଥିବା ବାଘଚିହ୍ନିତ ତ୍ରିରଙ୍ଗା ଉଡ଼ାଇଥିଲେ । ଆଜାଦ ହିନ୍ଦ୍ ଫୌଜର ପତାକାରେ ବର୍ତ୍ତମାନର ପତାକା ପରି ତିନି ରଙ୍ଗ ଥିଲା ମାତ୍ର ମଝିରେ ରହୁଥିଲା ଲମ୍ଫ ପ୍ରଦାନ କରୁଥିବା ବାଘର ଚିହ୍ନ । ସେ ରେଡ଼ିଓ ଷ୍ଟେସନ ପ୍ରତିଷ୍ଠା କରାଇଥିଲେ । ରେଡ଼ିଓ ଯୋଗେ ସେ ବାର୍ତ୍ତା ଜଣାଉଥିଲେ । ମହାତ୍ମା ଗାନ୍ଧୀଙ୍କ ଉଦ୍ଦେଶ୍ୟରେ ସେ କହିଥିଲେ– “xxx India’s last war of Independence has began. xxx Father of Our Nation in this holy war of India’s liberation, we ask for your blessings and good wishes.” ଏଥିରୁ ନେତାଜୀଙ୍କର ଗାନ୍ଧିଜୀଙ୍କ ପ୍ରତି ଥିବା ସମ୍ମାନବୋଧ ବୁଝିହୁଏ । ପୂର୍ବର ସକଳ ମତାନ୍ତର ସତ୍ତ୍ୱେ ସେ ଦେଶ ପାଇଁ ଆବେଦନମୂଳକ ବେତାର ବାର୍ତ୍ତା ଓ ଆଶିଷ ଭିକ୍ଷା କରିଥିଲେ ।

ସୁଭାଷଚନ୍ଦ୍ରଙ୍କ ଆତ୍ମଜୀବନୀମୂଳକ ପୁସ୍ତକ "The Indian Struggle"ର ପ୍ରସ୍ତୁତିରେ ତାଙ୍କୁ ସାହାଯ୍ୟ କରିଥିଲେ ଅଷ୍ଟ୍ରିଆ ଦେଶର ଜନୈକ ତରୁଣୀ । ନାମ– ଫ୍ରାଉଲିନ୍ ଏମିଲିୟେ ସେଙ୍କଲ । ଏହା ମୁଖ୍ୟତଃ ଭାରତର ମୁକ୍ତି ସଂଗ୍ରାମର ଇତିହାସ । ଏହାର ପ୍ରଥମ ଭାଗରେ ରହିଛି ପଲାସୀ ଯୁଦ୍ଧରୁ ଆରମ୍ଭ କରି ୧୯୩୪ ଯାଏଁ ଘଟଣାବଳୀ । ଦ୍ୱିତୀୟ ଭାଗରେ ୧୯୩୫–୧୯୪୨ ଯାଏଁ ସ୍ୱାଧୀନତା ସଂଗ୍ରାମର କାହାଣୀରେ ନେତାଜୀଙ୍କର ଅବଦାନ । ପ୍ରୋକ୍ତ ପୁସ୍ତକର ପ୍ରକାଶନରେ ସହାୟତା କରିଥିବା ମାଡ଼ାମ୍ ସେଙ୍କଲ ପରବର୍ତ୍ତୀ କାଳରେ ହୋଇଥିଲେ ନେତାଜୀଙ୍କର ଧର୍ମପତ୍ନୀ । ମୁଖ୍ୟତଃ ଶ୍ରୀମତୀ ସେଙ୍କଲ ଭିଏନା ସହରରେ ଟେଲିଗ୍ରାଫ୍ ଓ ଟେଲିଫୋନ୍ ବିଭାଗରେ କର୍ମଚାରୀ ଥିଲେ । ଏକଥା ସେ ତାଙ୍କର ବଡ଼ଭାଇ ଶରତଚନ୍ଦ୍ର ବୋଷଙ୍କୁ ଜଣାଇଥିଲେ । ସୁଭାଷଚନ୍ଦ୍ର ଓ ସେଙ୍କଲଙ୍କର ଝିଅ ଅନିତା ଭାରତକୁ ଆସିଥିଲେ । ବହୁମାନିତ–ସମ୍ବର୍ଦ୍ଧିତ ହୋଇଥିଲେ ମଧ୍ୟ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ବେଳେ ଦେଶକୁ କଳେବଳେ କୌଶଳେ ସ୍ୱାଧୀନ କରିବା ଇଚ୍ଛାରେ ଘୂରି ବୁଲୁଥିବା ଆମର ପ୍ରିୟ ନେତାଜୀ ସୁଭାଷଚନ୍ଦ୍ର ବୋଷ ୧୯୪୫, ଅଗଷ୍ଟ ୧୮ ତାରିଖରେ ଜାପାନର ଫର୍ମୋଜା ବିମାନବନ୍ଦରରୁ ଅନ୍ୟମାନଙ୍କ ସହ ଯାତ୍ରା କରିଥିଲେ । ସାଥୀରେ ଥିଲେ ସହଯୋଗୀ କର୍ଣ୍ଣେଲ ହବିବୁର ରହେମନ୍, କର୍ଣ୍ଣେଲ ପ୍ରୀତମ୍ ସିଂ ଏବଂ ଏ.ଏସ୍. ଆୟାର ଆଦି । ବିମାନରେ ଥିଲେ ତେରଜଣ ଯାତ୍ରୀ । କିନ୍ତୁ ଦୁର୍ଘଟଣାରେ ନେତାଜୀଙ୍କର ଅବସାନ ବୋଲି ଜଣାଇ ଦିଆଗଲା ସେହି ମାସ ଅଗଷ୍ଟ ୨୧ ତାରିଖରେ । ଓଃ... କି ଦୁଃଖ !

ନେତାଜୀଙ୍କ ଜୀବନର ଶେଷକାଳ ରହସ୍ୟମୟ ହୋଇ ରହିଛି । ନେତାଜୀ ସ୍ୱୟଂ ଏକ ଇତିହାସ । ବିଶ୍ୱର ବିରଳ ବ୍ୟକ୍ତିତ୍ୱ । ଦେଶର ଗୌରବ । ଦୀପ୍ତ ଆଦର୍ଶ ଓ ବୀରତ୍ୱର ଜ୍ୱଳନ୍ତ ନିଶାଣ ।

ସେକ୍ଟର–୨/୪୨୬
ନୀଳାଦ୍ରି ବିହାର
ଭୁବନେଶ୍ୱର–୨୧



# ଭାରତୀୟ ଗଣତନ୍ତ୍ର : ଆଶା ବିଶ୍ୱାସର ପ୍ରଜାତନ୍ତ୍ର

**ପ୍ରଫୁଲ୍ଲ କୁମାର ଦାସ**

ନୂତନ ଭାବେ ପ୍ରଣୀତ ଭାରତୀୟ ସମ୍ବିଧାନ ଯେବେଠାରୁ କାର୍ଯ୍ୟକାରୀ କରାଗଲା ସେହିଦିନଠାରୁ ଗଣତନ୍ତ୍ରର ଭୂସ୍ୱର୍ଗ ଭାରତବର୍ଷ ରାଜନୈତିକ ଇତିହାସରେ ଏକ ଐତିହାସିକ ଓ ସ୍ମରଣୀୟ ମୁହୂର୍ତ୍ତ ସୃଷ୍ଟି ହେଲା । ସେହିଦିନଠାରୁ ଆଜିଯାଏଁ ସମ୍ବିଧାନ ଅନୁଯାୟୀ ଭାରତର ଗଣତନ୍ତ୍ର ଶାସନ ଚାଲିଆସୁଛି । ଭାରତୀୟ ଗଣତନ୍ତ୍ରର ଅତୀତ–ବର୍ତ୍ତମାନ ଭବିଷ୍ୟତ ନେଇ ନାନା ପ୍ରକାର କଳ୍ପନା ଜଳ୍ପନା ଚାଲିଛି । ଶେଷରେ ଭାରତୀୟ ଗଣତନ୍ତ୍ର ସୁଦୃଢ, ଉଜ୍ଜ୍ୱଳ, ନିରାପଦ, ଶକ୍ତିଶାଳୀ ପ୍ରଜାତନ୍ତ୍ର ଭାବରେ ବିଶ୍ୱରେ ପ୍ରଶଂସିତ ହୋଇଛି । ଦେଶର ଏହି ଗଣତାନ୍ତ୍ରିକ ସ୍ତମ୍ଭ ଏତେ ଆଶା ବିଶ୍ୱାସର ଗଭୀର ସ୍ତରକୁ ଯାଇଛି ଯେ, ଭବିଷ୍ୟତରେ କୌଣସି ଦେଶ ମଧ୍ୟ ଅଙ୍ଗୁଳି ନିର୍ଦ୍ଦେଶ କରିପାରିବ ନାହିଁ । ଭାରତର କୌଣସି ରାଜନୈତିକ ଦଳ, ବ୍ୟକ୍ତି କିମ୍ବା ସାମରିକ ଶକ୍ତି ଏକଛତ୍ରବାଦର ସୁନେଲି ସ୍ୱପ୍ନ ଦେଖିପାରିବ ନାହିଁ । ଅପର ପକ୍ଷରେ କୌଣସି ରାଜନୈତିକ ଦଳ ନିରବଚ୍ଛିନ୍ନ ଭାବରେ କ୍ଷମତାସୀନ ହୋଇପାରିବ ନାହିଁ । କାରଣ ବହୁ ବ୍ୟବସ୍ଥା ଯୋଗୁଁ ଏହା ସମ୍ଭବପର ହୋଇପାରିବ ନାହିଁ । ଦେଶର ଜନତା ବା ଜନଶକ୍ତି ସକଳ କ୍ଷମତାର ଆଧାର । ଭାରତୀୟ ଗଣତନ୍ତ୍ର ବିଧି ବ୍ୟବସ୍ଥାରେ ନୈରାଶ୍ୟବାଦର ସ୍ଥାନ ନାହିଁ । ଗଣତନ୍ତ୍ରର ସଂଜ୍ଞା ନିରୁପଣ କରିବାକୁ ଯାଇ ଆମେରିକାର ରାଷ୍ଟ୍ରପତି ଆବ୍ରାହମ୍ ଲିଙ୍କନ କହିଛନ୍ତି ''ଗଣତନ୍ତ୍ର ଲୋକମାନଙ୍କର, ଲୋକମାନଙ୍କ ପାଇଁ, ଲୋକମାନଙ୍କ ଦ୍ୱାରା ଉଦ୍ଦିଷ୍ଟ ।''

ସମଗ୍ର ବିଶ୍ୱର ସର୍ବବୃହତ୍, ସର୍ବଜନାଦୃତ ଭାରତୀୟ ସମ୍ବିଧାନ, ଯାହାର ସ୍ଥିତି–ବିରଳ । ଏହି ପ୍ରଣୟନରେ ଡକ୍ଟର ରାଜେନ୍ଦ୍ର ପ୍ରସାଦ,ପଣ୍ଡିତ ଜବାହରଲାଲ ନେହେରୁ, ଡକ୍ଟର ଭୀମ ରାଓ ଆମ୍ବେଦକର, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଶ୍ରୀମତୀ ସୁଚେତା କ୍ରିପାଳିନୀ, ଶ୍ରୀମତୀ ସରୋଜିନୀ ନାଇଡୁ, ଶ୍ରୀ ବି.ଏନ୍.ରାଓ, ପଣ୍ଡିତ ଗୋପାଳ ବଲ୍ଲଭ ପନ୍ଥ, ଶ୍ରୀ ଶରତ ଚନ୍ଦ୍ର ବୋଷ, ଶ୍ରୀ ରାଜ ଗୋପାଳ ଚାରୀ, ଶ୍ରୀ ଏନ୍ ଗୋପାଳ ସ୍ୱାମୀ ଆୟାଙ୍ଗାର, ଡକ୍ଟର ଶ୍ୟାମା ପ୍ରସାଦ ମୁଖାର୍ଜୀ, ଶ୍ରୀ ଗୋପିନାଥ ବର୍ଦ୍ଦୋଲୋଇ, ଶ୍ରୀ ଜେ.ବି.କ୍ରିପ୍‌ଲାନୀଙ୍କ ଭଳି ମହାନ୍ ବିଦ୍ୱାନ୍‌ମାନଙ୍କର ବିଶେଷ ଅବଦାନ ରହିଛି । ଡକ୍ଟର ଭୀମରାଓ ଆମ୍ବେଦକର ଏହାର ଅକ୍ଷ ରହିଥିଲେ । ବିଶ୍ୱର ସବୁ ବଡ ବଡ ରାଷ୍ଟ୍ରଙ୍କ କାର୍ଯ୍ୟକ୍ଷମ ସମ୍ବିଧାନ ରହିଛି । ସେସବୁର ତର୍ଜମା କରାଯାଇ ତା'ଠାରୁ ଉତ୍କୃଷ୍ଟ ସମ୍ବିଧାନ ଟିଠା ପ୍ରସ୍ତୁତ କରାଯାଇଥିଲା । ଏଥିପାଇଁ ଅନେକ ଥର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଥିପାଇଁ ମୋଟ ୨ ବର୍ଷ ୧୧ମାସ ୧୭ଦିନ ସମୟ ଲାଗିଥିଲା । ଫଳରେ ଏହାର ନିର୍ଯ୍ୟାସ ସ୍ୱରୂପ ଏଥିରେ ୩୯୫ଟି ଧାରା ଓ ୮ଟି ପରିଶିଷ୍ଟ ସହିତ ଭାରତର ନୂତନ ସମ୍ବିଧାନ ପ୍ରସ୍ତୁତ କରାଯାଇ ୧୯୫୦ ମସିହା ଜାନୁୟାରୀ ୨୬ ତାରିଖରେ ଏହାକୁ କାର୍ଯ୍ୟକାରୀ କରାଗଲା । ସେହିଦିନଠାରୁ ସେହିଦିନଟି ଏକ ଐତିହାସିକ ଦିବସ ଭାବରେ ରହିଆସିଛି । ଏହି ସମ୍ବିଧାନ କାର୍ଯ୍ୟକାରୀ ହେବା ଦିନଠାରୁ ଭାରତବର୍ଷ ଏକ ଧର୍ମନିରପେକ୍ଷ ଜନ ମଙ୍ଗଳ ରାଷ୍ଟ୍ର ଭାବରେ ପରିଗଣିତ ହୋଇଛି । ଏହା ମଧ୍ୟରେ ସୁଦୀର୍ଘ ସାତ ଦଶନ୍ଧିରୁ

ଊର୍ଦ୍ଧ୍ୱ ସମୟ ଅତିବାହିତ ହୋଇଗଲାଣି । ଏହି ଦୀର୍ଘପଥ ଅତିକ୍ରମ ପରେ ଏହି ଅବଧି ମଧ୍ୟରେ ଦେଶର ସାମ୍ପ୍ରତିକ ପରିସ୍ଥିତି ତଥା ଦେଶବାସୀଙ୍କ ହିତକୁ ଦୃଷ୍ଟିରେ ରଖି ସମୟର ଆବଶ୍ୟକତାକୁ ଲକ୍ଷ୍ୟ କରି ଅନେକ ସଂଶୋଧନ କରାଯାଇଛି । ଦେଶବାସୀଙ୍କୁ ସୁଶାସନ ଯୋଗାଇ ଦେବାପାଇଁ ଏବଂ ନାଗରିକମାନଙ୍କ ଆଶା ଭରସା, ବିଶ୍ୱାସ, ଆକାଂକ୍ଷା ତଥା ପରିବର୍ଦ୍ଧିତ ସମୟର ଆବଶ୍ୟକତାକୁ ଦୃଷ୍ଟିରେ ରଖି ଏହାର ରୂପରେଖ ଓ କଳେବର ବୃଦ୍ଧି ହେବାରେ ଲାଗିଛି ।

ବିଶ୍ୱ ଇତିହାସରେ ଆଜି ଭାରତୀୟ ଗଣତନ୍ତ୍ର ସକଳ ପ୍ରକାର ଆହ୍ୱାନକୁ ସାମ୍ନା କରିବା ସହିତ ସୁଦୃଢ଼, ସୁପ୍ରତିଷ୍ଠିତ ଏବଂ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ପାଇଁ ସକ୍ଷମ ଓ ସମର୍ଥ ହୋଇପାରିଛି । ଏହାର ସମଗ୍ର ଶ୍ରେୟ ସମ୍ବିଧାନର ସକ୍ରିୟ ସୁଦୃଢ ଢାଞ୍ଚା ଉପରେ ଓ ସୁପରିକଳ୍ପନା ବ୍ୟବସ୍ଥା ଯୋଗୁଁ ସମ୍ଭବପର ହୋଇଛି । ଯାହା ଫଳରେ ଭାରତୀୟ ସମ୍ବିଧାନ ଦେଶର ନାଗରିକ ଓ ସେମାନଙ୍କର ଜାତୀୟ ଲକ୍ଷ୍ୟକୁ ଶାନ୍ତିପୂର୍ଣ୍ଣ  ତଥା ଗଣତାନ୍ତ୍ରିକ ବ୍ୟବସ୍ଥା ମଧ୍ୟରେ ହାସଲ କରିବା ସକାଶେ ଥିବା ଅଙ୍ଗୀକାରବଦ୍ଧତାକୁ ମଧ୍ୟ ସ୍ପଷ୍ଟ ଭାବେ ବିନିର୍ଦ୍ଦିଷ୍ଟ କରେ । ଭାରତୀୟ ଗଣତାନ୍ତ୍ରିକ ଧାରା ଓ ଭାରତୀୟ ସମ୍ବିଧାନ ଯାହା ପ୍ରତ୍ୟେକ ନାଗରିକଙ୍କ ସ୍ୱାଧୀନତା ଓ ସମାନତାର ମୌଳିକ ଅଧିକାରକୁ ଜାତି, ଗୋତ୍ର, ବର୍ଣ୍ଣ, ଲିଙ୍ଗ, ଭାଷା, ଧର୍ମ ନିର୍ବିଶେଷରେ ସମସ୍ତ ଭାରତୀୟ ଜାତୀୟତା ଉପରେ ଜନତା ଓ ନେତା ବିଶ୍ୱାସ କରେ । ବିଗତ ଦଶନ୍ଧି ଦଶନ୍ଧି ଧରି ଏହି ଆସ୍ଥା ଓ ବିଶ୍ୱାସ ବଳବତ୍ତର ରହି ଆସିଛି । ଏହାକୁ ପାଥେୟ କରି ଦେଶ ବହୁତ ମାଇଲଖୁଣ୍ଟ ଅତିକ୍ରମ କରିଛି । ଭାରତବର୍ଷ ବିଶ୍ୱର ସର୍ବବୃହତ୍ ଓ ସଫଳ ଗଣତନ୍ତ୍ରର ମାନ୍ୟତା ଲାଭ କରି ଗୌରବର ଅଧିକାରୀ ହୋଇଛି । ବିଶାଳ ମତଦାତାଙ୍କ ସତ୍ତ୍ୱେ ବି ଆମ ଦେଶର ନିର୍ବାଚନ ଧାରା ଅକ୍ଷୁଣ୍ଣ ରହିଛି । ସବୁ ନିର୍ବାଚନରେ ଅଧିକରୁ ଅଧିକ ମତଦାତା ସକ୍ରିୟ ଅଂଶ ଗ୍ରହଣ କରି ଆମ ଗଣତନ୍ତ୍ରର ସଫଳତାର ଔଜ୍ଜ୍ୱଲ୍ୟକୁ ପ୍ରମାଣିତ କରିଛନ୍ତି ।

ଭାରତର ଗଣତନ୍ତ୍ର ବିଶ୍ୱକୁ ପ୍ରଦର୍ଶିତ କରିଛି ଯେ, ରାଜନୈତିକ କ୍ଷମତା କିଭଳି ଭାବେ ଶାନ୍ତିପୂର୍ଣ୍ଣ ତଥା ଗଣତାନ୍ତ୍ରିକ ପ୍ରକ୍ରିୟାକୁ ରୂପାନ୍ତରିତ ହୋଇପାରେ । ଭାରତୀୟ ସମ୍ବିଧାନରେ ଦେଶ ଓ ରାଜ୍ୟମାନଙ୍କ ମଧ୍ୟରେ କ୍ଷମତାର ବିକେନ୍ଦ୍ରୀକରଣ କରାଯାଇଛି । ରାଷ୍ଟ୍ରର ପ୍ରମୁଖ ଅଙ୍ଗ ବିଧାନପାଳିକା, କାର୍ଯ୍ୟପାଳିକା ଓ ନ୍ୟାୟପାଳିକାର ନିଜସ୍ୱ ପରିଚିତି ରହିଛି । ଭାରତୀୟ ଗଣତାନ୍ତ୍ରିକ ବ୍ୟବସ୍ଥାରେ ସଂସଦର ସ୍ଥାନ ସର୍ବୋଚ୍ଚ କିନ୍ତୁ ତା'ର ମଧ୍ୟ ନିର୍ଦ୍ଦିଷ୍ଟ ପରିସର ଓ ସୀମାରେଖା ରହିଛି । ସମ୍ବିଧାନକୁ ସଂଶୋଧନ କରିବାର କ୍ଷମତା ରହିଛି କିନ୍ତୁ ଏହାର ମୌଳିକ ଢାଞ୍ଚା, ଆଭିମୁଖ୍ୟ ଓ ବୈଶିଷ୍ଟ୍ୟ ଅପରିବର୍ତ୍ତିତ । ଏହା ମଧ୍ୟରେ ଭାରତର ସମ୍ବିଧାନ ଶହେରୁ ଅଧିକ ଥର ସଂଶୋଧନ ହୋଇ ସାରିଲାଣି ତଥାପି ଅକ୍ଷୁଣ୍ଣ ରହିଛି । ଭାରତୀୟ ନାଗରିକଙ୍କ ସ୍ୱାର୍ଥକୁ ପ୍ରାଧାନ୍ୟ ଦେଇ ସମ୍ବିଧାନର ତୃତୀୟ ଅନୁଚ୍ଛେଦର ଧାରା ୧୨ ଠାରୁ ୩୫ ପର୍ଯ୍ୟନ୍ତ ମୌଳିକ ଅଧିକାରର ସୁବ୍ୟବସ୍ଥା ରହିଛି । ଏବେ ସମ୍ପତ୍ତିଗତ ମୌଳିକ ଅଧିକାରକୁ ୪୪ତମ ସଂଶୋଧନରେ ବାଦ୍ ଦିଆଯାଇଛି । ବର୍ତ୍ତମାନ ସମ୍ବିଧାନରେ ୬ଟି ମୌଳିକ ଅଧିକାର ଯଥା– ସମାନତାର ଅଧିକାର, ସ୍ୱାଧୀନତାର ଅଧିକାର, ଶୋଷଣ ବିରୋଧି ଅଧିକାର, ଧର୍ମାଚରଣ ସ୍ୱାଧୀନତାର ଅଧିକାର, ସାଂସ୍କୃତିକ ଓ ଶୈକ୍ଷିକ ଅଧିକାର ତଥା ସମ୍ବିଧାନ ପ୍ରତି ବିଧାନଗତ ଅଧିକାର । ଏହା ବ୍ୟତୀତ କେତେକ ମୌଳିକ କର୍ତ୍ତବ୍ୟର ମଧ୍ୟ ପ୍ରାବଧାନ ରହିଛି । ସମ୍ବିଧାନର ଧାରା ୫୧ (ଏ) ରେ ମୋଟ ୧୧ଟି ମୌଳିକ କର୍ତ୍ତବ୍ୟ ରହିଛି । ଯାହାଦ୍ୱାରା ନେତା ଓ ଜନତା କେତେକ ମୌଳିକ ଆଚରଣ ଓ ଗଣତାନ୍ତ୍ରିକ ମାନସିକତାର ସହ ଅଧିକାର ଓ କର୍ତ୍ତବ୍ୟ ମଧ୍ୟରେ ମଧୁର ସମନ୍ୱୟ ରକ୍ଷା କରାଯାଇପାରିବ ।

ଚଳିତ ଏକବିଂଶ ଶତାବ୍ଦୀକୁ ଆମେ ଯଦି ଭାରତର ଶତାବ୍ଦୀ ଭାବେ ଦେଖିବାକୁ ଚାହୁଁ ତେବେ ସମସ୍ତ ନାଗରିକଙ୍କୁ ସମର୍ପଣ ମନୋଭାବରେ କାମ କରିବାକୁ ପଡିବ । ତେବେ ରାଷ୍ଟ୍ର ପ୍ରଗତି ଓ ସମୃଦ୍ଧି ସମ୍ଭବପର ହୋଇପାରିବ । ଯୁବଶକ୍ତି ହିଁ ରାଷ୍ଟ୍ରଶକ୍ତି । ''ଏକ ଭାରତ ଶ୍ରେଷ୍ଠ ଭାରତ'' ନିର୍ମାଣ ଦିଗରେ ଆମେ ସମସ୍ତେ ମିଳିମିଶି କାମ କରିବା ଉଚିତ ।

ଆମେ ଭାରତର ଜଣେ ଜଣେ ସୁନାଗରିକ ଭାବରେ ସମ୍ବିଧାନ ଆମକୁ ଯେଉଁ ଅଧିକାର ଦେଇଛି ସେଥିପ୍ରତି ଆମେ ସଦାବେଳେ ସତର୍କ ରହି ସୁସ୍ଥ ଜୀବନ ନିର୍ବାହ କରିବା ଉଚିତ । ଗଣ ଅର୍ଥ ଲୋକ ତନ୍ତ୍ର ଅର୍ଥ ଶାସନ ଅର୍ଥାତ ଲୋକ ଶାସନ । ଦେଶ ଆଗେ ବ୍ୟକ୍ତି ପଛେ । ଆମେ ଭାବିବା ଉଚିତ । ଆତ୍ମନିର୍ଭରଶୀଳ ଭାରତ ଗଠନ ପାଇଁ ଆମେ କର୍ମତତ୍ପରତା ଦେଖାଇବା ଉଚିତ ।

ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଭାଷାରେ ''ଅର୍ଥନୈତିକ ସ୍ୱାଧୀନତା ବ୍ୟତିରେକ ରାଜନୈତିକ ସ୍ୱାଧୀନତା ମୂଲ୍ୟହୀନ ।'' ଭାରତୀୟ ସଂସଦୀୟ ଗଣତନ୍ତ୍ରରେ ବିନା ରକ୍ତପାତରେ ଲୋକଙ୍କର ଅର୍ଥନୈତିକ ଓ ସାମାଜିକ ଜୀବନରେ ବୈପ୍ଳବିକ ପରିବର୍ତ୍ତନ ଆଶା କରାଯାଏ । ଭାରତୀୟ ସମ୍ବିଧାନରେ ବିଶେଷକରି ନିର୍ଦ୍ଦେଶାତ୍ମକ ନୀତିର ଏହା ହିଁ ଥିଲା ଅନ୍ୟତମ ମୁଖ୍ୟ ଲକ୍ଷ୍ୟ । ଭାରତୀୟ ଗଣତନ୍ତ୍ର ଯୁକ୍ତିଯୁକ୍ତ ଭାବେ ବେଶ୍ ଭଲ ସ୍ଥିତିରେ ଅଛି । ୧୯୫୦ ମସିହା ଜାନୁଆରୀ ୨୬ ଦିନ ଡକ୍ଟର ଆମ୍ବେଦକର କହିଥିଲେ ''We are going to enter into a life of contradictions in politics we will have ineqality'' ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଭାଷାରେ ''ପ୍ରଜାଲାଗି ରଜା ପ୍ରଜାହିତେ ରାଜନୀତି ପ୍ରଜାହିତେ ରାଜନୀତି ପ୍ରଜାଇଚ୍ଛା ଅଭିମତ ରାଜ୍ୟ ମୂଳଭିତ୍ତି ।'' ଏଣିକି ରାଜନୀତିର ଭାଷା ବଦଳିବ ଓ ତା' ସହିତ ଗଣତନ୍ତ୍ରର ପ୍ରୟୋଗରେ ଭାରତୀୟତାର ଆଧାରଭୂତ ସଂରଚନା ପୁନଃ ସୃଜିତ ହେବ । କ୍ଷୁଦ୍ରତମ ମଣିଷର ନ୍ୟୂନତମ ଆବଶ୍ୟକତା ନୁହେଁ । କ୍ଷୁଦ୍ରତମ ଆଦର୍ଶର ଉଚ୍ଚତମ ଆଦର୍ଶର ଭାଷା ହେବ ଗଣତନ୍ତ୍ରରେ ରାଜନୀତି । ଭାରତୀୟ ଗଣତନ୍ତ୍ରରେ ଏକ ବିଶାଳ ମାନବୀୟ ଉଦାରତା ପୂର୍ଣ୍ଣ ପ୍ରକୃତି ସମାହିତ ସଭ୍ୟତା ଅଛି ।

ଗଣତନ୍ତ୍ର ରାଷ୍ଟ୍ରର ପ୍ରଭୁ ହେଉଛନ୍ତି ସାଧାରଣ ମଣିଷ । ଶାସନ ହେଉଛି ଲୋକସେବାର ମାଧ୍ୟମ ଏବଂ ଶାସକ ଓ ଅମଲାତନ୍ତ୍ର ହେଉଛନ୍ତି ସେବକ । ସଫଳତାର ଶୀର୍ଷରେ ଆମ ଦେଶକୁ ପହଂଚାଇବା ହେଉଛି ଆମ ଗଣତନ୍ତ୍ରର ମୁଖ୍ୟ ଉଦ୍ଦେଶ୍ୟ । ଗଣତନ୍ତ୍ରର ପରିସୀମା ଭିତରେ ଆମର ଦୃଢ ମନୋବଳ ହିଁ ପ୍ରକୃତ ଅସ୍ତିତ୍ୱ ଜାଣିବା ଓ ଜିଣିବାର ଏକ ଅପୂର୍ବ ସମନ୍ୱୟ ହିଁ ରାଜନୀତି । ଶିକ୍ଷିତ ସମାଜକୁ ପରିବର୍ତ୍ତନ ହେବାର ସମୟ ଆସିଛି । ପୂର୍ବପୁରୁଷଙ୍କ ଗର୍ବ ଗୌରବ ଏବଂ ଗଣତନ୍ତ୍ରର ମୌଳିକ ଲକ୍ଷ୍ୟକୁ ପାଥେୟ କରି ଆଗକୁ ବଢିବାର ସମୟ ଆସିଛି । ସେଥିପାଇଁ ରାଷ୍ଟ୍ରର ଚରିତ୍ର ଗଠନ ଏକାନ୍ତ ଆବଶ୍ୟକ । ସାମ୍ବିଧାନିକ ବିଧି ବ୍ୟବସ୍ଥା ବିଷୟରେ ସମ୍ୟକ ଜ୍ଞାନ ଆହରଣ କରିବା ସବୁ ନାଗରିକମାନଙ୍କର କର୍ତ୍ତବ୍ୟ । ଆଜି ସାଧାରଣତନ୍ତ୍ର ଦିବସର ଶୁଭ ଅବସରରେ ଆତ୍ମନିର୍ଭରଶୀଳ ହୋଇ ବେଳ ଥାଉଁ ଥାଉଁ ଦେଶ ସେବାରେ କର୍ମତତ୍ପରତା ଦେଖାଇବା ପାଇଁ ଶପଥ ନେବା ଉଚିତ ।

ସମ୍ପାଦକ, ଗୋପବନ୍ଧୁ ସାହିତ୍ୟ ସଂସଦ
ଚାନ୍ଦବାଲି, ଜିଲ୍ଲା– ଭଦ୍ରକ



# ଅନନ୍ୟା : ମା' ଅନ୍ନପୂର୍ଣ୍ଣା

**ମୀରା ବେଉରା**

ପବିତ୍ର ଉତ୍କଳର ଶିଳାଭୂମି ତଳେ ଆଜିବି ଲୁଚି ରହିଛି ଅନେକ ମହୀୟସୀ ନାରୀଶକ୍ତିମାନଙ୍କର ଇଂରେଜ ଶକ୍ତି ବିରୁଦ୍ଧରେ ସ୍ୱାଧୀନତା ସଂଗ୍ରାମର ତ୍ୟାଗ, ତିତିକ୍ଷା, ସାଧନା ଏବଂ ବିପ୍ଳବଭରା କାହାଣୀ । ତତ୍କାଳୀନ ରକ୍ଷଣଶୀଳ



ସମାଜରେ ଜନ୍ମଲାଭ କରି ଅନେକ ବାଧା, ବିପତ୍ତି, ପ୍ରତିବାଦ, ବିରୋଧ ତଥା ଅନେକ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଯେଉଁ ମହୀୟସୀ ନାରୀମାନେ ନିଜର ଜୀବନବ୍ୟାପୀ ସଂଗ୍ରାମ ସାଧନା ଦ୍ୱାରା ସମଗ୍ର ମାତୃଜାତି ପାଇଁ ଚିର ନମସ୍ୟା ପାଲଟି ଥିଲେ, ସେମାନଙ୍କ ମଧ୍ୟରେ ମା' ଅନ୍ନପୂର୍ଣ୍ଣା ମହାରଣା ଥିଲେ ମାତୃଜାତିର ଏକ ଅମ୍ଳାନ ପ୍ରତିଭା । କେବଳ ହିଂସା କି ରକ୍ତପାତରେ ସ୍ୱାଧୀନତା ସଂଗ୍ରାମ ସମ୍ଭବ ନୁହେଁ, ଶାନ୍ତି, ଅହିଂସା, ପ୍ରେମ, ସେବା ମାଧ୍ୟମରେ ତତ୍କାଳୀନ ଇଂରେଜ ସରକାରଙ୍କ ବିରୁଦ୍ଧରେ ସଂଗ୍ରାମ କରି ଗୋଟିଏ ନୂତନ ଓଡ଼ିଶା ନିର୍ମାଣର କେବଳ ଯେ ଇଚ୍ଛା ଥିଲା, ତା' ନୁହେଁ ବରଂ ମା' ଅନ୍ନପୂର୍ଣ୍ଣା ଗାନ୍ଧିଜୀଙ୍କ ମହାନ୍ ଆଦର୍ଶରେ ଅନୁପ୍ରାଣିତ ହୋଇ ନାରୀଶକ୍ତିର ପ୍ରମୁଖ ଭୂମିକାରେ ଅବତୀର୍ଣ୍ଣ ହୋଇ ଆଦର୍ଶ ମା'ଟିଏ ପାଲଟି ଯାଇଥିଲେ । ପ୍ରକୃତରେ ସେ ଥିଲେ ଜଣେ ସଚ୍ଚା ସ୍ୱାଧୀନତା ସଂଗ୍ରାମୀ । ଜଣେ ପ୍ରଚଣ୍ଡ ଦେଶପ୍ରେମୀ, ତ୍ୟାଗ, ତପସ୍ୟା, ତିତିକ୍ଷା, ମମତାର ଏକ ଜ୍ୱଳନ୍ତ ନିଦର୍ଶନ । ଏମିତି ମଣିଷ ଆମ ସମାଜରେ କମ୍ ଦେଖାଯାଆନ୍ତି, ଯିଏ ଯାହା କହନ୍ତି ତାଙ୍କ ଆଚରଣ ଓ ଜୀବନଶୈଳୀରେ ମଧ୍ୟ ଠିକ୍ ସେହି ଆଦର୍ଶ ବାରି ହୋଇପଡ଼େ । ଏହିଭଳି ସରଳ ଜୀବନଯାପନ କରୁଥିବା ମହୀୟସୀ ମହିଳା ଥିଲେ ଅନନ୍ୟା ମା' ଅନ୍ନପୂର୍ଣ୍ଣା । ଡେପୁଟି କଲେକ୍ଟର ଗୋପବନ୍ଧୁ ଚୌଧୁରୀ ଓ ସ୍ୱାଧୀନତା ସଂଗ୍ରାମୀ, ମା' ରମାଦେବୀଙ୍କ କୋଳମଣ୍ଡନ କରି ନଭେମ୍ବର ୩ ତାରିଖ ୧୯୧୭ ମସିହାରେ ବାଖରାବାଦ କଟକରେ ଜନ୍ମଗ୍ରହଣ କରିଥିଲେ ଅନ୍ନପୂର୍ଣ୍ଣା । ଦାଦା ନବକୃଷ୍ଣ ଚୌଧୁରୀ ଖୁଡ଼ୀ ମାଳତୀ ଚୌଧୁରୀ ଭାଇ ମନମୋହନ ଚୌଧୁରୀ ଓ ସ୍ୱାମୀ ଶରତ ଚନ୍ଦ୍ର ମହାରଣା, ପରିବାରର ପ୍ରାୟ ସମସ୍ତେ ସଂଗ୍ରାମୀ । ପିତା ଗୋପବନ୍ଧୁ ଚୌଧୁରୀ ଓ ମା' ରମାଦେବୀଙ୍କ ଆଜୀବନ ସଂଗ୍ରାମର ପ୍ରଭାବରେ ତାଙ୍କର ଜୀବନ ବେଶ୍ ପ୍ରଭାବିତ ହୋଇଥିଲା । ମାତ୍ର ୧୨ ବର୍ଷ ବୟସରୁ ବୈପ୍ଲବିକ ତ୍ୟାଗ, ତପସ୍ୟା, ସେବାମୟ

ଜୀବନର ଗୋଟିଏ ନିଖୁଣ ଜୀବନ୍ତ ମୂର୍ତ୍ତି ଥିଲେ ଅନନ୍ୟା ମା' ଅନ୍ନପୂର୍ଣ୍ଣା ।

ଜେଜେ ବାପା ବିଶିଷ୍ଟ ଆଇନଜୀବୀ ଗୋକୁଳାନନ୍ଦ ଚୌଧୁରୀ ଓ ଜେଜେମା'ଙ୍କ ନୈଷ୍ଠିକ ହିନ୍ଦୁ ଚଳଣିରେ ଜମିଦାରିଆ ଆଭିଜାତ୍ୟ ଭିତରେ ଜୀବନ କଟାଇଥିଲେ ଅନ୍ନପୂର୍ଣ୍ଣା । ପିତା ଗୋପବନ୍ଧୁ ଚୌଧୁରୀ ଏବଂ ମାତା ରମାଦେବୀ ଯେହେତୁ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଇ ଅନେକବାର କାରାବରଣ କରିଥିଲେ ଏବଂ ସେବା କାର୍ଯ୍ୟରେ ଜୀବନ ସଂସ୍ପର୍ଶରେ ଆସି ତାଙ୍କ ଦ୍ୱାରା ଖୁବ୍ ପ୍ରଭାବିତ ହୋଇଥିଲେ । ବିଲାତ ସ୍କୁଲରେ ପାଠ ପଢ଼ିବାକୁ ଉଚିତ ମଣି ପିତାମାତା ତାଙ୍କୁ ଗୃହରେ ଶିକ୍ଷାଦାନ ବ୍ୟବସ୍ଥା କରିଥିଲେ । ବାନର ସେନା ଭାବରେ କାର୍ଯ୍ୟକରି ମାତ୍ର ୧୩ ବର୍ଷ ବୟସରେ ସେ ଜେଲ୍ ଯାଇଥିଲେ । ପିତାଙ୍କ ସହ ବରୀ ସେବା କ୍ଷେତ୍ରରେ ଏବଂ ଅଳକାଶ୍ରମରେ ରହିଲା ପରେ ତାଙ୍କର ପରିବାର ବିସ୍ତୀର୍ଣ୍ଣ ହୋଇଯାଇଥିଲା । ଖୁଡ଼ୀ ମାଳତୀ ଚୌଧୁରୀ ଯେହେତୁ ରବୀନ୍ଦ୍ରନାଥ ଟାଗୋରଙ୍କ ଶାନ୍ତି ନିକେତନ ଢାଞ୍ଚାରେ ବଢ଼ିଥିଲେ, ତା'ର ପ୍ରଭାବ ମଧ୍ୟ ଅନ୍ନପୂର୍ଣ୍ଣାଙ୍କ ଉପରେ ଖୁବ୍ ପଡ଼ିଥିଲା । ଗାନ୍ଧୀଙ୍କ ବିଚାର ଓ ନିଷ୍ଠାରେ ଉଭୟ ସ୍ୱାମୀ ସ୍ତ୍ରୀ କେହି କାହାଠାରୁ କମ୍ ନଥିଲେ । ବିବାହ ପରେ ସେ ଦୁଇଟି ପୁତ୍ର ସନ୍ତାନର ଜନନୀ ହୋଇଥିଲେ । ସେମାନେ ବୃତ୍ତିରେ ଯଦିଓ ବୈଜ୍ଞାନିକ ଥିଲେ ତାଙ୍କର ଜୀବନଦର୍ଶନରେ ପ୍ରତି ଛତ୍ରେ ଛତ୍ରେ ଗାନ୍ଧୀ ବିଚାର ଭରି ରହିଥିଲା । ଅନ୍ନପୂର୍ଣ୍ଣା ଓ ସ୍ୱାମୀ ଶରତଚନ୍ଦ୍ର ମହାରଣା ଉଭୟେ ସଂଯମୀ, ପରିଶ୍ରମୀ, ନିର୍ଲୋଭୀ ଓ ପରୋପକାରୀ ହୋଇ ପରକୁ ଆପଣାର କରିବାର କଳାରେ ଥିଲେ ଧୁରନ୍ଧର । ହାତରେ ଅର୍ଥବଳ ନଥିଲେ ମଧ୍ୟ ଗାନ୍ଧୀ କାମ ଚଳେଇବାର ଲକ୍ଷଲକ୍ଷ ଟଙ୍କାର ସଫଳ ଯୋଜନା ସେମାନେ କରି ଗାନ୍ଧୀଙ୍କ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ସେ ନିଜର ପାରିବାରିକ ଜୀବନର ସବୁ ସୁଖକୁ ବଳି ଦେଇ ଲୋକଙ୍କ ମୁହଁରେ ହସ ଫୁଟାଉଥିଲେ । ରାମଚନ୍ଦ୍ରପୁର କସ୍ତୁରବା କେନ୍ଦ୍ରର ଛାତ୍ରୀ ନିବାସ ପୂର୍ବାପେକ୍ଷା ବଡ଼ ଆକାରର ତିଆରି କରି ଉପରେ ଆଜବେଷ୍ଟସ ଛପର ଦିଆଯାଇଥିଲା । ନିଜେ ଶରତ ବାବୁ ଓ ଅନ୍ନପୂର୍ଣ୍ଣା ସକାଳରୁ ସନ୍ଧ୍ୟା ପର୍ଯ୍ୟନ୍ତ ଏହି କାର୍ଯ୍ୟରେ ମୂଲିଆମାନଙ୍କ ସହ ଏତେ ମାତ୍ରାରେ ବ୍ୟସ୍ତ ରହିଯାଉଥିଲେ ଯେ ଯେ ନିଜର ଖାଇବା ପିଇବା ମଧ୍ୟ ଭୁଲି ଯାଉଥିଲେ । ମାସ ମାସ କରି ଅକ୍ଳାନ୍ତ ପରିଶ୍ରମ କରି ସେ ସେହି ଛାତ୍ରୀ ନିବାସକୁ ଗଢ଼ିଥିଲେ । ଏହିଭଳି ଅକ୍ଳାନ୍ତ ପରିଶ୍ରମ କରି ରୋଗାକ୍ରାନ୍ତ ମଧ୍ୟ ହୋଇଯାଉଥିଲେ । ମା' ଅନ୍ନପୂର୍ଣ୍ଣାଙ୍କ ଆଖି ଆଗରେ ଥିଲା ଭାରତମାତାର ସ୍ୱାଧୀନ ବଳିଷ୍ଠ, ନିର୍ମଳ ରାମରାଜ୍ୟର ନିଖୁଣ ଚିତ୍ର ଏବଂ ଗାନ୍ଧୀ ମହାତ୍ମାଙ୍କର ସତ୍ୟ, ଅହିଂସା ପ୍ରଣୋଦିତ ନିରସ୍ତ୍ର ସଂଗ୍ରାମ ତଥା ହୃଦୟରେ ଥିଲା ତାଙ୍କର ନିଷ୍ଠା ଓ ବିଶ୍ୱାସ । ସେ କୌଣସି ଆନୁଷ୍ଠାନିକ ଶିକ୍ଷା ପାଇନଥିଲେ ମଧ୍ୟ ଘରୋଇ ଶିକ୍ଷକଙ୍କ ପାଖରେ ରହି ନିଜର ଜ୍ଞାନ ଅଧ୍ୟବସାୟ ବଳରେ ନିଜ ପରିବାରଠୁଁ ଯେଉଁ ଶିକ୍ଷା ପାଉଥିଲେ ସେହି ଶିକ୍ଷାଦ୍ୱାରା ସମାଜସେବାକୁ ନିଜର ବ୍ରତ କରିଥିଲେ । ତାହା ବିଶ୍ୱବିଦ୍ୟାଳୟ ଶିକ୍ଷାଠାରୁ କିଛି କମ୍ ନଥିଲା । ଓଡ଼ିଆ, ଇଂରାଜୀ, ହିନ୍ଦୀ, ବଙ୍ଗଳା, ସଂସ୍କୃତ ଆଦି ବିଭିନ୍ନ ଭାଷାର ସେ ପାରଙ୍ଗମ ଥିଲେ, ଏହାର ବଳିଷ୍ଠ ପ୍ରମାଣ ହେଉଛି ତାଙ୍କର ସ୍ୱରଚିତ କବିତା ଏବଂ ଅନୁବାଦ ପୁସ୍ତକ । ଅଗାଧ ପାଣ୍ଡିତ୍ୱ ଥିଲା ତାଙ୍କର । ସେ ରାମାୟଣ ହେଉ ମହାଭାରତ ହେଉ ବା ଫରାସୀ ବିପ୍ଳବ ହେଉ ବା ରୁଷ୍ ବିପ୍ଳବ ହେଉ ଏସବୁ କାହାଣୀକୁ ସେ ଛୋଟପିଲାମାନଙ୍କୁ ଗପ ଆକାରରେ କହୁଥିଲେ । ଏତେ ଜ୍ଞାନ ଥିଲେ ବି ତାଙ୍କର ମନରେ ଟିକିଏ ବି ଗର୍ବ ନ ଥିଲା । ସେ ଥିଲେ ଆଜନ୍ମ ବିପ୍ଳବିଣୀ । କେବଳ ଯେ ଗାନ୍ଧୀଙ୍କ କଳ୍ପିତ ରାମରାଜ୍ୟର ପ୍ରତିଷ୍ଠା ପାଇଁ ଅନେକ ଜନଜାଗରଣ ଆନ୍ଦୋଳନ କରି ପୁରୁଣା ରାଜନୀତି ଭିତରେ ଥିବା ଅବାଞ୍ଛିତ ବିଶ୍ୱାସର ଚଳଣିକୁ ବଦଳାଇ ଥିଲେ ବରଂ ବାତ୍ୟା, ବନ୍ୟା, ଦୁର୍ଭିକ୍ଷ ଆଦି ମହାମାରୀ କବଳରୁ ଲୋକଙ୍କୁ ଉଦ୍ଧାର କରିବା ପାଇଁ ସେ ଚିରଦିନ ପାଇଁ ଗୋଟିଏ ସିପାହି ଭଳି କାର୍ଯ୍ୟ କରିଚାଲିଥିଲେ ।

ଓଡ଼ିଶାରେ ଗାନ୍ଧିଜୀ ଚଳାଇଥିବା ହରିଜନ ଆନ୍ଦୋଳନର ସେ ସହଯୋଗୀ ଥିଲେ । ଗାନ୍ଧିଜୀଙ୍କ ସେବାଗ୍ରାମ ଆଶ୍ରମରେ ମା' ଅନ୍ନପୂର୍ଣ୍ଣା ଅନେକ ଦିନ ଅବସ୍ଥାନ କରି ଗାନ୍ଧୀଙ୍କ ମୌଳିକ ଶିକ୍ଷାରେ ସେ ଦେଶରେ

ସର୍ବପ୍ରଥମ ଯୋଗଦାନ କରି ଶିକ୍ଷାଗ୍ରହଣ କରିଥିଲେ । ମାଆ ରମାଦେବୀ ଓ ଖୁଡ଼ୀ ମାଳତୀ ଦେବୀଙ୍କ ସହ ମିଶି କୁଜଙ୍ଗ ଅଞ୍ଚଳରେ ଲୁଣମରା କାମ କରିଥିଲେ । ୧୯୩୪ ମସିହାରୁ ମା' ଅନ୍ନପୂର୍ଣ୍ଣା କଟକ ଜିଲ୍ଲାର ବରୀଠାରେ ହରିଜନ ସେବା, ନିଶା ନିବାରଣ, ମୌଳିକ ଶିକ୍ଷା, ଖଦୀ, ଗ୍ରାମ ସଫେଇ ଭଳି ୧୮ ପ୍ରକାରର ରଚନାତ୍ମକ କାର୍ଯ୍ୟ କରୁଥିଲେ । ୧୯୩୮ ମସିହାରେ ପୁରୀ ଜିଲ୍ଲା ଡେଲାଙ୍ଗ ନିକଟସ୍ଥ ବେରବୋଇ ଗାନ୍ଧୀ ସମ୍ମିଳନୀରେ ୭ ଦିନ କାର୍ଯ୍ୟ କରିଥିଲେ । କେବଳ ସେତିକି ନୁହେଁ ୧୯୪୨ ମସିହାର 'ଭାରତଛାଡ଼ ଆନ୍ଦୋଳନ'ରେ ସେ ଅଗ୍ରଣୀ ଭୂମିକା ନେଇ ବରୀ, କଳାମାଟିଆ, ଇଂରେଜ ବିରୋଧୀ ସଭାର ନେତୃତ୍ୱ ନେଉଥିବାବେଳେ ପୋଲିସ୍‌ର ଆଖିବୁଜା ଗୁଳିରେ ଯେତେବେଳେ ସାଉଁଟି, ସାନନ୍ଦ, ହାଡ଼ିବନ୍ଧୁ ମାୟାଧର ପ୍ରଭୃତି ୪ ଜଣ ଘଟଣାସ୍ଥଳରେ ଶହୀଦ ହୋଇଗଲେ ସେତେବେଳେ ମା' ନିଜେ ଆହତମାନଙ୍କର ସେବା କରିବା ସହ ନିଜେ ଗୁଳି ଖାଇବା ପାଇଁ ନିଜ ଛାତି ପତାଇ ଦେଇଥିଲେ । ୧୯୪୨ରୁ ୧୯୪୪ ମସିହା ଯାଏଁ ଦୁଇଥର ସେ କଟକ ଓ ଯାଜପୁର ଜେଲରେ ରହିଲେ । ପୁଣି ଗାନ୍ଧିଜୀଙ୍କ ଡାକରାରେ ପୁରୀ ଓ କଟକରେ ଖଦୀ କାମ କରୁଥିଲେ ଏବଂ ଅସ୍ପୃଶ୍ୟତା ନିବାରଣ କାର୍ଯ୍ୟ ଜାରି ରଖିଥିଲେ । କସ୍ତୁରବାଙ୍କ ଦେହାନ୍ତ ପରେ ଗାନ୍ଧିଜୀ ମହିଳା ଓ ଶିଶୁ କଲ୍ୟାଣ ପାଇଁ ଯେଉଁ କସ୍ତୁରବା ଟ୍ରଷ୍ଟ ଆରମ୍ଭ କଲେ, ଓଡ଼ିଶାରେ ମା' ରମାଦେବୀଙ୍କ ସହ ମା' ଅନ୍ନପୂର୍ଣ୍ଣା ଏହାର ନେତୃତ୍ୱ ନେଇଥିଲେ ଏବଂ ପରେ ଅନ୍ନପୂର୍ଣ୍ଣା ଏହାର ଟ୍ରଷ୍ଟି ହୋଇଥିଲେ । କେବଳ ସେତିକି ନୁହେଁ ଭୂଦାନ–ଗ୍ରାମଦାନ–ସନ୍ଥ ବିନୋବାଙ୍କ ନେତୃତ୍ୱରେ ଦେଶବ୍ୟାପୀ ଯେଉଁ ଭୂଦାନ ଗ୍ରାମଦାନ ଆନ୍ଦୋଳନ ଆରମ୍ଭ ହେଲା ସେଥିରେ ମା' ଅନ୍ନପୂର୍ଣ୍ଣା ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ଏବଂ ସାରା ରାଜ୍ୟରେ ଘର ଘର ବୁଲି ହଜାର ହଜାର ଏକର ଜମି ସେ ଦାନରେ ସଂଗ୍ରହ କରି ଭୂମିହୀନଙ୍କ ମଧରେ ବଣ୍ଟନ କରିଥିଲେ । ନିଜର ଅଗାଧ ସାଧନା ଏବଂ ଦୃଢ଼ ମନୋବଳ ଯୋଗୁଁ ସନ୍ଥ ବିନୋବା ଯେତେବେଳେ ଆଧାତ୍ମିକତାକୁ ଏକ ନୂଆ ମୋଡ଼ ଦେଇ ବ୍ରହ୍ମବିଦ୍ୟାରେ ନାରୀମାନଙ୍କର ଅଧିକାର ରହିଥିବା ଦର୍ଶାଇ ପୌନାଠାରେ ବ୍ରହ୍ମବିଦ୍ୟା ମନ୍ଦିର ଆରମ୍ଭ କରି ବ୍ରହ୍ମଚାରିଣୀମାନଙ୍କୁ ବ୍ରହ୍ମବିଦ୍ୟା ଉପାସନା ପାଇଁ ବ୍ୟବସ୍ଥା କଲେ । ସେଥିରେ ଏକମାତ୍ର ମା' ଅନ୍ନପୂର୍ଣ୍ଣା ବିବାହିତା ହୋଇ ସୁଦ୍ଧା ସେଠାରେ ଅବସ୍ଥାନ ପାଇଁ ଅନୁମତି ପ୍ରାପ୍ତ କରିଥିଲେ । ୧୯୫୦ ମସିହାରେ ଅନୁଗୁଳ ବାଜିରାଉତ ଛାତ୍ରବାସ ପରିସରରେ ଯେଉଁ ଅଖିଳ ଭାରତ ସର୍ବୋଦୟ ସମ୍ମିଳନୀ ହୋଇଥିଲା ଗୋପବନ୍ଧୁ ଥିଲେ ଅଖିଳ ଭାରତ ସର୍ବ ସେବା ସଂଘର ଚେୟାରମ୍ୟାନ୍ । ଏହି ସମ୍ମିଳନୀ କିପରି ସୁନ୍ଦରଭାବେ ପରିଚାଳିତ ହେବ ଏବଂ ବିଶେଷ କରି ରନ୍ଧନ କାର୍ଯ୍ୟ ଏବଂ ପରିବେଷଣ କାମ ଅନ୍ନପୂର୍ଣ୍ଣା ଦେବୀ ଅତି ଶୃଙ୍ଖଳିତ ଭାବେ ଚଳାଉ ଥିଲେ । ସ୍ୱାଧୀନତା ସଂଗ୍ରାମରେ ସଂସ୍ଥା ପରିଚାଳନାରେ ସେବା କାମରେ ଲୋକଙ୍କୁ ଗାନ୍ଧୀ କାମରେ ଅନୁପ୍ରାଣିତ କରିବାର ଗୋଟିଏ ଜୀବନ୍ତ ଜାଗ୍ରତ ନମୁନା ଥିଲେ ଅନ୍ନପୂର୍ଣ୍ଣା । ସତରେ ଗାନ୍ଧୀ ଦେହତ୍ୟାଗ କରିସାରିବା ପରେ ଦେଶ ଗଠନର ଅହିଂସା ସଂଗ୍ରାମକୁ ଦେହ, ମନ, ପ୍ରାଣ ଦେଇ ଚଳାଇବାରେ ଜଣେ ନିରଳସ ଅନନ୍ୟା ସିପାହିର ଜ୍ୱଳନ୍ତ ନମୁନା ଥିଲେ ମା' ଅନ୍ନପୂର୍ଣ୍ଣା । ତାଙ୍କର ଦେହ, ପ୍ରାଣ, ମନ ସବୁ ଥିଲା ସେବା ଓ ସଂଗ୍ରାମରେ ଉତ୍ସର୍ଗୀକୃତ । ଦେହ, ମନ, କାୟା, ବାକ୍ୟ ସବୁଥିରେ ଗାନ୍ଧୀବାଦ ବାରି ହୋଇ ପଡୁଥିଲା ମା' ଅନ୍ନପୂର୍ଣ୍ଣା ଦେବୀଙ୍କର । ତାଙ୍କ ଜୀବନ ଗୋଟିଏ ଶତାବ୍ଦୀର କର୍ମବହୁଳ, ଘଟଣା ବହୁଳ ପୃଷ୍ଠାଟିଏ । ଅତି ପିଲାଟି ଦିନରୁ ଅନେକ ବିପ୍ଳବ, ଆନ୍ଦୋଳନ, ପାରିବାରିକ ଓ ସାମାଜିକ ଜୀବନର ଅସଂଖ୍ୟ ସୁଖଦୁଃଖର ଘଟଣା ପ୍ରାକୃତିକ ବିପର୍ଯ୍ୟୟର ଆନ୍ଦୋଳନ ଦୁଃଖଦ ପରିସ୍ଥିତିରେ ସମ୍ମୁଖୀନ ହୋଇ ସଂଗ୍ରାମରେ ଆଗୁଆ ସିପାହି ପରି ସଂଗ୍ରାମ ପ୍ରକୃତରେ ଅଭିନନ୍ଦନୀୟ । କେବଳ ଯେ ବ୍ରିଟିଶ୍ ସରକାର ଆଗରେ ବନ୍ଧୁକ ମୁହଁରେ ଠିଆ ହୋଇ ସେ ଯେ ଗାନ୍ଧିବାଦୀ ଓ ଅହିଂସା ସଂଗ୍ରାମର ସିପାହି ବୋଲି କେବଳ କହିଲେ ଠିକ୍ ହେବ ନାହିଁ, ଜୀବନର ପ୍ରତି କ୍ଷେତ୍ରରେ ଜାତି, ଧର୍ମ, ଭାଷାର ମୁହାଁମୁହିଁ ସଂଘର୍ଷ ବେଳେ ଛାତ୍ର ଆନ୍ଦୋଳନ ହେଉ ବା ନିଶା ନିବାରଣର ଆନ୍ଦୋଳନ ହେଉ ଘରେ ଓ ବାହାରେ ସମସ୍ତଙ୍କର ଆଗରେ ପ୍ରକୃତ ସତ

କହିବାର ସତ୍‌ସାହସ ଥିଲା ଏହି ଅନନ୍ୟା ପ୍ରତିଭାଙ୍କ ପାଖରେ । ସହିଷ୍ଣୁତାର ମୂର୍ତ୍ତିମନ୍ତ ଅବତାର ଥିଲେ ସେ । କୌଣସି ସଂସ୍ଥାରେ ଲିଖିତ ନାମ ନଥାଇ ଅଧିକ କାମ ସମ୍ପାଦନ କରୁଥିଲେ । ୨୦୦୩ ମସିହାରେ ଭାରତର ରାଷ୍ଟ୍ରପତି ତାଙ୍କୁ ଦିଲ୍ଲୀରେ ସ୍ୱାଧୀନତା ସଂଗ୍ରାମୀର ଗୌରବ ପ୍ରଦାନ କରିଥିଲେ । ତାଙ୍କର ତ୍ୟାଗ, ତପସ୍ୟା, ସଂଗ୍ରାମର ଫଳ ପ୍ରକୃତରେ ଅବର୍ଣ୍ଣନୀୟ । ଲକ୍ଷ ଲକ୍ଷ ନରନାରୀ ଯୁବକ ଯୁବତୀ ଯଦି ତାଙ୍କ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇ ତାଙ୍କରି ଆଦର୍ଶରେ ଗଢ଼ା ହୋଇ ଦେଶର ମାନ ବଢ଼ାଇବେ ତାହା ହିଁ ହେବ ମା'ଙ୍କ ପ୍ରତି ଆମର ପ୍ରକୃତ ଭଲ ପାଇବା । ସାହିତ୍ୟ ଏକାଡେମୀ ସହ ଅନ୍ୟ କେତେକ ବିଶିଷ୍ଟ ସ୍ଥାନରୁ ତାଙ୍କ ଲେଖା ଓ ସମାଜସେବା ପାଇଁ ତାଙ୍କୁ ଅନେକ ପୁରସ୍କାର ମିଳିଛି ।

ଡେଲାଙ୍ଗର ବିରାଟ ଗାନ୍ଧି ସେବା ସଂଘ ସମ୍ମିଳନୀ, ଗାନ୍ଧିଜୀଙ୍କ ପ୍ରସିଦ୍ଧ ହରିଜନ ପଦଯାତ୍ରା, ଲୁଣମରା ଆନ୍ଦୋଳନ, ଅନୁଗୁଳ ଓ ପୁରୀର ବିରାଟ ସର୍ବୋଦୟ ସମ୍ମିଳନୀ, ବିନୋବାଭାବେଙ୍କର ପ୍ରସିଦ୍ଧ ଭୂଦାନ ପଦଯାତ୍ରା ଆଦିର ଆଜୀବନ କର୍ମୀ ଥିଲେ ମା' ଅନ୍ନପୂର୍ଣ୍ଣା । ପିଲାଦିନଠାରୁ ଆରମ୍ଭ କରି ଅନେକ ସ୍ୱାଧୀନତା ସଂଗ୍ରାମୀଙ୍କୁ ଆଖି ସାମନାରେ ଗୁଳିରେ ଟଳି ପଡ଼ିବା ଦେଖି ନିଜର ଅନେକ ଆତ୍ମୀୟ ସ୍ୱଜନଙ୍କୁ ହରାଇଥିଲେ ମଧ୍ୟ ଅନେକ ଦୁଃଖଦ, ପରିସ୍ଥିତି, ଆଘାତ, ଓଡ଼ିଶାର ବନ୍ୟା, ବାତ୍ୟା, ମହାମାରୀ, ଦୁର୍ଭିକ୍ଷ ବେଳର ନିଦାରୁଣ ପରିସ୍ଥିତି ସର୍ବୋପରି ମହାତ୍ମା ଗାନ୍ଧୀଙ୍କ ଦେହାବସାନ ଆଦି ଦୁଃଖଦ ଘଟଣା ତାଙ୍କୁ ଏତେ ମଜଭୁତ କରିଦେଇଛି ଯେ କୌଣସି ସାମାନ୍ୟ ଘଟଣାରେ ସେ ଆଉ ବିଚଳିତ ହୋଇପଡ଼ନ୍ତି ନାହିଁ । ବିନୋବାଜୀ ତାଙ୍କୁ 'ଗାନ୍ଧୀ କନ୍ୟା' ବୋଲି ସ୍ୱୀକାର କରିଛନ୍ତି । ନିଜ ସୁଖ, ସ୍ୱାଚ୍ଛନ୍ଦ୍ୟ ପ୍ରତି ଆଦୌ ଦୃଷ୍ଟି ନ ଦେଇ ଅତି ଦୟନୀୟ ରୋଗୀକୁ ସେ ଆରୋଗ୍ୟ କରି ତା' ମୁହଁରେ ହସ ଭରି ଦେଉଥିଲେ । ତାଙ୍କର ଆଖିର ଚାହାଣିରେ ଯେଉଁଭଳି ଚୁମ୍ବକର ଆକର୍ଷଣ ଥିଲା । ହାତର ସ୍ପର୍ଶ ମଧ୍ୟ କାଉଁରୀ କାଠିର ସ୍ପର୍ଶ ଭଳି ଶକ୍ତ ଥିଲା । ଉଚ୍ଚ ଚିନ୍ତାଧାରା ଓ ସରଳ ଜୀବନଶୈଳୀକୁ ନେଇ ପରକୁ ଆପଣାର କରିବାର କଳାରେ ଧୁରନ୍ଧର ଥିଲେ ମା' ଅନ୍ନପୂର୍ଣ୍ଣା । ରାମଚନ୍ଦ୍ରପୁରରେ ଥିଲାବେଳେ ସେ ଏବଂ ତାଙ୍କର ପରିବାର କସ୍ତୁରବା ଆଶ୍ରମରେ ସମସ୍ତଙ୍କ ପରି ସମାନ ଖାଦ୍ୟ ଖାଇ ଅତି ସରଳ ଜୀବନଯାପନ କରୁଥିଲେ । ସମାଜଠାରୁ ଏବଂ ଲୋକମାନଙ୍କଠାରୁ କମ୍ ନେଇ ତାଙ୍କୁ ବେଶି ଦେବାର ନିୟମକୁ ସେ ଅକ୍ଷରେ ଅକ୍ଷରେ ପାଳୁଥିଲେ । ଗାନ୍ଧୀଙ୍କ ଶିଷ୍ୟା ହୋଇ ତାଙ୍କ ନୀତି ଆଦର୍ଶକୁ ମର୍ମେ ମର୍ମେ ଅନୁଭବ କରି ସେହି ତ୍ୟାଗ ତପସ୍ୟାରେ ଦୀକ୍ଷିତ ହୋଇ ତାଙ୍କୁ ଅକ୍ଷରେ ଅକ୍ଷରେ ନିଜ କର୍ମମୟ ଜୀବନରେ ପ୍ରମାଣିତ କରିଛନ୍ତି । ସେ ନାମ, ଯଶ, ଅର୍ଥ, ପ୍ରତିଷ୍ଠା, ପ୍ରତିପତ୍ତି ପାଇଁ କେବେବି ବ୍ୟାକୁଳ ହୋଇ ବାଟ ଢୁଣ୍ଢ଼ିନାହାନ୍ତି । ସେ ହିଁ ଥିଲେ ତ୍ୟାଗ, ତପସ୍ୟା, ସେବା ଓ ମମତାର ଗୋଟିଏ ନିର୍ମଳ ଭାବମୂର୍ତ୍ତି । ତାଙ୍କର ସାହିତ୍ୟ କୃତିଗୁଡ଼ିକ ହେଲା ଦସ୍ୟୁ ହୃଦୟରେ ଦେବତା, କ୍ରାନ୍ତିକାରୀ ବିନୋବା, ଗ୍ରାମଜନରୁ ରାଜ୍ୟଜନ, ସବୁ ଲୁଣ ଲୋକଙ୍କର, ଦିବ୍ୟ ଦୀପାବଳି, ଅମୃତ ଅନୁଭବ ଇତ୍ୟାଦି ଇତ୍ୟାଦି ।

୧୯୬୬ର କଳାହାଣ୍ଡି ଦୁର୍ଭିକ୍ଷ ହେଉ ବା ୧୯୬୯ର ପ୍ରଳୟଙ୍କରୀ ବାତ୍ୟା, ୧୯୯୯ ମହାବାତ୍ୟା ହେଉ ମା' ନିଜେ ସର୍ବୋଦୟ ରିଲିଫ୍ କମିଟି ମାଧ୍ୟମରେ କାର୍ଯ୍ୟ କରୁଥିଲେ । ମା' ନିଜେ ବନାରସରେ ୧୯୫୯–୬୦ ଯାଏ ଅଖିଳ ଭାରତୀୟ ମହିଳା ଶାନ୍ତିସେନା ବିଦ୍ୟାଳୟର ପରିଚାଳିକା ଥିଲେ । ଯେତେବେଳେ ୧୯୬୪ ମସିହାରେ ରାଉରକେଲାରେ ସାମ୍ପ୍ରଦାୟିକ ଦଙ୍ଗା ହୋଇଥିଲା ସେହି ଦଙ୍ଗାକୁ ମା' ନିଜେ ପ୍ରଶମନ କଲେ । ୧୯୬୪ର ଐତିହାସିକ ଡାକ୍ତରୀ ଛାତ୍ର ଆନ୍ଦୋଳନ ହେଉ ବା ୧୯୭୧ର ବାଙ୍ଗଲାଦେଶ ମୁକ୍ତି ଆନ୍ଦୋଳନ ହେଉ ମା' ନିଜେ ସେଥିରେ ସାମିଲ ହୋଇ କାର୍ଯ୍ୟ କରିଥିଲେ । ଚମ୍ବଲ ଦସ୍ୟୁମାନଙ୍କୁ ମଧ୍ୟ ମା' ଆତ୍ମସମର୍ପଣ ପାଇଁ ପ୍ରବର୍ତ୍ତାଇ ଥିଲେ ଯାହାଦ୍ୱାରା ସେମାନେ ଜୟପ୍ରକାଶ ନାରାୟଣଙ୍କ ନିକଟରେ ଅତି ସହଜରେ ଆତ୍ମସମର୍ପଣ କରିଥିଲେ । ୧୯୫୦ ମସିହାରେ ଅନୁଗୁଳ, ୧୯୫୫ରେ ପୁରୀ ଓ ୨୦୦୩ ମସିହାରେ କଟକରେ ଅନୁଷ୍ଠିତ ଅଖିଳ ଭାରତୀୟ ସର୍ବୋଦୟ ସମାଜ ସମ୍ମିଳନୀର ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ବ୍ରିଟିଶ୍

ସରକାର ଯେତେବେଳେ କମ୍ପାନିମାନଙ୍କ ହାତରେ ଦେଶର ଲୁଣଚାଷକୁ ଟେକି ଦେଇଥିଲେ ଏହାକୁ ବିରୋଧ କରି ରାଷ୍ଟ୍ର ବ୍ୟାପୀ ଯେଉଁ କମ୍ପାନି ଲୁଣ ବିରୋଧୀ ଆନ୍ଦୋଳନ ହୋଇଥିଲା, ସେଥିରେ ମା' ଅନ୍ନପୂର୍ଣ୍ଣା ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । ତତ୍କାଳୀନ ସରକାରଙ୍କର ଘରୋଇକରଣ, ଜଗତିକରଣ, ଉଦାରିକରଣ ନୀତି ବିରୁଦ୍ଧରେ ଯେଉଁ ଆନ୍ଦୋଳନ ହୋଇଥିଲା ସେଥିରେ ସେହି ଆନ୍ଦୋଳନରେ ମା' ଅନ୍ନପୂର୍ଣ୍ଣା ପ୍ରମୁଖ ଭୂମିକା ଗ୍ରହଣ କରି ଲୋକମାନଙ୍କୁ ସଚେତନ କରିଥିଲେ । ଗାନ୍ଧିଜୀଙ୍କ ହିନ୍ଦ୍ ସ୍ୱରାଜ ପ୍ରକଳ୍ପକୁ ସଫଳ ରୂପ ଦେବା ପାଇଁ ମା' ଅନ୍ନପୂର୍ଣ୍ଣା ୨୦୧୦ ମସିହାରେ ହିନ୍ଦ୍ ସ୍ୱରାଜ ଅଭିଯାନ ଟ୍ରଷ୍ଟ ଗଠନ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଓ କେନ୍ଦ୍ରୀୟ ବିଶ୍ୱବିଦ୍ୟାଳୟରୁ ସମ୍ମାନ ସୂଚକ ଡିଲିଟ୍ ଡିଗ୍ରୀ ସହ 'ଅମୃତ ଅନୁଭବ' ପାଇଁ ସାରଳା ସମ୍ମାନ, ପ୍ରାଣନାଥ କଲେଜରୁ ପ୍ରାଣନାଥ ସମ୍ମାନ, ରାଷ୍ଟ୍ରପତିଙ୍କଠାରୁ ସ୍ୱାଧୀନତା ସଂଗ୍ରାମୀ ସମ୍ମାନ, ଆନ୍ତର୍ଜାତୀୟ ରୋଟାରୀ ସମ୍ମାନ, ଦିୱାଲୀ ବେନ୍ ଚାରିଟେବଲ ଟ୍ରଷ୍ଟ ଦ୍ୱାରା ଆଜୀବନ ସେବିକା ସମ୍ମାନ ଏବଂ ଉତ୍କଳରତ୍ନ ସମ୍ମାନ, ରାଧାନାଥ ରଥ ସମ୍ମାନ, ରେଭେନ୍ସା କଲେଜରୁ ସମ୍ମାନ, ଏହିଭଳି ଅନେକ ଅନୁଷ୍ଠାନରୁ ମା' ଅନ୍ନପୂର୍ଣ୍ଣା ସମ୍ମାନିତ ହୋଇ ଦେଶ ଓ ଜାତିର ଗର୍ବ ହୋଇପାରିଛନ୍ତି ।

ତାଙ୍କର ଲିଖିତ ଏବଂ ଅନୁବାଦିତ ପୁସ୍ତକଗୁଡ଼ିକ ହେଲା ଭାଗବତ ଧର୍ମସାର, ନାରୀଶକ୍ତି, କାରାଗାର କାହାଣୀ ରାଷ୍ଟ୍ରୀୟ ଯୋଜନାର ମୂଳକଥା, ଶାନ୍ତିସେନା, ସର୍ବୋଦୟ ସିଦ୍ଧାନ୍ତ, ଦସ୍ୟୁ ହୃଦୟରେ ଦେବତା, ସବୁ ଲୁଣ ଲୋକଙ୍କର, ସରଳା ଦେବୀ, ମାଳତୀ ଚୌଧୁରୀ, ସ୍ୱାଧୀନତା ସଂଗ୍ରାମରେ ଉତ୍କଳୀୟ ନାରୀ, ଲୁଣର ଗୁଣ, ସ୍ତ୍ରୀ ପୁରୁଷ ମର୍ଯ୍ୟାଦା, ବୁନିଆଦି ଶିକ୍ଷା, ଗାନ୍ଧି ଚରିତ, ଦକ୍ଷିଣ ଆଫ୍ରିକା ସତ୍ୟାଗ୍ରହ, ହିନ୍ଦ୍ ସ୍ୱରାଜ, ଦିବ୍ୟ ଦୀପାବଳି, ଅନାଶକ୍ତି ଯୋଗ ।

ମା' ଅନ୍ନପୂର୍ଣ୍ଣା ୩୧ ଡିସେମ୍ବର ୨୦୧୨ ମସିହାରେ ଦେହତ୍ୟାଗ କଲେ, ମାତ୍ର ତାଙ୍କର ସଂକଳ୍ପ, ନିଷ୍ଠା, ତ୍ୟାଗ, ତିତିକ୍ଷା, ତପସ୍ୟା ଓ ସଂଗ୍ରାମରୁ ପ୍ରେରଣା ପାଇ ଯଦି ଆଜିର ଯୁବପିଢ଼ି ସମାଜର ତଥା ଦେଶର ବିକାଶ ପାଇଁ କାର୍ଯ୍ୟ କରିବେ, ତେବେ ତାହା ହିଁ ହେବ ମା' ଅନ୍ନପୂର୍ଣ୍ଣାଙ୍କ ପ୍ରତି ଆମର ପ୍ରକୃତ ଶ୍ରଦ୍ଧାଞ୍ଜଳି ।

ରଘୁନାଥଜୀଉ ମହାବିଦ୍ୟାଳୟ
କଟକ



# ନିଃସ୍ୱାର୍ଥ ସାଧକ ନୀଳମଣି ବିଦ୍ୟାରତ୍ନ

ଡକ୍ଟର ପ୍ରଶାନ୍ତ କୁମାର ପ୍ରହରାଜ

ଇତିହାସର ଯେଉଁ ସନ୍ଧିକ୍ଷଣରେ ଓଡ଼ିଆ ଜାତି ଆପଣାର ଭୌଗୋଳିକ ତଥା ବୌଦ୍ଧିକ ପରିଚୟ ହରାଇବାର ଆଶଙ୍କାରେ ଆତଙ୍କିତ ହୋଇ ଉଠୁଥିଲା, ଠିକ୍ ସେତିକିବେଳେ ଏଇ ମାଟିର କତିପୟ ସ୍ୱାଭିମାନୀ ପଣ୍ଡିତ, ରାଜନୀତିଜ୍ଞ, ସାହିତ୍ୟିକ ତଥା କର୍ମଯୋଗୀ ଆପଣାର ସର୍ବସ୍ୱ ବିନିମୟରେ ସମସ୍ତ ପ୍ରତିବନ୍ଧକ ଅତିକ୍ରମ କରି ଜାତୀୟ ସ୍ୱାଭିମାନର ପୁନଃ ପ୍ରତିଷ୍ଠା ନିମନ୍ତେ ଉଦ୍‌ବିଗ୍ନ ହୋଇ ଉଠିଥିଲେ । ତତ୍‌କାଳୀନ ଇଂରେଜ ଶାସନ ଅଧୀନରେ ଦକ୍ଷିଣରେ ତେଲଙ୍ଗ, ଉତ୍ତରରେ ବଙ୍ଗଳା ଏବଂ ପଶ୍ଚିମରେ ହିନ୍ଦୀ ଭାଷାଭାଷୀଙ୍କ ବୌଦ୍ଧିକ ଆକ୍ରମଣରେ ଶତ କ୍ଷତାକ୍ତ ଏଇ ଜାତି ନିଜସ୍ୱ ସତ୍ତା ହରାଇ ମ୍ରିୟମାଣ ହୋଇପଡିଥିଲା । ପଡୋଶୀ ଭାଷାର ଆକ୍ରମଣ ତଥା ନବ୍ୟ ଆଞ୍ଚଳିକ ଭାବନାର ଅଭ୍ୟୁଦୟ ଓଡ଼ିଆ ଜାତିର ସାମୁଦାୟିକ ଗୌରବୋଜ୍ଜ୍ୱଳ ପରିଚୟକୁ ଶତଧା ବିଦୀର୍ଣ୍ଣ କରୁଥିଲା । ଜାତୀୟ ଦିଗ୍‌ବଳୟର ଏଇ ଅନ୍ଧକାରାଚ୍ଛନ୍ନ ମୁହୂର୍ତ୍ତରେ ଆତ୍ମବିଶ୍ୱାସର ସଂକଳ୍ପ ନେଇ ଚେତନାର ସୂର୍ଯ୍ୟୋଦୟକୁ ଆବାହନ କରିବାରେ ଯେଉଁ କେତେଜଣ ମହାମନୀଷୀ ଚେଷ୍ଟିତ ଥିଲେ ସେମାନଙ୍କ ମଧ୍ୟରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ନାମ ଅଗ୍ରପୂଜ୍ୟ ଅଟେ ।

୧୮୬୭ ମସିହା ଡିସେମ୍ବର ମାସ ୧୪ ତାରିଖରେ ବାଙ୍କି ଗଡଜାତର ବ୍ରଜବିହାରୀପୁର ନାମକ ଏକ ବ୍ରାହ୍ମଣ ଶାସନର ଅଧିବାସୀ ଗୌରୀ ଚରଣ ମିଶ୍ର ଏବଂ ରୋହିଣୀ ଦେବୀଙ୍କ ଔରସରୁ ନୀଳମଣିଙ୍କ ଜନ୍ମ । ତୁଳସୀ



ଦୁଇପତ୍ରରୁ ବାସିଲା ଭଳି ନୀଳମଣିଙ୍କ ବାଲ୍ୟକାଳରୁ ହିଁ ତାଙ୍କର ଅସାଧାରଣ ଧୀମତ୍ତାର ପରିଚୟ ମିଳିଥିଲା । ଗ୍ରାମ ପାଠଶାଳା ଶିକ୍ଷା ଶେଷକରି ସେ ବୈଦେଶ୍ୱର ପ୍ରାଥମିକ ବିଦ୍ୟାଳୟରେ ନାମ ଲେଖାଇଲେ ଏବଂ ସେଠାରେ ସେ ନିଜର ପ୍ରତିଭା ଓ ଅଧ୍ୟବସାୟ ବଳରେ ଖୁବ୍‌ଶୀଘ୍ର ସମସ୍ତଙ୍କର ପ୍ରିୟପାତ୍ର ହୋଇଥିଲେ । ଅଧ୍ୟୟନ କାଳରେ ଅନ୍ୟ ଛାତ୍ରଙ୍କ ତୁଳନାରେ ସାହିତ୍ୟ କ୍ଷେତ୍ରରେ ତାଙ୍କର ଅଧିକ ଦକ୍ଷତା ଥିଲା । ବୈଦେଶ୍ୱର ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ମାସିକ ତିନିଟଙ୍କା ଲେଖାଏଁ ଉଚ୍ଚ ପ୍ରାଇମେରୀ ବୃତ୍ତି ପାଇ ସେ ନିକଟସ୍ଥ ଚର୍ଚ୍ଚିକା

ଗ୍ରାମର ମଧ୍ୟଇଂରାଜୀ ସ୍କୁଲରେ ଅଧ୍ୟୟନ କରନ୍ତି । ତାଙ୍କର ବ୍ୟକ୍ତିତ୍ୱକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ସେ ଯେପରି ଅଧ୍ୟବସାୟୀ ତଥା ଆତ୍ମନିର୍ଭରଶୀଳ ଥିଲେ ସେହିପରି ପ୍ରଚଣ୍ଡ ସ୍ୱାଭିମାନୀ ଥିଲେ । ସ୍ୱଳ୍ପ ବୟସ ହେଲେ ହେଁ ସେ ନିଜେ ପରିଶ୍ରମ କରି ଅର୍ଥ ଉପାର୍ଜନ କରିବାକୁ ମନ ବଳାଇଲେ । ସେହି ସମୟରେ ସ୍ଥାନୀୟ ସବ୍ ରେଜିଷ୍ଟ୍ରାର ଅଫିସ୍‌ର ଦଲିଲ୍ ଲେଖକଙ୍କ ସହିତ ତାଙ୍କର ପରିଚୟ ହେଲା । ତାଙ୍କର ସହାୟତାରେ ସେ ସମୟେ ସମୟେ ଦଲିଲ ଦରଖାସ୍ତକୁ ଉତାରି କିଛି ପାରିଶ୍ରମିକ ପାଇଲେ । ସେହି ଅର୍ଥରେ ସେ ନିଜର ପାଠପଢ଼ା ଖର୍ଚ୍ଚ ତୁଲାଇବା ସଙ୍ଗେ ସଙ୍ଗେ ନିଜର ଭବିଷ୍ୟତ ଶିକ୍ଷା ପାଇଁ ନିକଟସ୍ଥ ସେଭିଙ୍ଗ୍‌ସ ବ୍ୟାଙ୍କ୍‌ରେ କିଛି ଅର୍ଥ ସଞ୍ଚୟ କଲେ । ୧୮୮୨ ମସିହାରେ ନୀଳମଣି ଚର୍ଚ୍ଚିକା ମଧ୍ୟଇଂରାଜୀ ବିଦ୍ୟାଳୟରୁ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ଏହାପରେ ସେ କଟକର ଟ୍ରେନିଂ ସ୍କୁଲରେ ପଢ଼ିବା ପାଇଁ କଟକ ଆସିଲେ । ଅର୍ଥାଭାବ ସତ୍ତ୍ୱେ ସେ ଉଚ୍ଚଶିକ୍ଷା ଲାଭ କରିବା ପାଇଁ ମନ ବଳାଇଲେ । କଟକ ଆସି ସେଠାରେ ସେ ପଣ୍ଡିତ ଗୋବିନ୍ଦ ରଥଙ୍କ ଗୃହରେ ଆଶ୍ରୟ ନେଲେ । ତାଙ୍କର ଆଶା ଥିଲା ଟ୍ରେନିଂ ସ୍କୁଲରୁ ବୃତ୍ତି ପାଇ ସେ ପାଠ୍ୟକ୍ରମ ଶେଷ କରିବେ, କିନ୍ତୁ ସେ ଜାଣିବାକୁ ପାଇଲେ ଯେ ତାଙ୍କୁ ଟ୍ରେନିଂ ସ୍କୁଲରେ ବୃତ୍ତି ମିଳିବା ବିଳମ୍ବ ହେବ । ତେଣୁ ତାଙ୍କର ପାଠପଢ଼ା ହୋଇପାରିଲା ନାହିଁ । ହତାଶା ଭାବ ନେଇ ସେ ନିଜ ଗ୍ରାମକୁ ଫେରି ଆସିବାକୁ ମନସ୍ଥ କଲେ । କଟକରେ ଅବସ୍ଥାନ କାଳରେ ତାଙ୍କର ସାକ୍ଷାତ୍ ହେଲା କବିବର ରାଧାନାଥ ରାୟଙ୍କ ସହିତ । ନୀଳମଣିଙ୍କ ପ୍ରତିଭା ତଥା ତାଙ୍କର ସୁନ୍ଦର ହସ୍ତାକ୍ଷରରେ ମୁଗ୍ଧ ହୋଇ କବିବର ତାଙ୍କୁ ଆର୍ଥିକ ସାହାଯ୍ୟ ପ୍ରଦାନ କଲେ । କବିବରଙ୍କ ଅନୁଗ୍ରହରୁ ନୀଳମଣି ବଡମ୍ବା ଗଡଜାତର ଗୋପୀନାଥପୁର ଗ୍ରାମରେ ଥିବା ଉଚ୍ଚ ପ୍ରାଥମିକ ବିଦ୍ୟାଳୟରେ ଶିକ୍ଷକତା କରିବାର ସୁଯୋଗ ପାଇଲେ । ନୀଳମଣିଙ୍କ ଉତ୍ସାହ ଅଦମ୍ୟ ଥିଲା । ଅଳ୍ପ ବୟସ୍କ ହେଲେ ହେଁ ସେ ନିଜର ଉତ୍ତମ ଶିକ୍ଷାଦାନ ପ୍ରାଣାଳୀ ଜରିଆରେ ଏବଂ ସ୍ୱୟଂ କର୍ମନିଷ୍ଠା ଓ ସାଧୁ ବ୍ୟବହାର ଦ୍ୱାରା ସମସ୍ତଙ୍କର ପ୍ରୀତିଭାଜନ ହୋଇପଡିଲେ । ଅଳ୍ପଦିନ ମଧ୍ୟରେ ତାଙ୍କ ବିଦ୍ୟାଳୟର ଖ୍ୟାତି ସର୍ବତ୍ର ବ୍ୟାପୀଗଲା ଏବଂ ଗଡଜାତ ସ୍କୁଲମାନଙ୍କ ମଧ୍ୟରେ ତାଙ୍କ ସ୍କୁଲ ସର୍ବୋତ୍କୃଷ୍ଟ ବିବେଚିତ ହେଲା । ଅଳ୍ପ କେତେଦିନ ପରେ ବଡମ୍ବା ରାଜା ଦାଶରଥି ମଙ୍ଗରାଜ ବୀରବର ମହାପାତ୍ରଙ୍କର ମୃତ୍ୟୁ ଘଟିଲା । ଥରେ ରାଜମହିଷୀ ଅପ୍ରାପ୍ତ ବୟସ୍କପୁତ୍ର ବିଶ୍ୱମ୍ଭରଙ୍କୁ ସଙ୍ଗରେ ଘେନି ପୁରୀ ଯିବାବେଳେ ବାଟରେ ପ୍ରସିଦ୍ଧ ସିଂହନାଥ ପାହାଡ ନିକଟରେ ବିଶ୍ରାମ କରୁଥିଲେ । ନୀଳମଣି ସ୍ୱର୍ଗତ ରାଜା, ରାଜମହିଷୀ ଓ ମ୍ୟାନେଜର ସାହେବଙ୍କ ଗୁଣ କୀର୍ତ୍ତନ କରି ଗୋଟିଏ ମନୋରମ କବିତା ରଚନା କଲେ ଓ ତାହା ବିଦ୍ୟାଳୟର ଛାତ୍ରମାନଙ୍କୁ ଶିଖାଇ ରାଣୀଙ୍କ ସମ୍ମୁଖରେ ଆବୃତ୍ତି କରାଇଲେ । ତାହା ଶୁଣି ରାଣୀ ମୁଗ୍ଧା ହୋଇ ନୀଳମଣିଙ୍କୁ 'ବିଦ୍ୟାରତ୍ନ' ଉପାଧିରେ ଭୂଷିତ କଲେ ଏବଂ ସେଥିସହିତ ତାଙ୍କୁ ନଗଦ ପଚାଶ ଟଙ୍କା, ପଟ୍ଟବସ୍ତ୍ର ଓ ଖଣ୍ଡେ ସାର୍ଟିଫିକେଟ୍ ପ୍ରଦାନ କଲେ । ସେହିଦିନଠାରୁ ନୀଳମଣି 'ବିଦ୍ୟାରତ୍ନ' ନାମରେ ସର୍ବତ୍ର ପରିଚିତ ହେଲେ, କିନ୍ତୁ ପୂର୍ବରୁ ତାଙ୍କର ନାମ ଥିଲା ନୀଳମଣି ମିଶ୍ର । ବଡମ୍ବା ଗଡରେ ନୀଳମଣି ଅଧିକ ଦିନ ତିଷ୍ଠି ପାରିଲେ ନାହିଁ । କେତେକ ଅସହିଷ୍ଣୁ ବ୍ୟକ୍ତିଙ୍କ କୁଚକ୍ରାନ୍ତର ଶିକାର ହୋଇ ତାଙ୍କୁ ବଡମ୍ବା ପରିତ୍ୟାଗ କରିବାକୁ ପଡିଲା । ପରେ ପରେ ସେ ବାମଣ୍ଡାର ସୁନାମଧନ୍ୟ ମହାରାଜା ସୁଢଳ ଦେବଙ୍କ ଦୟାରୁ ବାମଣ୍ଡା ମଧ୍ୟଇଂରାଜୀ ବିଦ୍ୟାଳୟରେ ଶିକ୍ଷକଭାବେ ନିଯୁକ୍ତି ପାଇଲେ । ସେଠାରେ ବିଦ୍ୟାରତ୍ନଙ୍କ ଅଧ୍ୟାପନା କୌଶଳ ଓ ମାତୃଭାଷା ପ୍ରତି ମମତାର ପରିଚୟ ପାଇ ସ୍ୱୟଂ ରାଜା ସୁଢଳଦେବ ତାଙ୍କୁ ଜଣେ ସର୍ବୋତ୍ତମ ଶିକ୍ଷକ ରୂପେ ମାନ୍ୟତା ପ୍ରଦାନ

କଲେ । ବିଦ୍ୟାରତ୍ନ ବଡମ୍ବାଗଡରେ ଶିକ୍ଷକତା କରୁଥିବା ସମୟରେ ସେତେବେଳେ ବାମଣ୍ଡାର ରାଜା ସାର୍ ସୁଢଳ ଦେବଙ୍କ ଦ୍ୱାରା କଟକଠାରେ ପ୍ରତିଷ୍ଠିତ ସୁଢଳ ପ୍ରେସ୍‌ରୁ 'ସଂସ୍କାର' ନାମକ ଏକ ପତ୍ରିକା ପ୍ରକାଶ ପାଉଥିଲା ଏବଂ ନୀଳମଣି ସେହି ପତ୍ରିକାର ନିୟମିତ ଲେଖକ ଥିଲେ । ୧୮୮୬ ମସିହାରେ ରାଜାଙ୍କ ପରାମର୍ଶକ୍ରମେ କଟକଠାରୁ ସୁଢଳ ପ୍ରେସ୍‌କୁ ଉଠାଇ ଆଣି ବାମଣ୍ଡାରେ ପ୍ରତିଷ୍ଠା କରାଗଲା । ଓଡ଼ିଆ ସାହିତ୍ୟର ବିକାଶ ନିମନ୍ତେ ୧୮୮୭ ମସିହାରେ ମହାରାଜା ବାସୁଦେବ ସୁଢଳ ଦେବ ଦେବଗଡରୁ 'ସମ୍ବଲପୁର ହିତୈଷିଣୀ' ନାମକ ଏକ ପତ୍ରିକା ପ୍ରକାଶ କଲେ ଏବଂ ସେ ନୀଳମଣି ବିଦ୍ୟାରତ୍ନଙ୍କୁ ସେହି ପତ୍ରିକାର ସ୍ଥାୟୀ ସଂପାଦକ ଭାବେ ନିଯୁକ୍ତି ଦେଲେ । ନୀଳମଣି ଏହି ପତ୍ରିକା ସଂପାଦନା କାର୍ଯ୍ୟରେ ଯେଉଁ ଶକ୍ତି, ସାମର୍ଥ୍ୟ ଓ ପ୍ରତିଭା ଦେଖାଇଲେ ତାହା ସମସ୍ତଙ୍କୁ ବିସ୍ମିତ କରିଦେଇଥିଲା । ତାଙ୍କର ପ୍ରଚେଷ୍ଟାରେ ନୂତନ ଚିନ୍ତା, ନୂତନ ଭାବ ଓ ସମସ୍ୟାକୁ ନେଇ ପ୍ରତି ସପ୍ତାହରେ ଏହି ପତ୍ରିକା ନିୟମିତ ଭାବେ ପ୍ରକାଶ ପାଇଲା । 'ସମ୍ବଲପୁର ହିତୈଷିଣୀ'ରେ ପଣ୍ଡିତ ନୀଳମଣି ଓ ରାଜା ସୁଢଳ ଦେବଙ୍କ ଲେଖାମାନ ନିୟମିତ ପ୍ରକାଶ ପାଉଥିଲା । ଏହାଛଡା କବିବର ରାଧାନାଥ, ମଧୁସୂଦନ ରାଓ, ବିଶ୍ୱନାଥ କର, ଚନ୍ଦ୍ରମୋହନ ମହାରଣା, ଚିନ୍ତାମଣି ମହାନ୍ତି ଏବଂ ଗଙ୍ଗାଧର ମେହେର ପ୍ରଭୃତି ଲେଖକଗଣ ଏଥିରେ ମଧ ଲେଖାଲେଖି କରି ସାରସ୍ୱତ ପ୍ରତିଷ୍ଠା ଲାଭ କରିଥିଲେ । ପରାଧୀନ ଓଡ଼ିଶାର ଦୁର୍ଗତି ସମୟରେ ପଣ୍ଡିତ ବିଦ୍ୟାରତ୍ନ ହିତୈଷିଣୀ ମାଧମରେ ଓଡ଼ିଶାର ସ୍ୱାଭିମାନ ଓ ସ୍ୱାର୍ଥରକ୍ଷା ସହିତ ଭାଷା ଏବଂ ସାହିତ୍ୟର ଉନ୍ନତି ନିମନ୍ତେ ଆପ୍ରାଣ ଉଦ୍ୟମ କରିଥିଲେ । ବସ୍ତୁତଃ ପ୍ରାଚୀନ ଓ ନୂତନ ଲେଖକ, କବି ଓ ଶିଳ୍ପୀମାନଙ୍କ ଲେଖାକୁ ସେ ପ୍ରକାଶ କରାଇ ବୃହତ୍ତର ଉତ୍କଳୀୟ ସାଂସ୍କୃତିକ ଭିତ୍ତିଭୂମି ପ୍ରସ୍ତୁତ କରିପାରିଥିଲେ ।

ପଶ୍ଚିମ ଓଡ଼ିଶାରେ ଓଡ଼ିଆ ଭାଷାର ଜାଗ୍ରତ ପ୍ରହରୀ ଥିଲେ ନୀଳମଣି ବିଦ୍ୟାରତ୍ନ । ସମ୍ବଲପୁର ଜିଲ୍ଲାରୁ ଯେତେବେଳେ ଓଡ଼ିଆ ଭାଷା ଉଠାଇ ଦେଇ ହିନ୍ଦୀ ଭାଷା ପ୍ରଚଳନ କରିବା ପାଇଁ ସ୍ଥିର କରି ସରକାର ଆଦେଶନାମା ଜାରି କଲେ ସେତେବେଳେ ବିଦ୍ୟାରତ୍ନ ଓଡ଼ିଆ ଭାଷା ସପକ୍ଷରେ ଆନ୍ଦୋଳନ ଆରମ୍ଭ କଲେ । ୧୮୯୫ ମସିହା ଜାନୁଆରୀ ମାସରେ 'ହିତୈଷିଣୀ' ପତ୍ରିକାରେ ସେ 'ମାତୃଭାଷା ବିଲୋପ' ଶୀର୍ଷକ ଏକ ଅଗ୍ରଲେଖା ପ୍ରକାଶ କଲେ । ନୀଳମଣିଙ୍କ ଅକ୍ଳାନ୍ତ ଉଦ୍ୟମ ତଥା ନେତୃବୃନ୍ଦଙ୍କ ଆନ୍ଦୋଳନ ଯୋଗୁଁ ଶେଷରେ ସରକାର ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳନ ପାଇଁ ଆଦେଶ ଦେଲେ । ବାସ୍ତବରେ ନୀଳମଣି ଜଣେ ଆଦର୍ଶ ସ୍ଥାନୀୟ ସଂପାଦକ ଥିଲେ । ଅଭ୍ରାନ୍ତ ସତ୍ୟ ପ୍ରକାଶ କରିବା ତାଙ୍କର ଦୃଢ ନୀତି ଥିଲା । ସମ୍ପାଦନା କ୍ଷେତ୍ରରେ ସେ ସର୍ବଦା ନିରପେକ୍ଷ ରହୁଥିଲେ । ବିଦ୍ୟାରତ୍ନଙ୍କର ଦୂରଦର୍ଶିତା, ଦେଶଭକ୍ତି, ସାହିତ୍ୟ ପ୍ରୀତି ଓ କର୍ମନିଷ୍ଠା ଯୋଗୁଁ ସେ ସମସ୍ତଙ୍କର ପ୍ରିୟଭାଜନ ହୋଇପାରିଥିଲେ । ଷୋହଳବର୍ଷ ବାମଣ୍ଡାରେ ରହଣିକାଳ ମଧ୍ୟରେ ସେ ଦେବଗଡରେ 'ଶିକ୍ଷକ ସମିତି' ଓ 'ଆଲୋଚନା ସଭା' ନାମକ ଦୁଇଟି ଅନୁଷ୍ଠାନ ଗଢିଥିଲେ । ଏହି ଦୁଇଟି ଅନୁଷ୍ଠାନ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ଓ ଆଲୋଚନା ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା । ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଖଲ୍ଲିକୋଟର ତତ୍କାଳୀନ ରାଜା ହରିହର ମର୍ଦ୍ଦରାଜଙ୍କ ଦ୍ୱାରା ଆମନ୍ତ୍ରିତ ହୋଇ ୧୯୦୨ ମସିହାରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ବାମଣ୍ଡା ଛାଡି ଖଲ୍ଲିକୋଟ ଚାଲିଆସିଲେ । ସାହିତ୍ୟାନୁରାଗୀ, ଦେଶପ୍ରେମୀ ତଥା ପ୍ରଜାବତ୍ସଳ ରାଜା ହରିହର ମର୍ଦ୍ଦରାଜଙ୍କର ଯେହେତୁ ସାହିତ୍ୟ ପ୍ରତି ପ୍ରଗାଢ ଆସକ୍ତି ଥିଲା ତେଣୁ ସେ ଗୋଟିଏ ପତ୍ରିକା ପ୍ରକାଶନ ପାଇଁ ପ୍ରବଳ ଇଚ୍ଛୁକ ଥିଲେ । ବିଦ୍ୟାରତ୍ନଙ୍କର ପରିଚୟ ପାଇ ତାଙ୍କରି ସହାୟତାରେ ରାଜା ହରିହର 'ପ୍ରଜାବନ୍ଧୁ'

ନାମରେ ଗୋଟିଏ ପତ୍ରିକା ପ୍ରକାଶ କଲେ । ୧୯୦୨ ମସିହା ଜୁନ୍ ମାସ ୨୫ ତାରିଖରେ ସାପ୍ତାହିକ ପତ୍ରିକା 'ପ୍ରଜାବନ୍ଧୁ' ରମ୍ଭା ରାଜପ୍ରାସାଦରୁ ପ୍ରଥମେ ଆତ୍ମପ୍ରକାଶ କଲା । ଏହି ପତ୍ରିକାର ଆଦର୍ଶ ନୀଳମଣି ହିଁ ସ୍ଥିର କରିଥିଲେ । 'ସମ୍ବଲପୁର ହିତୈଷିଣୀ' ପରି 'ପ୍ରଜାବନ୍ଧୁ'ରେ ଲେଖିବା ପାଇଁ ସେ ବହୁ ନୂତନ ଓ ନିୟମିତ ଲେଖକଙ୍କ ଲେଖାକୁ ପ୍ରକାଶ କରାଇଲେ । କ୍ରମେ ଏହାର ପ୍ରଭାବ ଅନୁଭୂତ ହେଲା । ଅଳ୍ପକାଳ ମଧ୍ୟରେ 'ପ୍ରଜାବନ୍ଧୁ' ଏକ ପ୍ରଧାନ ପତ୍ରିକାରେ ପରିଣତ ହେଲା । ନୀଳମଣି ଗଞ୍ଜାମ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ 'ପ୍ରଜାବନ୍ଧୁ ସମିତି' ମାନ ଗଢି ପତ୍ରିକାର କାର୍ଯ୍ୟ ପରିସର ବୃଦ୍ଧି କଲେ । ଏହି ସମିତିଗୁଡିକ ଜନସାଧାରଣଙ୍କର ଅଭାବ, ଅସୁବିଧା ଓ ଅଭିଯୋଗକୁ 'ପ୍ରଜାବନ୍ଧୁ' ପତ୍ରିକା ମାଧ୍ୟମରେ ତତ୍କାଳୀନ ସରକାରଙ୍କର ଦୃଷ୍ଟି ଆକର୍ଷଣ କଲେ । ସେତେବେଳେ ଗଞ୍ଜାମ ଜିଲ୍ଲା ମାଡ୍ରାସ ପ୍ରେସିଡେନ୍‌ସି ଅନ୍ତର୍ଗତ ଥିବା ଯୋଗୁଁ ତୈଲଙ୍ଗ ତଥା ଦାକ୍ଷିଣାତ୍ୟ ବ୍ୟକ୍ତିଙ୍କ ଦ୍ୱାରା ଶାସିତ ହୋଇ ଓଡ଼ିଆଙ୍କ ସ୍ୱାଭିମାନ ଓ ଆତ୍ମମର୍ଯ୍ୟାଦା କ୍ଷୁଣ୍ଣ ହୋଇଆସୁଥିଲା । ପଣ୍ଡିତ ନୀଳମଣି 'ପ୍ରଜାବନ୍ଧୁ' ପତ୍ରିକା ଜରିଆରେ ଗଞ୍ଜାମକୁ ଓଡ଼ିଶାରେ ମିଶାଇବା ପାଇଁ ଆନ୍ଦୋଳନ ଆରମ୍ଭ କରିଦେଲେ । ରାଜା ହରିହର ମର୍ଦ୍ଦରାଜ ମଧ୍ୟ ଏହି କ୍ଷେତ୍ରରେ ନୀଳମଣିଙ୍କୁ ସମର୍ଥନ ଜଣାଇଲେ । ୧୯୦୩ ମସିହାରେ ପଣ୍ଡିତ ନୀଳମଣିଙ୍କ ପ୍ରଚେଷ୍ଟା ଏବଂ ରାଜା ହରିହରଙ୍କ ପୃଷ୍ଠପୋଷକତାରେ ବ୍ରହ୍ମପୁରଠାରେ 'ଗଞ୍ଜାମ ଜାତୀୟ ସମିତି' ନାମକ ଏକ ବଡ ସଭାର ଆୟୋଜନ କରାଯାଇଥିଲା । ଏହି ସଭାରେ ଓଡ଼ିଶାର ବହୁ ଦେଶବତ୍ସଳ ନେତୃବୃନ୍ଦ ତଥା ବିଶିଷ୍ଟ ବ୍ୟକ୍ତି ଯଥା: ଉତ୍କଳଗୌରବ ମଧୁସୂଦନ ଦାସ, ଫକୀର ମୋହନ ସେନାପତି, ବାଗ୍ମୀ ବିଶ୍ୱନାଥ କର, ଗୋପାଳ ଚନ୍ଦ୍ର ପ୍ରହରାଜ, ନନ୍ଦକିଶୋର ବଳ ପ୍ରଭୃତି ଆମନ୍ତ୍ରିତ ହୋଇ ଯୋଗଦାନ କରିଥିଲେ । ସେହି ସଭାରେ ପ୍ରଥମେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣର ପ୍ରସ୍ତାବ ଗୃହୀତ ହେଲା । ପରବର୍ତ୍ତୀ ସମୟରେ କେତେକ ନେତୃବୃନ୍ଦଙ୍କ ପ୍ରସ୍ତାବକ୍ରମେ 'ଗଞ୍ଜାମ ଜାତୀୟ ସମିତି'ର ନାମ 'ଉତ୍କଳ ସମ୍ମିଳନୀ' ରଖାଗଲା । ଏହି 'ଉତ୍କଳ ସମ୍ମିଳନୀ'ର ପ୍ରଥମ ଅଧିବେଶନ ୧୯୦୩ ମସିହା ଡିସେମ୍ବର ମାସ ତିରିଶ ତାରିଖରେ ଅନୁଷ୍ଠିତ ହୋଇଥିଲା । ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ମୃତ୍ୟୁ ପର୍ଯ୍ୟନ୍ତ 'ଉତ୍କଳ ସମ୍ମିଳନୀ' ସହିତ ଓତଃପ୍ରୋତ ଭାବେ ଜଡିତ ଥିଲେ । ଦୁର୍ଭାଗ୍ୟବଶତଃ ୧୯୦୭ ମସିହାରେ ମହାରାଜା ହରିହର ମର୍ଦ୍ଦରାଜଙ୍କର ପରଲୋକ ହେଲା ଏବଂ ତା' ପରବର୍ତ୍ତୀ ସମୟରେ ଅର୍ଥାଭାବରୁ 'ପ୍ରଜାବନ୍ଧୁ' ପତ୍ରିକା ପ୍ରକାଶନ ବନ୍ଦ ହୋଇଗଲା । ସେତେବେଳକୁ ନୀଳମଣି ଘୋର ଅର୍ଥାଭାବର ସମ୍ମୁଖୀନ ହେଉଥାନ୍ତି । ଠିକ୍ ଏତିକିବେଳେକୁ ବଡଖେମୁଣ୍ଡିର ରାଜା କୃପାମୟ ଦେବ ପଣ୍ଡିତ ନୀଳମଣିଙ୍କୁ ନିମନ୍ତ୍ରଣ କରି ତାହାଙ୍କୁ ନିଜ ରାଜ୍ୟରୁ ପ୍ରକାଶ ପାଉଥିବା ସାପ୍ତାହିକ ପତ୍ରିକା 'ଗଞ୍ଜାମ ଗୁଣ ଦର୍ପଣ'ର ସମ୍ପାଦନା ଦାୟିତ୍ୱ ଦେଲେ । ବିଦ୍ୟାରତ୍ନଙ୍କ ବଳିଷ୍ଠ ସମ୍ପାଦନାରେ 'ଗଞ୍ଜାମ ଗୁଣ ଦର୍ପଣ' ଅତି ସରସ ଓ ସୁନ୍ଦର ହୋଇଉଠିଲା । କାରଣ ଏହା ଓଡ଼ିଆଙ୍କ ସ୍ୱାର୍ଥରକ୍ଷା ପାଇଁ କାର୍ଯ୍ୟ କରୁଥିଲା । ଗଞ୍ଜାମରୁ ତୈଲଙ୍ଗୀୟମାନଙ୍କ ପ୍ରଭାବ ଦୂର କରିବା, ଗଞ୍ଜାମର ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ଓ ସମାଜ ସଂସ୍କାର ମୂଳ ଲକ୍ଷ୍ୟ ଥିଲା । ବଡଖେମୁଣ୍ଡିରେ ଷୋହଳ ବର୍ଷ ଅତିବାହିତ କରିବା କାଳରେ ନୀଳମଣିଙ୍କର ପତ୍ନୀଙ୍କର ବିୟୋଗ ଘଟିଲା । ଏହି ଘଟଣାରେ ସେ ଖୁବ୍ ମର୍ମାହତ ହୋଇପଡ଼ିଥିଲେ । ତା' ସହିତ ବଡ଼ଖେମୁଣ୍ଡିର କେତେକ କୁଚକ୍ରାନ୍ତକାରୀଙ୍କ ଷଡ଼ଯନ୍ତ୍ରର ଶିକାର ହୋଇ ପଣ୍ଡିତ ନୀଳମଣି ଅତିଷ୍ଠ ହୋଇପଡ଼ିଲେ ଏବଂ ବଡ଼ଖେମୁଣ୍ଡି ଛାଡ଼ିବାକୁ ମନସ୍ଥ କଲେ । କିଛି ଦିନ ପରେ ତାଙ୍କୁ କଟକରୁ ପ୍ରକାଶିତ 'ଉତ୍କଳ ଦୀପିକା'ର ସମ୍ପାଦନା ଦାୟିତ୍ୱ ନେବାର ସୁଯୋଗ ମିଳିଲା । ସେଠାରେ କିଛି ଦିନ କାର୍ଯ୍ୟ କରିବା ପରେ ପ୍ରିଣ୍ଟିଂ କମ୍ପାନିର ପରିଚାଳକମାନେ ତାଙ୍କୁ ସ୍ୱାଧୀନ ମତପୋଷଣ କରିବାରେ

ଅନ୍ତରାୟ ସୃଷ୍ଟି କରିବାରୁ ୧୯୨୩ ମସିହାରେ ସେ 'ଉତ୍କଳ ଦୀପିକା'ର ସମ୍ପାଦକ ପଦରୁ ଇସ୍ତଫା ଦେଲେ । କଟକରେ ରହି ସେ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କରଙ୍କ ସହାୟତାରେ 'ଉତ୍କଳ ମଧୁପ'ର ପୁନଃ ସମ୍ପାଦନା କଲେ । ପ୍ରଥମେ ଦେବଗଡ଼, ରମ୍ଭା, ବଡ଼ଖେମୁଣ୍ଡି ଓ ଶେଷରେ କଟକରୁ ଏହା ପ୍ରକାଶ ପାଇଲା । 'ସମ୍ବଲପୁର ହିତୈଷିଣୀ' ଓ 'ପ୍ରଜାବନ୍ଧୁ' ପରି ମାସିକ ପତ୍ରିକା 'ଉତ୍କଳ ମଧୁପ' ଶିକ୍ଷିତ ଗୋଷ୍ଠୀ ଦ୍ୱାରା ଆଦୃତ ହୋଇଥିଲା । ପତ୍ରିକା ସମ୍ପାଦନା ସହିତ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଅନେକଗୁଡ଼ିଏ ପୁସ୍ତକ ରଚନା କରିଛନ୍ତି । ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତିର ଜଣେ ପ୍ରଚଣ୍ଡ ପ୍ରବକ୍ତା ଭାବରେ ଆଜୀବନ ସଂଘର୍ଷ ମଧ୍ୟରେ ପଣ୍ଡିତ ନୀଳମଣି ସ୍ୱକୀୟ ମତବାଦର ବଳିଷ୍ଠ ଉପସ୍ଥାପନା କରିପାରିଥିଲେ । ପ୍ରକୃତରେ ଏ ଜାତି ପାଇଁ ସେ ଜଣେ ବିଦ୍ୟାରତ୍ନ ।

ପୁରୀ ରାଜା ରାମଚନ୍ଦ୍ର ଦେବ ତାଙ୍କ ପୁତ୍ରର ଉପନୟନରେ ଯୋଗଦେବା ପାଇଁ ପଣ୍ଡିତ ନୀଳମଣିଙ୍କୁ ନିମନ୍ତ୍ରଣ କରିଥିଲେ । ରାଜାଙ୍କର ନିମନ୍ତ୍ରଣ ରକ୍ଷା କରି ସେ ପୁରୀ ଯାଇ ଉପନୟନ ଉତ୍ସବରେ ଯୋଗଦେଲେ । ସେଠାରୁ ଫେରିବା ପରେ ନୀଳମଣି ଶରୀରରେ ଯନ୍ତ୍ରଣା ଅନୁଭବ କଲେ । କିନ୍ତୁ ତାହା ଉପଶମ ହେଲା ନାହିଁ । ତେବେ ସେହି ଅବସ୍ଥାରେ ସେ ଗୋଟିଏ ଦୈନିକ ପତ୍ରିକା ପ୍ରକାଶ କରିବା ପାଇଁ ଆପ୍ରାଣ ଉଦ୍ୟମ ଚଳାଉଥାନ୍ତି । ବିଧିର ବଧାନ ବଡ଼ ବିଚିତ୍ର । ଦୈନିକ ପତ୍ରିକା ପ୍ରକାଶନ ପୂର୍ବରୁ ୧୯୨୩ ମସିହା ଜୁଲାଇ ମାସ ୨୬ ତାରିଖରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ ଇହଲୀଳା ସମ୍ବରଣ କଲେ । ସେତେବେଳକୁ ସେ ପ୍ରାୟ ନିଃସ୍ୱ ଥିଲେ । ଏପରିକି ତାଙ୍କର ଶେଷକୃତ୍ୟ ପାଇଁ ସମ୍ବଳ ନିଅଣ୍ଟ ପଡ଼ିଥିଲା ।

ଓଡ଼ିଆ ଅସ୍ମିତାର ଏହି ଦୀପ୍ତିମନ୍ତ ପ୍ରବକ୍ତା ଉତ୍କଳୀୟ ସ୍ୱାଭିମାନର ପୁନଃପ୍ରତିଷ୍ଠା ଦିଗରେ ସ୍ୱୀୟ ଲେଖନୀ ମାଧ୍ୟମରେ ଆଜୀବନ ସଂଗ୍ରାମ କରିବା କାଳରେ ଆପଣାର ଭଗ୍ନ ସ୍ୱାସ୍ଥ୍ୟ ପ୍ରତି ତିଳେହେଲେ ଭ୍ରୂକ୍ଷେପ କରି ନ ଥିଲେ । ଉତ୍ତର ଜୀବନର ଆର୍ଥିକ ଅନଟନ ତାଙ୍କର ଚିନ୍ତା ଓ ଚେତନାକୁ ପ୍ରତିହତ କରି ନ ଥିଲା ବରଂ ଏହାକୁ ଅଧିକ ଶାଣିତ କରି ତୋଳିଥିଲା । ଉତ୍କଳର ଅଖଣ୍ଡତା, ଭାଷା ଓ ସାଂସ୍କୃତିକ ଗୌରବ ପ୍ରତିଷ୍ଠାର ଜଣେ ସୁଦକ୍ଷ ସାରଥି ଭାବରେ ଏ ଜାତିର ଇତିହାସ ବିଦ୍ୟାରତ୍ନଙ୍କୁ କାଳକାଳ ଧରି ଯେ ସ୍ମରଣ କରିବ–ଏଥିରେ ସନ୍ଦେହ ନାହିଁ । ହେ ନିଃସ୍ୱାର୍ଥ ସାଧକ ! ତୁମ୍ଭଙ୍କୁ ଏ ଜାତିର କୋଟି କୋଟି ପ୍ରଣାମ ।

ଲୋକ ସମ୍ପର୍କ ଅଧିକାରୀ ତଥା
ଅତିରିକ୍ତ ରଚନା ଅଧିକାରୀ
ସୂଚନା ଓ ଲୋକସମ୍ପର୍କ ବିଭାଗ
ଭୁବନେଶ୍ୱର



# କୋଣାର୍କରେ ମାଘ ମେଳା

ପବିତ୍ର ମୋହନ ବାରିକ

କୋର୍ଣାକ ଏକ ପ୍ରାଚୀନ ଧର୍ମ କ୍ଷେତ୍ର । ବିଶ୍ୱ ପ୍ରସିଦ୍ଧ ସୂର୍ଯ୍ୟମନ୍ଦିର ପାଇଁ ଏହା ସାରା ବିଶ୍ୱରେ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଅଛି । କୋଣାର୍କର ସୂର୍ଯ୍ୟମନ୍ଦିର ବିଶ୍ୱ ଐତିହ୍ୟର ସ୍ମାରକୀ ରୂପେ ପରିଚିତ । କୋର୍ଣାକରେ ଆୟୋଜିତ ପ୍ରସିଦ୍ଧ ମାଘମେଳା ପୁରାଣ ସ୍ୱୀକୃତ । ଧର୍ମପୁରାଣ, ଇତିହାସ ଓ ସାହିତ୍ୟ ପୃଷ୍ଠାରେ କୋଣାର୍କ କ୍ଷେତ୍ରର ମହିମା ଓ ମହତ୍ତ୍ୱ ପ୍ରତିପାଦିତ ହୋଇଅଛି । ଏହି କ୍ଷେତ୍ର ଅର୍କ କ୍ଷେତ୍ର, ପଦ୍ମକ୍ଷେତ୍ର, ସୂର୍ଯ୍ୟକ୍ଷେତ୍ର, ମୈତ୍ରେୟ ବନ ନାମରେ ସମସ୍ତଙ୍କ ନିକଟରେ ପରିଚିତ । ପୁରାଣ ବର୍ଣ୍ଣିତ ଅର୍କ ନାମରେ ଏକ ଦୈତ୍ୟକୁ ସୂର୍ଯ୍ୟଦେବ ଏଠାରେ ବଧ କରିଥିବାରୁ ଏହା ଅର୍କକ୍ଷେତ୍ର ନାମରେ ବିଦିତ । କୋଣାର୍କର ଉତ୍ତରରେ ମହୋଦଧି ଓ ଦକ୍ଷିଣରେ ପୁଣ୍ୟତୋୟା ଚନ୍ଦ୍ରଭାଗା ନଦୀ ପ୍ରବାହିତ । ଏହି ଦୁଇ ଜଳବର୍ତ୍ତିକା ମଧ୍ୟରେ କୋଣାର୍କ ଅବସ୍ଥିତ । ଜମ୍ବୁଦ୍ୱୀପରେ ଅଗ୍ନିକୋଣରେ କୋଣାର୍କ ଅବସ୍ଥିତ ଅଟେ । ଚନ୍ଦ୍ରଙ୍କ ରୂପକାନ୍ତିରେ ସମକକ୍ଷ ହୋଇନପାରିବାରୁ ଜଳପତି ଅସନ୍ତୁଷ୍ଟ ପ୍ରକାଶ କରି ଏହି ସ୍ଥାନରେ ସୂର୍ଯ୍ୟଙ୍କୁ ନଅଲକ୍ଷ ବର୍ଷ ସୂର୍ଯ୍ୟଙ୍କୁ ନ ଦେଖି ତପସ୍ୟା କଲେ, କିଛି ଦିନ ପରେ ଅର୍କଦୈତ୍ୟ ଜଳପତିଙ୍କୁ ଭକ୍ଷଣ କରିବାକୁ ଉଦ୍ୟମ କଲା । ସୂର୍ଯ୍ୟ ଦେବଙ୍କ ବାରଣ ନ ମାନିବାରୁ ଅର୍କଦୈତ୍ୟ ଓ ସୂର୍ଯ୍ୟଙ୍କ ମଧ୍ୟରେ ତୁମୁଳ ସଂଗ୍ରାମ ହେଲା । ଅଗ୍ନିକୋଣରେ ସୂର୍ଯ୍ୟଦେବତା ଅର୍କଦୈତ୍ୟକୁ ବଧ କରିଥିବାରୁ ଏହାର ନାମ କୋଣାର୍କ ନାମରେ ନାମିତ କରାଯାଇଅଛି ।

ଅର୍କଦୈତ୍ୟ ନିହତ ହେବା ଦିନ ଥିଲା ମାଘ ମାସ ଶୁକ୍ଳପକ୍ଷ ସପ୍ତମୀ ଗୁରୁବାର । ତେଣୁ ଏହି ପୁରାଣସିଦ୍ଧ ମତ ଅନୁଯାୟୀ ପ୍ରତିବର୍ଷ ମାଘ ସପ୍ତମୀରେ ଏଠାରେ ବୃହତ୍ ମାଘ ମେଳାର ଆୟୋଜନ କରାଯାଏ । ଅର୍କକ୍ଷେତ୍ର କୋଣାର୍କରେ ଅବସ୍ଥିତ ପଞ୍ଚତୀର୍ଥମାନଙ୍କ ମଧ୍ୟରୁ ଚନ୍ଦ୍ରଭାଗା ଅନ୍ୟତମ । ବୌଦ୍ଧଧର୍ମ ପିପାସୁ, ସତୀର୍ଥ ସାଧକ ଚୀନ୍ ପରିବ୍ରାଜକ ହୁଏନ୍‌ସାଂଙ୍କ ବିବରଣୀରୁ ଜଣାଯାଏ, ଓଡ୍ର ଦେଶରେ ତେଲିତୋଳା ନାମରେ ଏକ ପ୍ରସିଦ୍ଧ ସ୍ଥାନ ଥିଲା । କିଛି ବିଦ୍ୱାନ୍‌ଙ୍କ ମତରେ ପ୍ରାଚୀନ ତେଲିତୋଳା ବର୍ତ୍ତମାନର ଚିତ୍ରୋତ୍ପଳା ନଦୀ ନାମରେ ପରିଚିତ । ତେଲିତୋଳା ଓ ଚିତ୍ରୋତ୍ପଳା ଅଭିନ୍ନ ବୋଲି ଅଭିହିତ ହୋଇଛି । ପ୍ରାଚୀ ମାହାତ୍ମ୍ୟରେ ଉଲ୍ଲେଖ ଅଛି ଚିତ୍ରୋତ୍ପଳା ପ୍ରାଚୀ ନଦୀର ଏକ ଶାଖା ଓ କାଦୁଆ ନାମରେ ପରିଚିତ । କାଦୁଆ ନଦୀରୁ ଚନ୍ଦ୍ରଭାଗା ନଦୀ ଉତ୍ପତ୍ତି ହୋଇ କୋଣାର୍କ ନିକଟରେ ସମୁଦ୍ର ସହିତ ବିଲୀନ ହୋଇଛି । ତେଣୁ ପ୍ରାଚୀ, ଚନ୍ଦ୍ରଭାଗା, ଚିତ୍ରୋତ୍ପଳା, କାଦୁଆ ନଦୀ ପରସ୍ପର ସହିତ ନିବିଡ଼ ସଂପର୍କ ରହିଛି ଓ ସମସ୍ତେ ପୁଣ୍ୟତୋୟା ଅଟନ୍ତି । ଚଣ୍ଡୀ ପୁରାଣରେ ଚନ୍ଦ୍ରଭାଗାକୁ ଗୁପ୍ତଗଙ୍ଗା ରୂପେ ଚିତ୍ରିତ କରାଯାଇଅଛି । ଚନ୍ଦ୍ରଭାଗା ନଦୀରେ ସ୍ନାନ କଲେ ସମସ୍ତ ପାପ କ୍ଷୟ ଓ ଚନ୍ଦ୍ର ପରି କାନ୍ତି ପ୍ରକାଶ ହୁଏ ଏବଂ ଏହା ସହିତ ଚନ୍ଦ୍ରଲୋକରେ ସ୍ଥାନ ମିଳେ । ଚନ୍ଦ୍ରଭାଗା ନଦୀର ମହିମା ଓ ମହତ୍ତ୍ୱ ସମସ୍ତଙ୍କୁ ଅଳ୍ପ ବହୁତ ଜଣା । କବିବର ରାଧାନାଥ ରାୟ ଚନ୍ଦ୍ରଭାଗାକୁ ତାଙ୍କର କାବ୍ୟ ନାୟିକା ରୂପେ ଗ୍ରହଣ କରିଛନ୍ତି । ପବିତ୍ର ଚନ୍ଦ୍ରଭାଗା ନଦୀ ସହିତ କବିବର ତାଙ୍କର କାଳ୍ପନିକ ନାୟିକାର ନାମ ସଂଯୋଗ କରିଛନ୍ତି । ପବିତ୍ର ଚନ୍ଦ୍ରଭାଗା ନଦୀ କୂଳରେ ଅନୁଷ୍ଠିତ ହେଉଥିବା ପ୍ରସିଦ୍ଧ ମାଘ

ସପ୍ତମୀ ମେଳାର ଐତିହ୍ୟ ଓ ମାହାତ୍ମ୍ୟ ଅନନ୍ୟ ଓ ଅସାଧାରଣ ।

ଲୋମ ନାମକ ଜନୈକ ଏକ ଋଷି ଯୁଧିଷ୍ଠିରଙ୍କୁ ଚନ୍ଦ୍ରଭାଗା ନଦୀର ମାହାତ୍ମ୍ୟ ସଂପର୍କରେ ଉଲ୍ଲେଖ କରିଛନ୍ତି ଯାହା ସାରଳା ମହାଭାରତରେ ଦେଖିବାକୁ ମିଳେ । କଣୟ ନାମକ ଏକ ରାଜା ଏ ଅଞ୍ଚଳରେ ରାଜତ୍ୱ କରୁଥିଲେ । ସେ ଧର୍ମପରାୟଣ ଓ ପ୍ରଜାବତ୍ସଳ ଥିଲେ । ସେ ପ୍ରଜାମାନଙ୍କୁ ପ୍ରାକୃତିକ ବିପର୍ଯ୍ୟୟରୁ ରକ୍ଷା କରି ନ ପାରି ଦୁଃଖରେ ମ୍ରିୟମାଣ ହୋଇ ପୁତ୍ର ହସ୍ତରେ ରାଜ୍ୟଭାର ଅର୍ପଣ କରି ସୂର୍ଯ୍ୟଦେବତାଙ୍କୁ ଉପାସନା ନିମନ୍ତେ ଅରଣ୍ୟଗାମୀ ହେଲେ । ସେ ସୂର୍ଯ୍ୟ ଦେବତାଙ୍କୁ ପଞ୍ଚଦଶ ବର୍ଷ ତପସ୍ୟା କଲେ । ଇତିମଧ୍ୟରେ ଅର୍କାସୁର ନାମରେ ଜନୈକ ରାକ୍ଷସ ରାଜା କଣୟଙ୍କୁ ଅନେକ ଦୁଃଖ ଦେଲା । ଦୈତ୍ୟଠାରୁ ରକ୍ଷା ପାଇବା ଉଦ୍ଦେଶ୍ୟରେ ରାଜା ସୂର୍ଯ୍ୟ ଦେବତାଙ୍କୁ ନିବେଦନ କଲେ । ସୂର୍ଯ୍ୟଦେବ ରାକ୍ଷାସ ଅର୍କାସୁରକୁ ସମୁଦ୍ରରେ ବୁଡ଼ାଇ ମାରିଲେ ।

ରାଜା କଣୟ ଓ ଦୈତ୍ୟ ଅର୍କାସୁର ନାମ ସମିଶ୍ରଣରେ ଏ ସ୍ଥାନର ନାମ କୋଣାର୍କ ରଖାଯାଇଥିବାର ବିଶ୍ୱାସ କରାଯାଏ । ତେଣୁ ମହାଭାରତରେ ଉଲ୍ଲେଖ ଅଛି–

‘‘ଚଳିଗଲେ ବାରିଧି ଅଗ୍ନିକୋଣ ଆଡ଼େ
ଅର୍କ ଦୈତ୍ୟକୁ ଚାପିଲେ ମହୋଦଧି ତଳେ ।’’

ମାଘ ମାସ ମକର ସଂକ୍ରାନ୍ତିଠାରୁ ସୂର୍ଯ୍ୟଦେବ ଉତ୍ତରାୟଣ ଗତି କରନ୍ତି । ମାଘ ମାସ ଶୁକ୍ଳପକ୍ଷ ସପ୍ତମୀକୁ ପବିତ୍ର ଦିବସ ରୂପେ ପୁରାଣମାନଙ୍କରେ ବର୍ଣ୍ଣିତ ଅଛି । ଏହାକୁ ଜୟା ସପ୍ତମୀ, ମହାସପ୍ତମୀ, ଆରୋଗ୍ୟ ସପ୍ତମୀ ଓ ରଥ ସପ୍ତମୀ ନାମରେ ନାମିତ କରାଯାଇଅଛି । ମାଘ ସପ୍ତମୀ ସୂର୍ଯ୍ୟ ଦେବଙ୍କର ଜନ୍ମଦିନ ଏବଂ ଏହିଦିନଠାରୁ ବସନ୍ତ ଋତୁର ଆଗମନର ସୂଚନା ମିଳିଥାଏ । ଭାରତବର୍ଷର ବିଭିନ୍ନ ଅଞ୍ଚଳରୁ ତଥା ବିଦେଶରୁ ଲକ୍ଷାଧିକ ଭକ୍ତ ମାଘ ସପ୍ତମୀରେ କୋଣାର୍କକୁ ଆଗମନ କରିଥାନ୍ତି । ଚନ୍ଦ୍ରଭାଗା ନଦୀରେ ସେମାନେ ବୁଡ ପକାଇ ଉଦିତ ସୂର୍ଯ୍ୟଙ୍କୁ ଦର୍ଶନ କରନ୍ତି । ସୂର୍ଯ୍ୟ ଦର୍ଶନ କଲେ ଅନେକ ସୁଫଳ ମିଳେ ବୋଲି ଲୋକକଥାରେ ବିଶ୍ୱାସ ଅଛି । କୁଷ୍ଠ, ହୃଦ୍‌ରୋଗ, ସ୍ନାୟୁଗତ ଦୁର୍ବଳତା, ଶ୍ୱାସ ପ୍ରଭୃତି ମାରାତ୍ମକ ରୋଗରୁ ମଧ୍ୟ ଆରୋଗ୍ୟ ଲାଭ ହୁଏ । ସୂର୍ଯ୍ୟ ଦେବତାଙ୍କୁ ଆରାଧନା କଲେ ସୁସ୍ଥ ଶରୀର, ଉତ୍ତମ ଦୃଷ୍ଟି ଶକ୍ତି, ଶାରୀରିକ ଶକ୍ତି, ସାହସ, ସୁଖ, ସମୃଦ୍ଧି ବୃଦ୍ଧି ପାଏ । ଏଣୁ ବିଶ୍ୱାସ ଅଛି, ଯଦି ନାରୀମାନେ ମାଘ ସପ୍ତମୀରେ ଉପବାସ ରହି ସୂର୍ଯ୍ୟଦେବଙ୍କୁ ପୂଜା ଅର୍ଚ୍ଚନା କରନ୍ତି ତେବେ ସେମାନେ ଜ୍ଞାନର ଅଧିକାରୀ ହେବା ସହିତ ସୌଭାଗ୍ୟବତୀ ହୁଅନ୍ତି । କଥିତ ଅଛି, ଏହିଦିନ ଗଙ୍ଗାସ୍ନାନ କରି ବାଳ ସୂର୍ଯ୍ୟଙ୍କୁ ଦର୍ଶନ କଲେ ବ୍ରହ୍ମହତ୍ୟା ସହିତ ଅନେକ ପାପରୁ ମୁକ୍ତି ମିଳେ । ମହାମାୟୀ ଲକ୍ଷ୍ମୀ ପ୍ରସନ୍ନ ହୋଇ ଦାରିଦ୍ର୍ୟ ଦୂରୀଭୂତ କରିଥାନ୍ତି । ମାଘ ସପ୍ତମୀରେ ହିନ୍ଦୁ ରମଣୀମାନେ ମୁରୁଜରେ ରଙ୍ଗୋଲି ଚିତା ପକାଇଥାନ୍ତି । ସାତଟି ଘୋଡ଼ା ଥିବାର ସୂର୍ଯ୍ୟଙ୍କର ରଥଚିତ୍ର ଅଙ୍କନ କରି ସୂର୍ଯ୍ୟ ଦେବଙ୍କୁ ପୂଜା କରିଥାନ୍ତି । ଭକ୍ତମାନେ ଏହିଦିନ ବିଭିନ୍ନ ତୀର୍ଥ ସ୍ଥାନ ଓ ସମୁଦ୍ରରେ ବୁଡ଼ ପକାଇ ସୂର୍ଯ୍ୟ ନାରାୟଣଙ୍କର ବାର ନାମକୁ ସ୍ମରଣ କରିଥାନ୍ତି । ଅଂଶୁମାନ, ଖଗ, ମାର୍କଣ୍ଡ, ହିରଣ୍ୟ ଗର୍ଭ, ମରିଚି, ଆଦିତ୍ୟ, ସବିତା, ଅର୍କ, ଭାସ୍କର ଓ ମିହିର ବାରଥର ସ୍ମରଣ କରି ପ୍ରଣାମ କଲେ ଅନେକ ପୁଣ୍ୟ ମିଳେ । ସାଧାରଣତଃ ଐଶାନ କୋଣରେ ସୂର୍ଯ୍ୟ ଦେବଙ୍କୁ ପୂଜା କରିବା ବିଧି ସମ୍ମତ ଅଟେ । ଐଶାନ କୋଣକୁ ଉପାସନା ତଥା ଆରୋଗ୍ୟ ସ୍ଥାନ ଭାବରେ ଗ୍ରହଣ କରାଯାଇଥାଏ । ଉତ୍ତର-ପୂର୍ବ କୋଣରେ ସୂର୍ଯ୍ୟଙ୍କୁ ଆରାଧନା କଲେ ବିଭିନ୍ନ ଚର୍ମ ରୋଗରୁ ଆରୋଗ୍ୟ ଲାଭ କରିବାର ବିଷୟ ବହୁ ପ୍ରାଚୀନ କାଳରୁ ପ୍ରଚଳିତ ଅଛି । ଏହି ପରମ୍ପରା କେବଳ ଭାରତବର୍ଷରେ ନୁହେଁ ଅନ୍ୟ ଦେଶରେ ମଧ୍ୟ ଦେଖିବାକୁ ମିଳେ । ଇରାନର ଚାରିଗୋଟି ସ୍ଥାନର ନାମ କୋଣାର୍କ ରହିଛି । ତାମିଲନାଡୁର ‘‘ସୂର୍ଯ୍ୟ ନାରକୋଏଲ’’ ଠାରେ ଥିବା ସୂର୍ଯ୍ୟ ମନ୍ଦିରର କିମ୍ବଦନ୍ତୀରୁ ଜଣାଯାଏ ଅଭିଶପ୍ତ ଗ୍ରହ ଦେବତାମାନେ କୁଷ୍ଠ ରୋଗରୁ ଆରୋଗ୍ୟ ଲାଭ ନିମନ୍ତେ ଅଗସ୍ତି ଋଷିଙ୍କ ନିକଟରେ ପ୍ରାର୍ଥନା କଲେ । ଅଗସ୍ତି ଋଷି ସେମାନଙ୍କୁ ଅରଣ୍ୟରେ ତପସ୍ୟା କରିବା ପାଇଁ ପରାମର୍ଶ ଦେଲେ । ମାଘ ଶୁକ୍ଳ ସପ୍ତମୀ ତିଥିରେ ସୂର୍ଯ୍ୟ ଦେବ ଅଗ୍ନିକୋଣରେ ଉଦୟ ହୋଇଥାନ୍ତି । ତେଣୁ ଉକ୍ତ ଦିନ ଲକ୍ଷାଧିକ ଭକ୍ତ

ଚନ୍ଦ୍ରଭାଗା ନଦୀରେ ସ୍ନାନ କରି ସୂର୍ଯ୍ୟଦେବଙ୍କୁ ଦର୍ଶନ କରିଥାନ୍ତି ।

ଏହି ସ୍ଥାନରେ କୃଷ୍ଣଙ୍କ ପୁତ୍ର ଶାମ୍ବ ୧୨ ବର୍ଷ ତପସ୍ୟା କରି ପରିଶେଷରେ ସୂର୍ଯ୍ୟ ଦେବଙ୍କ ସୁଦୟାରୁ କୁଷ୍ଠ ରୋଗରୁ ଆରୋଗ୍ୟ ଲାଭ କରିଥିଲେ । ଶେତଗଙ୍ଗା, ମଣିକର୍ଣ୍ଣିକା, କୁଶଭଦ୍ରା, ଚନ୍ଦ୍ରଭାଗା ନଦୀ ଧୀର ସମୁଦ୍ରରେ ମିଶି ଥିବାରୁ ଏମାନେ ଗୁରୁତ୍ୱ ବହନ କରନ୍ତି ।

ମାଘ ସପ୍ତମୀ ତିଥିରେ ଦେବତାମାନେ ଆସି ଚନ୍ଦ୍ରଭାଗା ନଦୀରେ ମାଘସ୍ନାନ କରୁଥିବାର ବିଶ୍ୱାସ ଶ୍ରଦ୍ଧାଳୁମାନଙ୍କ ମନରେ ରହିଛି । ମାଘ ଶୁକ୍ଳ ଷଷ୍ଠୀ । ରାତ୍ରୀରେ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ହୁଏ । ସପ୍ତମୀରେ ମାଘ ସ୍ନାନ କରିବା ପାଇଁ ଭକ୍ତମାନେ ଚନ୍ଦ୍ରଭାଗା ମେଳା ପଡିଆରେ ଏକତ୍ରିତ ହୋଇ ରାତିସାରା ଉଜାଗର ରହିଥାନ୍ତି । ଶ୍ରଦ୍ଧାଳୁମାନେ ନଡିଆ କରଡା ଓ ବାଉଁଶରେ କୁଡିଆ ତିଆରି କରି ମାଟି ହାଣ୍ଡିରେ ଭାତ, ଡାଲେମା ରୋଷେଇ କରି ଭୋଜନ କରିସାରିବା ପରେ ମାଟି ହାଣ୍ଡିକୁ ଭାଙ୍ଗି ଦେଇଥାନ୍ତି । ଏହାପରେ ଚନ୍ଦ୍ରଭାଗା ତୀର୍ଥଜଳରେ ସ୍ନାନ କରିବା ପାଇଁ ଶ୍ରଦ୍ଧାଳୁମାନେ ଶୁଭ ମୁହୂର୍ତ୍ତକୁ ଅପେକ୍ଷା କରି ରହିଥାନ୍ତି । ଷଷ୍ଠୀ ରାତ୍ରିରେ ସ୍ଥାନୀୟ ମାଧିପୁର ଗ୍ରାମର ବାବା ତ୍ରିବେଣୀଶ୍ୱର, କରୁଜଙ୍ଗ ଗ୍ରାମର ବାବା ଦକ୍ଷିଣେଶ୍ୱର, ଓ ସନ୍ତପୁର ଗ୍ରାମର ବାବା ଇଷାଣେଶ୍ୱର ମହାଦେବଙ୍କ ଚଳନ୍ତି ପ୍ରତିମା ବିମାନରେ ବିଜେ କରିଥାନ୍ତି । ତିନି ଠାକୁର ଏକ ବିରାଟ ତୀର୍ଥମଣ୍ଡପରେ ବିଜେ ହୁଅନ୍ତି । ପାରମ୍ପରିକ ରୀତି, ନୀତି, ସମାପନ ପରେ ତିନିଠାକୁର ଶୁଭ ମୁହୂର୍ତ୍ତରେ ତୀର୍ଥଜଳରେ ସ୍ନାନ କରନ୍ତି । ପ୍ରଭାତରେ ଅପେକ୍ଷାରତ ଭକ୍ତମାନେ ସ୍ନାନ କରି ସୂର୍ଯ୍ୟଦେବଙ୍କୁ ଦର୍ଶନ କରନ୍ତି । ଗ୍ରହ ଶାନ୍ତି ନିମନ୍ତେ ଶ୍ରଦ୍ଧାଳୁମାନେ ଚନ୍ଦ୍ରଭାଗାରୁ ପାଦରେ ଚାଲିକରି ଆସି କୋଣାର୍କ ସ୍ଥିତ ନବଗ୍ରହଙ୍କ ନିକଟରେ ହୋମଯଜ୍ଞ ଓ ପୂଜାର୍ଚ୍ଚନା କରିଥାନ୍ତି । ରାତିସାରା ସାଂସ୍କୃତିକ କାର୍ଯ୍ୟକ୍ରମ ଶ୍ରଦ୍ଧାଳୁମାନଙ୍କ ନିମନ୍ତେ ଆୟୋଜିତ ହୋଇଥାଏ । କୋଣାର୍କରେ ମାଘ ସପ୍ତମୀର ଗୁରୁତ୍ୱ ସର୍ବାଧିକ ଅନୁଭୂତ ହୋଇଥାଏ । ଏହିଦିନ ସେଠାରେ ସୂର୍ଯ୍ୟ ଦେବଙ୍କ ରଥଯାତ୍ରା ବାହୁଡ଼ା ବିଜୟ ଆୟୋଜିତ ହୁଏ । ପ୍ରତିବର୍ଷ ଶାମ୍ବ ଦଶମୀ ଦିନ କୋଣାର୍କ ସ୍ଥିତ ଅବଧୂତ ମଠରୁ ଏହି ରଥଯାତ୍ରା ଆରମ୍ଭ ହୋଇଥାଏ । ସୂର୍ଯ୍ୟ ଦେବଙ୍କ ଚଳନ୍ତି ପ୍ରତିମା ସେହି ମଠର ଏକ ଶାଖା ଛୋଟା ରାମଦାସ ମଠକୁ ଯାଇ ସେଠାରେ ୨୭ଦିନ ଅବସ୍ଥାନ କରିଥାନ୍ତି ଏବଂ ସେଠାରେ ତାଙ୍କର ଚନ୍ଦ୍ରଭାଗା ଜଳରେ ଓ ୨୭ ନକ୍ଷତ୍ରରେ ପୂଜାପାଠ ଅନୁଷ୍ଠିତ ହୋଇଥାଏ । ସାରଳା ଦାସଙ୍କ ବିରଚିତ ମହାଭାରତର ବନପର୍ବରେ ଚନ୍ଦ୍ରଭାଗା ତୀର୍ଥର ଗରିମା, ଅର୍କକ୍ଷେତ୍ରର ନାମକରଣ ଓ ମାଘ ସପ୍ତମୀର ମହିମା ବର୍ଣ୍ଣିତ ଅଛି । ମହାଭାରତରେ ଉଲ୍ଲେଖ ଅଛି ଯେ ଏଠାରେ ମାଘ ସପ୍ତମୀ ତିଥିରେ ରାତି ଉଜାଗର ରହି ପ୍ରଭାତରେ ସ୍ନାନ, ଦାନ, ଧର୍ମ ଓ ସୂର୍ଯ୍ୟ ଦର୍ଶନ କଲେ ଅଶେଷ ପୁଣ୍ୟ ମିଳେ । ତେଣୁ ଉଲ୍ଲେଖ ଅଛି–

''ସପ୍ତମୀର ସ୍ନାନ, ଦାନ, ଧର୍ମ, ଯେହୁ କରେ
ତାହା ସମ ପୁଣ୍ୟାତ୍ମା କେହି ନାହିଁ ଏ ସଂସାରେ ।
କୋଣାର୍କ ବୋଲିଣ ଯେହୁ ଅଟେ ତୀର୍ଥଗୋଟି
ତାହାକୁ ସମାନ ନୁହେଁ ତୀର୍ଥ କୋଟି କୋଟି ।
କୋଟି କୋଟି ଗୋରୁ ଦାନ, କୋଟି ଅଶ୍ୱଗଜ
କୋଟି ଏକ କନ୍ୟା କୋଟି ଏକ ରାଜ୍ୟ ।
କୋଟି ପର୍ବତ ସମ ଦାନ ଦେଲେ ହୀରା
ତଥାପି ସମ ନ ହୋଇବ ଅର୍କତୀର୍ଥ ପରା'' ।

କୋଣାର୍କରେ ମାଘ ସପ୍ତମୀ ମେଳା ଓଡିଶାର ସାମାଜିକ, ଆଧ୍ୟାତ୍ମିକ ଓ ସାଂସ୍କୃତିକ ଚିନ୍ତାଧାରାରେ ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଆମ ପରମ୍ପରା, ଐତିହ୍ୟ ଓ ସାଂସ୍କୃତିକ ବିଭବକୁ ବୈଚିତ୍ର୍ୟମୟ କରି ଗଢି ତୋଳିବାରେ କୋଣାର୍କ ମାଘ ସପ୍ତମୀ ମେଳାର ଯୋଗଦାନ ଅତୀବ ଗୁରତ୍ୱପୂର୍ଣ୍ଣ, ଏହା ନିଃସନ୍ଦେହ । କୋଣାର୍କର ମାଘ ସପ୍ତମୀ ମେଳା ଆମ ସଂସ୍କୃତିର ପରିଚୟ ଓ ମହାନ୍ ଓଡିଆ ଜାତିର ଗର୍ବ ଓ ଗୌରବ ।

---

ଅଧ୍ୟାପକ, ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା

# ଭୁବନେଶ୍ୱର ବେହେରାଙ୍କ ଗଳ୍ପରେ ଆଦିବାସୀ ପ୍ରସଙ୍ଗ : ଏକ ଅନୁଶୀଳନ

ଗୁପ୍ତେଶ୍ୱର ମାଝୀ
ଡକ୍ଟର ରଶ୍ମିତା ତ୍ରିପାଠୀ

ଓଡ଼ିଆ ସାହିତ୍ୟ ଜଗତର ଜଣେ ଅନନ୍ୟ ପ୍ରତିଭା ସଂପନ୍ନ ଗାଳ୍ପିକ ଭାବରେ ଭୁବନେଶ୍ୱର ବେହେରାଙ୍କ ନାମ ସୁପରିଚିତ । ସେ କେବଳ ଜଣେ ଗାଳ୍ପିକ ନୁହଁନ୍ତି ଏକାଧାରରେ ପ୍ରାବନ୍ଧିକ, ରମ୍ୟରଚୟିତା, ଭ୍ରମଣ ସାହିତ୍ୟ ଲେଖକ । ଗାଳ୍ପିକ କଳାହାଣ୍ଡି ଜିଲ୍ଲାର କାଶିବାହାଲ ଗ୍ରାମରେ ପିତା ଲକ୍ଷ୍ମଣ ବେହେରା ଏବଂ ମାତା ମୋହନ ପ୍ରିୟା ଦେବୀଙ୍କ କୋଳମଣ୍ଡନ କରି ୧୯୧୬ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ଇଞ୍ଜିନିୟର ଭାବରେ ଖ୍ୟାତି ଅର୍ଜନ କରିଥିଲେ । ଏହାବ୍ୟତୀତ ସେ ବୁର୍ଲା ଓ ରାଉରକେଲା ଇଞ୍ଜିନିୟରିଙ୍ଗ କଲେଜରେ ମଧ୍ୟ ଅଧ୍ୟାପକ ଭାବରେ କାର୍ଯ୍ୟ ନିର୍ବାହ କରିଥିଲେ । ସେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ କିଛି କାଳ କୁଳପତି ଭାବରେ କାର୍ଯ୍ୟ ତୁଲାଇଥିଲେ । ଏହି ସମୟରେ ତାଙ୍କ ଦ୍ୱାରା ସାହିତ୍ୟ ପତ୍ରିକା 'ସପ୍ତର୍ଷି' ପ୍ରତିଷ୍ଠା ଲାଭ କରିଥିଲା । ସେ ୧୯୭୭ ମସିହାର ଶ୍ରେଷ୍ଠ ସମାଲୋଚନା ପ୍ରବନ୍ଧ 'ଶୁଣ ପରୀକ୍ଷ' ପାଇଁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ପୁରସ୍କାର ପ୍ରାପ୍ତ ଏବଂ 'ଗାଁର ଡାକ' ଉପନ୍ୟାସ ପାଇଁ ୧୯୯୪ ମସିହାରେ ସାରଳା ପୁରସ୍କାର ପାଇଥିଲେ । ତାଙ୍କ ଦ୍ୱାରା ରଚିତ ଗଳ୍ପଗୁଡ଼ିକ ହେଉଛି – ମିଶ୍ରବାବୁଙ୍କ କୁକ୍କୁଟ ପାଳନ, ରୋମନ୍ଥନ, କହିଲେ କୁଳକୁ ଲାଜ, ଆନ୍‌ସାରୀ ଚାଚା, ଚିଠି ମିଳିଛି, ବିଶ୍ୱାସେ ମିଳଇ ହରି, ମିଶ୍ରବାବୁଙ୍କ ଆଲ୍‌ସେସିଆନ ଇତ୍ୟାଦି । ଏହା ବ୍ୟତୀତ ସେ ଆଦିବାସୀମାନଙ୍କ ସଂସ୍କୃତି ଓ ପରମ୍ପରା ତଥା ଜୀବନଶୈଳୀ ଆଦିକୁ କେନ୍ଦ୍ରକରି ଅନେକଗୁଡ଼ିଏ ଗଳ୍ପ ରଚନା କରିଥିବା ଦେଖିବାକୁ ମିଳିଥାଏ । ସେହି ଆଦିବାସୀ ଗଳ୍ପଗୁଡ଼ିକ ହେଉଛି – 'ନାଚେ ବେନୁଆଁ ନାଚେ', 'ଡୁକାକନ୍ଧ', 'ଫର୍ ଫର୍ ଉଡ଼େ ପଣତକାନି', 'ବିଲେଇ', 'ଚିତ୍ରି ଓ ତାର ପୁଷ୍ ପରବ' ଇତ୍ୟାଦି ।

**ଅର୍ଥନୈତିକ ଅବସ୍ଥା**

ସାଧାରଣତଃ ଆଦିବାସୀ ସମାଜରେ ଅନେକ ମାତ୍ରାରେ ଅର୍ଥନୈତିକ ସମସ୍ୟା ଦେଖିବାକୁ ମିଳିଥାଏ । ଯେମିତି ସେମାନଙ୍କ ଜୀବନଧାରଣ ନିମନ୍ତେ, ଋଣ ପରିଶୋଧ ଇତ୍ୟାଦି । ଠିକ୍ ତାହାର ବାସ୍ତବ ଚିତ୍ର ପ୍ରତିଫଳିତ ହୋଇଥାଏ ଗାଳ୍ପିକଙ୍କ 'ନାଚେ ବେନୁଆଁ ନାଚେ' ଗଳ୍ପରେ । ଏହି ଗଳ୍ପର ମୁଖ୍ୟ ଚରିତ୍ର ହେଉଛନ୍ତି ସୋମବାରୁ । ଗାଳ୍ପିକ ବେନୁଆଁ ଶବ୍ଦକୁ ମାଙ୍କଡ଼ ଅର୍ଥରେ ବ୍ୟବହାର କରିଛନ୍ତି । ସୋମବାରୁ ଦିନେ ହୀରାକୁଦ ବନ୍ଧରେ କୁଲି କାମ କରି ପରିବାରକୁ ଠିକ୍ ଭାବରେ ଦୁଇ ମୁଠା ଖାଦ୍ୟ ଯୋଗାଇପାରୁଥିଲା । କିନ୍ତୁ କାଳର କରାଳ ଗତିରେ ଯେମିତି ସଂସାରରେ ଧନଜନ ଓ ଯୌବନ ସର୍ବଦା ଚିରସ୍ଥାୟୀ ନୁହେଁ । ସେହିଭଳି ସୋମବାରୁ ଧୀରେ ଧୀରେ ବୃଦ୍ଧା ଅବସ୍ଥାରେ ଉପନୀତ ହୋଇଛି । ସେ ପୂର୍ବପରି ଆଉ କାମ କରିବା ପାଇଁ ଯାଇପାରି ନାହିଁ । ସୋମବାରୁର ପରିବାର କହିଲେ ତା'ର ସ୍ତ୍ରୀ, ଗୋଟିଏ ଅନ୍ଧ ପିଲା । କିନ୍ତୁ ପରିବାରର ଜୀବନ ବଂଚାଇବା ପାଇଁ ଯେମିତି ହେଲେ ଦୁଇ ମୁଠା ଖାଦ୍ୟ ଆବଶ୍ୟକ । ତେଣୁ ସେ ବୟସ ପାଖରେ ହାର ନ ମାନି ଗୋଟିଏ ମାଙ୍କଡ଼ କିଣି, ମାଙ୍କଡ଼କୁ ନାଚ ଶିଖାଇ, ଗାଁ ଗାଁ ବୁଲି ନାଚ ଦେଖାଇଛି । ଯିଏ ଯାହା ଦେଇଛି ତାହାକୁ ନେଇ ପରିବାର ପୋଷିଛି । କେବେହେଲେ

କାହାକୁ ହାତପାତି ଭିକ୍ଷା ମାଗିନାହାଁନ୍ତି । ଏହିପରି ଦିନ ଅତିବାହିତ କରୁଥିବା ସମୟରେ ହଠାତ୍ ନାଚ କରୁଥିବା ମାଙ୍କଡ଼ ମୃତ୍ୟୁବରଣ କରିଛି । ତା' ପାଇଁ ଆଉ ଏକ ବିରାଟ ବିପଦର ପାହାଡ଼ ଛିଡ଼ା ହୋଇଯାଇଛି । ଯାହାକୁ ନଚେଇ ପରିବାରକୁ ପୋଷୁଥିଲା, ସେ ମରିଗଲା ପରେ ପରିବାରକୁ ଦୁଇ ମୁଠା ଖାଦ୍ୟ ଦେଇପାରି ନାହିଁ । ଏହି ଅବସ୍ଥା ଦେଖି ନିଜ ଭାଇର ପୁଅ ତାଙ୍କୁ ମାଙ୍କଡ଼ ଗୋଟିଏ କିଣି ଦେଇଛନ୍ତି । ଏହାବ୍ୟତୀତ ଏହି ଗଳ୍ପରେ ଗାଳ୍ପିକ ସୋମବାରୁର ଅର୍ଥନୈତିକ ଅବସ୍ଥାକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ତା' ସ୍ତ୍ରୀ ରୋଗରେ ଖଟରେ ପଡିଥିବାର ଚିତ୍ରକୁ ଅଙ୍କନ କରିଛନ୍ତି ।

ଗାଳ୍ପିକ ଭୁବନେଶ୍ୱର ବେହେରାଙ୍କ ଦ୍ୱାରା ରଚିତ ଅନ୍ୟ ଏକ ଆଦିବାସୀ ଗଳ୍ପ ହେଉଛି 'ଫର୍ ଫର୍ ଉଡ଼େ ପଣତକାନି' । ଏହି ଗଳ୍ପର ଆଦିବାସୀ ମୁଖ୍ୟ ଚରିତ୍ର ହେଉଛନ୍ତି କଳାହାଣ୍ଡି ଜିଲ୍ଲାର ସୁନାଡଙ୍ଗ୍ରି ଗ୍ରାମର ଆଦିବାସୀ ଶବର ଦମ୍ପତି ଟୁଲୁ ଓ ଭଏଁରୀ । ଏହି ଗଳ୍ପରେ ଗାଳ୍ପିକ ବେହେରା ଶବର ଆସିବାସୀ ଚରିତ୍ର ଟୁଲୁର ଅର୍ଥନୈତିକ ଅବସ୍ଥାକୁ ସୁନ୍ଦର ଭାବରେ ବର୍ଣ୍ଣନା କରିଥିବା ଚିତ୍ର ଦେଖିବାକୁ ମିଳିଥାଏ । ତାହାର ବାସ୍ତବ ଉଦାହରଣ ହେଉଛି – ଗୋଟିଏ ଝୋଲା ଖଟରେ, ଗାମୁଛା ଖଣ୍ଡିଏ ଦେଇ ଶୋଇଥିବା ଚିତ୍ରକୁ ବର୍ଣ୍ଣନା କରିଛନ୍ତି । ଏହାବ୍ୟତୀତ ଟୁଲୁର କମ୍ ଜମି ଥିବାରୁ ଚାଷକରି ପରିବାରକୁ ପେଟ ପାଇଁ ଖାଦ୍ୟ ମୁଠାଏ, ରଥଯାତ୍ରା ଓ ନୂଆଖାଇ ଆଦି ପର୍ବପର୍ବାଣିରେ ଖଣ୍ଡିଏ ଲେଖାଏଁ ବସ୍ତ୍ର ଏବଂ ମହାଜନର ଋଣ ପରିଶୋଧ ନିମନ୍ତେ ସମ୍ଭବ ନ ହେବାରୁ ସ୍ୱାମୀ ଓ ସ୍ତ୍ରୀ ଘରଛାଡ଼ି ନବରଙ୍ଗପୁର କାମ କରିଯାଇଥିବା ଦୃଶ୍ୟକୁ ଅଙ୍କନ କରିଛନ୍ତି ।

**ଶୋଷଣ ସମସ୍ୟା**

ଆଦିବାସୀମାନଙ୍କୁ ସଭ୍ୟ ସମାଜର କିଛି ଶିକ୍ଷିତ ବ୍ୟକ୍ତିମାନେ ବିଭିନ୍ନ ପ୍ରଲୋଭନ ଦେଖାଇ ଶୋଷଣ କରିବାକୁ ପଛାଇ ନଥାନ୍ତି । କିନ୍ତୁ ସରଳ, ନିରୀହ ଆଦିବାସୀମାନେ ଏହାର ପ୍ରତିବାଦ କରନ୍ତି ନାହିଁ । ଠିକ୍ ତାହାର ବାସ୍ତବ ଚିତ୍ର ଗାଳ୍ପିକ ଭୁବନେଶ୍ୱର ବେହେରାଙ୍କ 'ଫର୍ ଫର୍ ଉଡ଼େ ପଣତକାନି' ଗଳ୍ପରେ ଦେଖିବାକୁ ମିଳିଥାଏ । ଏହି ଗଳ୍ପରେ ଆଦିବାସୀ ନାରୀ ଭଏଁରୀର ଯୌବନ ପ୍ରତି ଆକର୍ଷିତ ହୋଇ କିପରି ସଭ୍ୟ ସମାଜର ଶିକ୍ଷିତ ମଣିଷ ସର୍ଦ୍ଦାର ଖରାପ ଦୃଷ୍ଟିରେ ଦେଖିଛି ତାହାର ଚିତ୍ର ବର୍ଣ୍ଣନା କରିଛନ୍ତି । ଯେତେବେଳେ ସର୍ଦ୍ଦାର ଭଏଁରୀକୁ ସଞ୍ଜବେଳେ ଠିକାଦାର ବାବୁଙ୍କ ଘରେ ଏକ, ଦୁଇ ଘଣ୍ଟା କାମ କରିଦେବା ପାଇଁ କହିବାର ଘଟଣାକୁ ବର୍ଣ୍ଣନା କରିଥିବା ଦୃଶ୍ୟରୁ ଜାଣିବାକୁ ମିଳିଥାଏ । ଏହାବ୍ୟତୀତ ଏହି ଗଳ୍ପରେ ମଧ୍ୟ ସଭ୍ୟ ସମାଜର କପଡ଼ା ଦୋକାନୀ ରାମହରି ଶେଠ୍ ଦ୍ୱାରା କିପରି ସରଳ, ନିରୀହ ଶବର ଆଦିବାସୀ ଟୁଲୁ ଶୋଷଣ ଶିକାର ହୋଇଛନ୍ତି, ତାହାର ବାସ୍ତବ ଚିତ୍ର ଦେଖିବାକୁ ମିଳିଥାଏ ।

**ପ୍ରେମ ବା ଭଲ ପାଇବା**

ଆସିବାସୀ ସମାଜରେ ସ୍ୱାମୀ ସ୍ତ୍ରୀମାନେ ଦୁହେଁ ଦୁହିଁଙ୍କୁ ଅନେକ ଭଲ ପାଇଥାନ୍ତି । ତାଙ୍କ ଭିତରେ ରାଗ, ଈର୍ଷା, ଦ୍ୱେଷ ନ ଥାଏ କେବଳ ନିଷ୍କାମ ପ୍ରେମ ହିଁ ଦେଖିବାକୁ ମିଳିଥାଏ । ଠିକ୍ ତାହାର ବାସ୍ତବ ଚିତ୍ର ଗାଳ୍ପିକଙ୍କ 'ଫର୍ ଫର୍ ଉଡ଼େ ପଣତକାନି' ଗଳ୍ପରେ ପ୍ରତିଫଳିତ ହୋଇଥିବା ଦେଖିବାକୁ ମିଳିଥାଏ । ଯେତେବେଳେ ଟୁଲୁ, ସ୍ତ୍ରୀ ଭଏଁରୀକୁ ଶାଢ଼ିଖଣ୍ଡେ ଆଣିଦେବା ପାଇଁ ସୁନାଡଙ୍ଗ୍ରି ଗାଁରୁ ଅନେକ ଦୂରରେ ଅବସ୍ଥିତ ଭବାନୀପାଟଣା ସହର ହେଲେ ମଧ୍ୟ ସେ ବହୁ କଷ୍ଟରେ ଯାଇ ଶାଢ଼ି ଆଣିଥିବାର ଦୃଶ୍ୟରୁ ଜାଣିବାକୁ ମିଳିଥାଏ । ଏହା ସହିତ ଭଏଁରୀର ତା' ସ୍ୱାମୀ ପ୍ରତି ଥିବା ଭଲ ପାଇବାର ଚିତ୍ରକୁ ସୁନ୍ଦର ଭାବରେ ଅଙ୍କନ କରିଛନ୍ତି । ଯେତେବେଳେ ସ୍ୱାମୀ ଭାବନୀପାଟଣା ଯିବାକୁ ବାହାରିଛନ୍ତି । ସେହି ସମୟରେ ଗାଳ୍ପିକଙ୍କ ଭଏଁରୀ ଚରିତ୍ର ମାଧ୍ୟମରେ ପ୍ରକାଶ କରିଛନ୍ତି – 'ଚାଉଳ ବି ସେରେ, ଶୁଖୁଆ କିଛି, ଦି'ଚାରିଟା ବଡ଼ି, ଦି' ଚାରିଟା ପିଆଜ, ଲୁଣ ଟିକିଏ, ଆଉ ମରିଚ ଦି'ଟା' । ସେ ସିଲଭର୍ ଡେକ୍ଚିରେ ସବୁଯାକ ଭର୍ତ୍ତି କରିଦେବ ଟଙ୍କା ବି – ଆଉ ସବୁକୁ ଗାମୁଛା କାନିରେ ଭଲକରି ବାନ୍ଧିଦେବ ଯେ କେଉଁଠି ପଡ଼ିବା ଡର ନଥିବ, ନା ଥିବ ହଜିବାର' । ତେଣୁ ନିସଃନ୍ଦେହରେ ପ୍ରମାଣିତ ହୋଇଥାଏ ଯେ ଆଦିବାସୀ

ସ୍ୱାମୀ ସ୍ତ୍ରୀମାନେ ଦୁହେଁ ଦୁହିଁଙ୍କୁ ଅନେକ ମାତ୍ରାରେ ଭଲ ପାଉଥିବା ।

**କନ୍ୟାପଣ**

ଓଡ଼ିଶାରେ ବାଷଠି ପ୍ରକାର ଆଦିବାସୀ ବସବାସ କରନ୍ତି । କିଛି ଆଦିବାସୀ ସମାଜରେ ରୀତିନୀତି ଅଛି ଯେ ବିବାହ କରିବାକୁ ହେଲେ ବର ପିତା ବା ବର କନ୍ୟାପିତାକୁ କନ୍ୟାପଣ ଦେଲେ ପରେ ଯାଇ ବିବାହ ହୋଇଥାଏ । ତାହାର ବାସ୍ତବ ଚିତ୍ର ଗାଳ୍ପିକଙ୍କ 'ଡୁକାକନ୍ଧ' ଗଳ୍ପରେ ଦେଖିବାକୁ ମିଳିଥାଏ । ଯେତେବେଳେ ସୁନା ଗୌତିଆ ଘରକୁ ଯାଇ ଖଟୁଲୁ ମାଝୀ କହିଛି ମୁଁ ତୁମ ଝିଅ ରୁଖକୁ ପସନ୍ଦ କରୁଛି ବିବାହ କରିବି ବୋଲି । ଏହାକଥା ଶୁଣିବା ପରେ ଗୌତିଆ ଖୁସି ହେଲେ । କହିଲେ ତୁ ଯଦି ଘରଜ୍ୱାଇଁ ହୋଇ ରହିବୁ, ତା' ହେଲେ ମୋ ଝିଅକୁ ଦେବି ବୋଲି । କିନ୍ତୁ ସୁନା ଏ କଥାରେ ସମ୍ମତି ପ୍ରକାଶ କଲାନାହିଁ । ଏହାପରେ ଗୌତିଆ କହିଛନ୍ତି । ଗାଳ୍ପିକଙ୍କ ଭାଷାରେ – 'ଦୁଇ ଭରି ସୁନା, ହଳେ ମଇଁଷି, ହଳେ ବଳଦ, ଦି'ଟା ଶଗଡ, ଦି'ପସ୍ତମା ଚାଉଳ, ମୁଗ ଦଶ ମାଣ, ଛେଳି ବୋଦା ଦଶଟା, ମଦ ଦଶହାଣ୍ଡି । ଏସବୁ ଦେଖାଇଲେ ଯାଇ ଏଥର ରୁଖର ହାତ ଛୁଇଁବୁ' । ଏହି ଗଳ୍ପରେ ଗାଳ୍ପିକ ବେହେରା ସୁନା ଓ ଗୌତିଆ ଖଟୁଲୁ  ଚରିତ୍ର ମାଧ୍ୟମରେ କନ୍ଧ ଆଦିବାସୀମାନଙ୍କ ସମାଜରେ ଥିବା ଘରଜ୍ୱାଇଁ ପ୍ରଥା ଏବଂ ଝୋଲାଟଙ୍କା ବା କନ୍ୟାପଣ ନିୟମକୁ ସୁନ୍ଦର ଭାବରେ ଆଲୋଚନା କରିଛନ୍ତି ।

ଭୁବନେଶ୍ୱର ବେହେରାଙ୍କ ଅନ୍ୟ ଏକ ଆଦିବାସୀ ଗଳ୍ପର ନାମ ହେଉଛି 'ବିଲେଇ' । ଏହି ଗଳ୍ପରେ ଗାଳ୍ପିକ ଆଦିବାସୀ ସମାଜରେ ଥିବା ପଣ ବା କନ୍ୟାଝୋଲା ନୀତି, ନିୟମକୁ ସୁନ୍ଦର ଭାବରେ ଆଲୋଚନା କରିଛନ୍ତି ଟୁଲୁ ନାମକ ଆଦିବାସୀ ଚରିତ୍ର ମାଧ୍ୟମରେ । ଯେତେବେଳେ ଟୁଲୁର ଝିଅ ବିଲେଇ ମୁଣ୍ଡରେ ଜଣେ ଆଦିବାସୀ ଯୁବକ ହଳଦି ପାଣି ଢାଳି ଦେଇ, ସାତ ଦିନପରେ ବିବାହ କରିବା ପାଇଁ ଟୁଲୁ ଘରକୁ ଆସିଛି । ସେତେବେଳେ ଟୁଲୁ କହିଛି, ବିଲେଇକୁ ବିବାହ କରିବାକୁ ହେଲେ ଛଅଶହ ପଣ ଦିଅ ନ ହେଲେ ବିଲେଇକୁ ବିବାହ କରିପାରିବ ନାହିଁ ବୋଲି । ଶେଷରେ ସେ ପାଂଚଶହ ଟଙ୍କା ନେଇ ବିଲେଇକୁ ବିବାହ କରିଦିଏ । ଏହାବ୍ୟତୀତ ବିଲେଇ ଯେତେବେଳେ ମଦୁଆ ସ୍ୱାମୀକୁ ଛାଡ଼ି ଆସିଛି । ତା' ପରେ ବିଲେଇ ପାଇଁ ଦ୍ୱିତୀୟ ଥର ବିବାହ ପ୍ରସ୍ତାବ ଆସିବାରୁ ଟୁଲୁ ୧୫୦ ଟଙ୍କା ପଣ ନେଇ ବିବାହ ଦେବା ପାଇଁ ସମ୍ମତି ପ୍ରକାଶ କରିଛନ୍ତି ।

**ବିବାହ**

ଆଦିବାସୀ ସମାଜରେ ଅନେକ ପ୍ରକାର ବିବାହ ଦେଖିବାକୁ ମିଳିଥାଏ । ଯଥା– ୧. ପ୍ରସ୍ତାବ ପଡ଼ି ବିବାହ ୨. ଉଦୁଲିଆ ବିବାହ ୩. ବିଧବା ବିବାହ ୪. କନ୍ୟାଝିକା ବିବାହ ୫. ଛାଣ୍ଡରୀ ବିବାହ (ଯେଉଁନାରୀ ସ୍ୱାମୀକୁ ଛାଡ଼ିଦେଇ ଅନ୍ୟ ଏକ ଯୁବକଙ୍କୁ ବିବାହ ହୋଇଥାଏ ) । ସେହିଭଳି ଏହି ଗଳ୍ପରେ ଗାଳ୍ପିକ ବିଲେଇ ଚରିତ୍ର ମାଧ୍ୟମରେ ଏକାଧିକ ବିବାହ କରିବାର ଚିତ୍ରକୁ ଉଲ୍ଲେଖ କରିଛନ୍ତି । ବିଲେଇ ପ୍ରଥମେ ପ୍ରସ୍ତାବ ପଡ଼ି ବିବାହ କରିଥିଲା । ସ୍ୱାମୀ ମଦୁଆ ହେବାରୁ ସ୍ୱାମୀକୁ ଛାଡି ବାପା ଘରକୁ ପଳାଇ ଆସିଥିଲା । ଆସିବାସୀ ସମାଜରେ ସ୍ତ୍ରୀ ଯଦି ସ୍ୱାମୀକୁ ଛାଡି ବାପା ଘରକୁ ପଳାଇ ଆସିଥାଏ, ତା' ହେଲେ ସେହି ସ୍ତ୍ରୀକୁ ଛାଣ୍ଡରୀ ବୋଲି କହିଥାନ୍ତି । ସେମିତି ଛାଣ୍ଡରୀ ହୋଇଛି ବିଲେଇ । ଆଦିବାସୀ ସମାଜରେ ଛାଣ୍ଡରୀ ହେବା ପରେ ଦ୍ୱିତୀୟ ବିବାହ କରିବାକୁ ସମ୍ମତି ଦେଇଥାନ୍ତି । ତେଣୁ ବିଲେଇକୁ ଦ୍ୱିତୀୟ ଥର ବିବାହ ପ୍ରସ୍ତାବ ଆସିବାରୁ ଟୁଲୁ ୧୫୦ ଟଙ୍କା ପଣ ନେଇ ବିବାହ ଦେଇଛି । ବିଲେଇର ଦ୍ୱିତୀୟ ବର ସହିତ ଭଲରେ ଜୀବନଯାପନ କରୁଥିଲା । କିନ୍ତୁ ତା' ସୁଖର ପରିବାର ମଧ୍ୟରେ କଳା ବାଦଲ ଛାଇଗଲା ପରି ଗୋଟିଏ ଅଜଣା ରୋଗରେ ହଠାତ୍ ତା' ସ୍ୱାମୀ ମୃତ୍ୟୁବରଣ କରିଛି । ତା' ପରେ ତିନି ବର୍ଷର ଝିଅଟିକୁ ଧରି ପଳାଇଆସିଲା ବାପା ଘର ରତନପଲାକୁ । କୁଲି ମଜୁରି କରି ବାପା ଘରେ ରହି ଜୀବନ ଅତିବାହିତ କରୁଥିଲା । ବାପା ଟୁଲୁ,  ବିଲେଇକୁ ଯିଏ ବିବାହ କରିବାକୁ ଆସିବ ତାକୁ ଏଥର ବିଲେଇକୁ ନ ପଚାରି ଦେଇଦେବା ପାଇଁ ଚାହିଁଥିଲା । କିନ୍ତୁ ଭାଗ୍ୟ ଭଲ ଯେ ବିଲେଇକୁ ବିବାହ କରିବା ପାଇଁ ଗୋଟିଏ ଭଲ ପାତ୍ର ଆସିଲା । ବିଲେଇ

ତୃତୀୟ ସ୍ୱାମୀ ରାମୁକୁ ନେଇ ସୁଖରେ ଜୀବନ କାଟୁଥଲା । କିନ୍ତୁ ତା'ର ସ୍ୱାମୀ ସାପ କାମୁଡ଼ାରେ ମୃତ୍ୟୁବରଣ କରିଛି । ତେଣୁ ଏହି ଗଳ୍ପ ମାଧ୍ୟମରେ ଆଦିବାସୀ ସମାଜରେ ଜଣେ ନାରୀ ଏକାଧିକ ଥର ବିବାହ କରୁଥିବା ସମ୍ପର୍କରେ ଜାଣିବାକୁ ମିଳିଥାଏ ।

### ଯୌତୁକ

ସାମ୍ପ୍ରତିକ ଆଦିବାସୀ ସମାଜରେ ଝିଅକୁ ବିବାହ ଦେଲେ ଝିଅକୁ ଯୌତୁକ ଦେଉଥିବା ଦେଖିବାକୁ ମିଳିଥାଏ । ତାହାର ବାସ୍ତବ ପ୍ରତିଛବି ଗାଳ୍ପିକଙ୍କ 'ବିଲେଇ' ଗଳ୍ପରେ ଦେଖିବାକୁ ମିଳିଥାଏ । ଗାଳ୍ପିକଙ୍କ ଭାଷାରେ – 'ଟୁଲୁ, ବିଲେଇର ନାକରେ ଦୁଇଅଣି ସୁନାର ଗୋଟିଏ ଫାସିଆ ମୁଦି ପିନ୍ଧାଇ ଦେଇଥିଲା । ଆଉ ଯୌତୁକ ଦେଇଥିଲା ଦୁଇଖଣ୍ଡ ନୂଆ ଶାଢ଼ି, ଖଣ୍ଡିଏ କଂସାଥାଳି, କଂସା ଖୁରି, ଆଲୁମିନିୟମର ଡେକ୍‌ଚିଟିଏ, ଗଡୁ ଓ ଗିଲାସ ସାଙ୍ଗକୁ ଦୁଇଟା ଗିନା । ନାଲି ରିବନ ଦି'ହାତ, ଟଙ୍କାବସା ପିତଳ ମୁଦି, ପୋହଳା କଣ୍ଠିର ହାର ଆଉ କଳା ମାଳି ସାଙ୍ଗକୁ ମଜାଘଷା ପାଇଁ ସାବୁନଟିଏ ବି ବାଉଁଶ ପେଡ଼ିରେ ଭରିଦେଇଥିଲା ବିଲେଇର ମା' ।' ତେଣୁ ଏଠାରେ ଜାଣିବାକୁ ମିଳିଥାଏ ଯେ ଆଦିବାସୀ ସମାଜରେ ମଧ୍ୟ ବିବାହରେ ଝିଅକୁ ଯୌତୁକ ଦେଉଥିବାର ଚିତ୍ର ।

ଗାଳ୍ପିକ ଭୁବନେଶ୍ୱର ବେହେରାଙ୍କ ଦ୍ୱାରା ରଚିତ ଗଳ୍ପମାନଙ୍କୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଆଦିବାସୀ ସମାଜର ଅର୍ଥନୈତିକ ଅବସ୍ଥା, ପ୍ରେମ ବା ଭଲ ପାଇବା, ଶୋଷଣ ସମସ୍ୟା, କନ୍ୟାପଣ, ଯୌତୁକ ଏବଂ ବିବାହର ଇତ୍ୟାଦି ଚିତ୍ର ।

### ପାଦଟୀକା

୧. ସମ୍ପାଦନା– ମିଶ୍ର, ଯଶୋଧାରା, 'ଭୁବନେଶ୍ୱର ବେହେରାଙ୍କ ଶ୍ରେଷ୍ଠ ଗଳ୍ପ', ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ନେହେରୁ ଭବନ, ନୂଆଦିଲ୍ଲୀ, ପ୍ରଥମ ସଂସ୍କରଣ – ୨୦୧୬ । ପୃଷ୍ଠା – ୫୭ ।

୨. ତତ୍ରୈବ, ପୃଷ୍ଠା – ୧୮୧ ।

୩. ତତ୍ରୈବ, ପୃଷ୍ଠା – ୨୧୦ ।

### ସହାୟକ ଗ୍ରନ୍ଥସୂଚୀ

'ପାଣ୍ଡିଆ, ଡକ୍ଟର ଦେବାଶିଷ, 'ଓଡ଼ିଆ କ୍ଷୁଦ୍ରଗଳ୍ପ ଓ ଗାଳ୍ପିକ ଭୁବନେଶ୍ୱର ବେହେରା', କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର ବାଲୁବଜାର, କଟକ, ପ୍ରଥମ ସଂସ୍କରଣ – ୨୦୧୮ ।

ବସନ୍ତ କୁମାର ସାମଲ, 'ଓଡ଼ିଆ କ୍ଷୁଦ୍ରଗଳ୍ପରେ ଆଦିବାସୀ ଚିତ୍ର ଓ ଚରିତ୍ର' ଗବେଷଣା ସନ୍ଦର୍ଭ ।

ଗବେଷକ (ଓଡ଼ିଆ ବିଭାଗ)
କିଟ୍, ( କିସ୍ ) ମାନିତ୍ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# ପର୍ଯ୍ୟଟନ ସ୍ଥଳୀର ଭୂସ୍ୱର୍ଗ : କୋରାପୁଟ

ଡକ୍ଟର ପ୍ରମୋଦିନୀ ହୋତା

ଅପରୂପା ଅମରାବତୀର ଗନ୍ତାଘର ଭୂସ୍ୱର୍ଗ କୋରାପୁଟ ଜିଲ୍ଲାର ନିଘଞ୍ଚ ଜଙ୍ଗଲ, ଭୀମ ପରି ଘେରା ପାହାଡ଼ ପର୍ବତମାଳା, ଅଙ୍କାବଙ୍କା ରାସ୍ତା, ସ୍ୱଚ୍ଛ ହୀରକ ବର୍ଣ୍ଣର ଜଳରାଶି, ପାହାଡ଼ ଶିଖରକୁ ଛୁଇଁ ଯାଉଥିବା ଚଳମାନ ମେଘଖଣ୍ଡ, ଅଳସୀ ଫୁଲର ସମ୍ଭାର, ଯେଉଁଠି ଆଦିବାସୀର ଚାଙ୍ଗୁ, ବଇଁଶୀ, ମାଦଳର ତାଳେ ତାଳେ ପ୍ରକୃତିରାଣୀ ଆନମନା ହୋଇଉଠେ । ଚିର ସବୁଜିମା ଏହି ମାଟିରେ ବାସ କରନ୍ତି ଜନଜାତି । ସରଳ ବିଶ୍ୱାସ, ସତ୍ୟନିଷ୍ଠ ଭାବ, ଯାହା ଏ ଭୂମିର ପ୍ରକୃତି ପରିବେଶ ଓ ଈଶ୍ୱରୀୟ ସତ୍ତାକୁ ସ୍ପଷ୍ଟ ଚିନ୍ତା ଚେତନାର ଆଧାର ଉପରେ ପ୍ରତିଷ୍ଠିତ ଜୈନ, ଶାକ୍ତ, ଶୈବ, ବୈଷ୍ଣବ, ଦେବଦେବୀ ପୀଠ ଅନେକ ପୌରାଣିକ କଥାବସ୍ତୁର ସମାରୋହ ।

ପୂର୍ବଘାଟ ପର୍ବତମାଳା ସର୍ପିଳ ଗତିରେ କୋରାପୁଟର ସୁଙ୍କି, ଚନ୍ଦ୍ରଗିରି ବନ ପାହାଡ଼ରେ ପ୍ରଥମେ ପର୍ଯ୍ୟଟକକୁ ସ୍ୱାଗତ କରିଥାଏ । ଅଳସୀ ଫୁଲ କ୍ଷେତ, ପାହାଡ଼ି ଲଳନାର ଢ଼େମସା, ସାଇଲୋଡ଼ି ଗୀତରେ ପର୍ଯ୍ୟଟକ ବିମୋହିତ ହୋଇ ନିଜକୁ ଭୁଲିଯାଏ । ପର୍ଯ୍ୟଟନର ମାନଚିତ୍ରରେ କୋରାପୁଟର ସ୍ଥାନ ସ୍ୱତନ୍ତ୍ର । ଏଠାରେ ରହିଛି ଡୁଡୁମା, ରାଣୀ ଡୁଡୁମା, ପୁଞ୍ଜିଶିଲ ଭଳି ଜଳପ୍ରପାତ । ସୌନ୍ଦର୍ଯ୍ୟର ରାଣୀ ଦେଓମାଳୀ ପର୍ଯ୍ୟଟକକୁ ସ୍ୱାଗତ ଜଣାଏ । ଜଙ୍ଗଲୀ ଫୁଲ ଓ ଅଳସୀ କ୍ଷେତର ହଳଦି ପାଟ ପିନ୍ଧି, ଗୁପ୍ତେଶ୍ୱର ଶୈବ ପୀଠର ଶାବରୀ ନଦୀ ପର୍ଯ୍ୟଟକର ପାଦ ଧୋଇଦିଏ । ଶାବର ଶ୍ରୀକ୍ଷେତ୍ର ପର୍ଯ୍ୟଟକକୁ ସର୍ବ ଧର୍ମର ବାଣୀ ଶୁଣାଏ । କୋଟିଲା ଓ କୋଲାବ ଜଳଭଣ୍ଡାର ପର୍ଯ୍ୟଟକମାନଙ୍କର ମନରେ ଡାଲ୍ ହ୍ରଦର ଭ୍ରମ ସୃଷ୍ଟି କରେ । ସୌନ୍ଦର୍ଯ୍ୟର ରାଣୀ କୋରାପୁଟର ଅଭୁଲାସ୍ମୃତି ପର୍ଯ୍ୟଟକମାନଙ୍କର ମନ ମୋହିନିଏ । ଆସନ୍ତୁ ଜାଣିବା କୋରାପୁଟରେ ଥିବା କେତେକ ପର୍ଯ୍ୟଟନ ସ୍ଥଳୀ ସମ୍ବନ୍ଧରେ

**ଗୁପ୍ତେଶ୍ୱର**

ଜୟପୁର ସହରଠାରୁ ୫୫ କି.ମି. ଦୂରରେ ଗୁପ୍ତେଶ୍ୱର ଅବସ୍ଥିତ । ବୈପାରୀଗୁଡ଼ା ରାସ୍ତା ଅତିକ୍ରମ କଲା



ପରେ ଉଠାପକା ପିଚୁରାସ୍ତା ଦେଇ ରାମଗିରିରେ ପହଞ୍ଚିବା ପରେ ଉଭୟ ପାର୍ଶ୍ୱରେ ଘଞ୍ଚଜଙ୍ଗଲ ସବୁଜିମା ରହିଛି । ଡ଼ଙ୍ଗରି ଘାଟିରେ ଡ଼ାଲଖାଇ ଦେବୀ ବିଦ୍ୟମାନ । ସେଠାରେ

ଡ଼ାଳ ଏବଂ ପଥର ସମର୍ପଣ କରିବାକୁ ପଡ଼ିଥାଏ । ସେହି ରାସ୍ତାରେ ଗଲେ ଗୁପ୍ତେଶ୍ୱର ପଡ଼ିଥାଏ । ଏହା ଭାରତର ବୃହତ୍ତମ ଶିବଲିଙ୍ଗ । ଗୁମ୍ଫା ଭିତରେ ବାବା ଗୁପ୍ତେଶ୍ୱର ବିରାଜମାନ । ଗୁପ୍ତେଶ୍ୱରରେ ପହଞ୍ଚିବା ପରେ ପାହାଡ଼ ଉପରକୁ ୨୦୦ ପାହାଚ ଅତିକ୍ରମ କରିବାକୁ ପଡ଼ିଥାଏ । ଏହି ପାହାଚର ଓସାର ୩ ମିଟର ଏବଂ ଲମ୍ବ ୨ ମିଟର ।



ମୁଖ୍ୟ ଦ୍ୱାରରେ ପାହାଚରେ ଉପରକୁ ଚଢ଼ିବାକୁ ପଡ଼େ ଏବଂ ଗୁମ୍ଫା ଭିତରକୁ ନିମ୍ନ ପାହାଚରେ ଓହ୍ଲାଇ ବାବା ଗୁପ୍ତେଶ୍ୱରଙ୍କ ନିକଟରେ ପହଞ୍ଚିବାକୁ ପଡ଼ିଥାଏ । ବାବା ଗୁପ୍ତେଶ୍ୱର ଲିଙ୍ଗ ନିକଟରେ ସମତଳ ସ୍ଥାନ ରହିଛି । ଜନଶ୍ରୁତି ରହିଛି, ରାମଚନ୍ଦ୍ର ବନବାସ ସମୟରେ ଗୁପ୍ତରେ ଗୁମ୍ଫା ଭିତରେ ରହି ପ୍ରଭୁ ଶିବଙ୍କୁ ଆରାଧନା କରିଥିଲେ । ପୂଜାରୀ କହେ, ଏହି ଶିବଲିଙ୍ଗର ପ୍ରତିବର୍ଷ ଆକାର (ଓସାର) ବଢ଼ିଥାଏ । ଅନେକ ଅଲୌକିକ କାହାଣୀ ଏହି ସ୍ଥାନର ରହିଛି । ଦିନେ ଜୟପୁର ରାଜା ପାରିଧିରୁ ଫେରିବା ସମୟରେ ଏହି ସ୍ଥାନର ଅଲୌକିକ ମହିମା ବିଷୟରେ ଅବଗତ ହୋଇଥିଲେ । ସେହିଦିନଠାରୁ ଏଠାରେ ପ୍ରତିବର୍ଷ ମହାଶିବରାତ୍ରୀ ଉତ୍ସବ ପାଳନ କରାଯାଉଛି । ଆଗରୁ ପ୍ରଭୁ ଗୁପ୍ତେଶ୍ୱରଙ୍କ ସମ୍ମୁଖରେ ଗୋଟିଏ ପଥରର କାମଧେନୁ ରହିଥିଲା । ଲୋକଙ୍କ ବିଶ୍ୱାସ ରହିଥିଲା (କାମଧେନୁ) ଗାଈର ଚିରରେ ପାପୁଲି ରଖିଲେ ମନସ୍କାମନା ପୂର୍ଣ୍ଣ ହେବାକୁ ଥିଲେ କ୍ଷୀର ନିର୍ଗତ ହୋଇଥାଏ । ପ୍ରତ୍ନତତ୍ତ୍ୱବିତ୍‌ଙ୍କ ମତରେ ଏହି ପାହାଡ଼ ଚୂନ ପଥର ଆସ୍ତରଣ ଯୁକ୍ତ । ତାହା କ୍ଷୀର ନୁହେଁ ଚୂନ ପଥର ମିଶ୍ରିତ ଜଳ । ଚୂନ ପଥର ପାଣି କାମଧେନୁ ପଥର ଗାଈର ଚିର ଦେଇ ନିର୍ଗତ ହୋଇଥାଏ । କାମଧେନୁ ସ୍ଥାନଟି ବର୍ତ୍ତମାନ ବନ୍ଦ କରାଯାଇଛି । ଏହି ଗୁମ୍ଫା ନିକଟରେ ୮ଟି ଗୁମ୍ଫା ରହିଛି । ପ୍ରଥମ ବଡ଼ ଗୁମ୍ଫାରେ ପ୍ରଭୁ ବାବା ଗୁପ୍ତେଶ୍ୱର ବିଦ୍ୟମାନ । ପ୍ରତିଟି ଗୁମ୍ଫାରେ ପାର୍ଶ୍ୱ ଦେବଦେବୀ ରହିଛନ୍ତି । ନିକଟରେ ପାପ ନାଶିନୀ ଶାବେରୀ ନଦୀ ପ୍ରବାହିତ । ଜନଶ୍ରୁତି ରହିଛି, ରାମଚନ୍ଦ୍ର ଏହି ନଦୀ କୂଳରେ ପିଣ୍ଡଦାନ କରିଥିଲେ । ଆଜି ମଧ୍ୟ ଲୋକମାନେ (ଭକ୍ତ) ଏହି ନଦୀ କୂଳରେ ପିଣ୍ଡଦାନ କରି ଶିରମୁଣ୍ଡନ କରିଥାନ୍ତି । ଦ୍ୱିତୀୟ ଗୁମ୍ଫାରେ ଦେବଦେବୀ ମୂର୍ତ୍ତି, ତୃତୀୟ ଗୁମ୍ଫାରେ ରାମକୁଣ୍ଡ, ଚତୁର୍ଥ ଗୁମ୍ଫାରେ ଗଣେଶ, ପଞ୍ଚମ ଗୁମ୍ଫାରେ ପାତାଳି ଗଙ୍ଗା, ଷଷ୍ଠ ଗୁମ୍ଫାରେ ସ୍ୱର୍ଗଦ୍ୱାର, ସପ୍ତମ ଗୁମ୍ଫାରେ ଦେବକୁଣ୍ଡ, ସୀତାକୁଣ୍ଡ, ଅଷ୍ଟମ ଗୁମ୍ଫାରେ ରାମ ପାଦୁକା ଏବଂ ପାରାଭାଡ଼ି ରହିଛି । ଏହି ଗୁମ୍ଫା ଭିତରେ ୨୦୦ ମିଟର ଗଭୀର ଝରଣା ରହିଛି, ଯାହା ଗୁମ୍ଫା ଫୁଟାଇ ଉପରକୁ ଉଠିଛି । ଗୁମ୍ଫାଗୁଡ଼ିକ ଭିତର ସଂପୂର୍ଣ୍ଣ ଅନ୍ଧକାର । ଭିତରକୁ ଗଲାବେଳେ ଟର୍ଚ୍ଚ ବା ମହମବତୀ ନେବାକୁ ପଡ଼ିଥାଏ । ଗୁରୁଣ୍ଡି ଗୁରୁଣ୍ଡି ଯିବାକୁ ପଡ଼ିଥାଏ । ଗୁମ୍ଫା ଭିତରେ ସରୀସୃପ ଓ ବାଦୁଡ଼ି ବାସ କରନ୍ତି । ଜନଜାତି ଦୁରୁଆମାନେ ଏହି ଗୁମ୍ଫାଗୁଡ଼ିକରେ ପୂଜା କରିଥାନ୍ତି । ବାବା ଗୁପ୍ତେଶ୍ୱରଙ୍କ ନିକଟରେ ପାଳି ଅନୁଯାୟୀ ଦୁରୁଆ ଜନଜାତି ଏବଂ ବ୍ରାହ୍ମଣ ପୂଜା କରିଥାନ୍ତି । ପ୍ରତିବର୍ଷ ମହାଶିବରାତ୍ରୀ, କାର୍ତ୍ତିକ ମାସର ସୋମବାର, ଶ୍ରାବଣ ମାସର ସୋମବାରରେ ବାବାଙ୍କ ଉପରେ ପାଣି ଢ଼ଳାଯାଏ । କାଉଡ଼ିଆମାନଙ୍କ ଭିଡ଼ ଏଠାରେ ଜମିଥାଏ । ବିଭିନ୍ନ ପର୍ବପର୍ବାଣିରେ ଜନଜାତିମାନେ ଯଥା ବଣ୍ଡା, ଗାଦବା, ପରଜା, ଦୁରୁଆ, କୋୟାଙ୍କ ସମାଗମ

ରହିଥାଏ । ସେମାନେ ପାରମ୍ପରିକ ପୋଷାକ ପିନ୍ଧି ଢ଼େମସା ଏବଂ ବିଭିନ୍ନ ନୃତ୍ୟଗୀତରେ ବନଭୂମିକୁ ମୁଖରିତ କରିଥାନ୍ତି ।

ଏହି ମନ୍ଦିର ନିକଟରେ ଦୋକାନ, ବଜାର, ଗେଷ୍ଟ ହାଉସ ରହିଛି । ଶାବେରୀ ନଦୀର ପାଣି ସ୍ୱଚ୍ଛ ଏବଂ ନିର୍ମଳ । ଗେଷ୍ଟ ହାଉସରେ ପର୍ଯ୍ୟଟକମାନେ ରାତ୍ରୀଯାପନ କରିଥାନ୍ତି ଏବଂ ମନଖୋଲି ଏହି ସ୍ଥାନରେ ସୌନ୍ଦର୍ଯ୍ୟକୁ ଉପଭୋଗ କରିଥାନ୍ତି । ଏଠାରେ ମନସ୍କାମନା ପୂର୍ଣ୍ଣ ହୋଇଥାଏ ବୋଲି କହିଥାନ୍ତି ଭକ୍ତ । ତେଣୁ ଏହି ସ୍ଥାନକୁ ପୁନର୍ବାର ଆସିବାକୁ ଭକ୍ତମାନେ ଭୁଲନ୍ତି ନାହିଁ । ଶାବେରୀ ନଦୀ କୋରାପୁଟ ଆନ୍ଧ୍ର ଛତିଶଗଡ଼ ସୀମାନ୍ତରୁ ବାହାରିଛି । ଏହି ନଦୀର ଜଳ ହଳଦିଆ ରଙ୍ଗ ଅଟେ । ତେଣୁ ସାରଳା ମହାଭାରତରେ ବର୍ଣ୍ଣିତ ଅଛି –

ହେମର ମହିମା ସାତ ତାଳ ନଦୀ ଗୋଟି
ପଞ୍ଚବଟି ବନୁ ଦେବ ଆସୁଅଛି ଫୁଟି ।

ଏହି ନଦୀର ଜଳଧାରା ପବିତ୍ର ଗୋଦାବରୀ ନଦୀ ଜଳ ସହିତ ମିଶିଛି । ନିକଟରେ ଏକ ଜଳକୁଣ୍ଡ ଅଛି, ତାହାକୁ ଅସ୍ଥିକୁଣ୍ଡ କୁହାଯାଏ । ଏଠାରେ ଭକ୍ତମାନେ ନିଜ ଜ୍ଞାତି କୁଟୁମ୍ବଙ୍କ ଅସ୍ଥି ବିସର୍ଜନ କରିଥାନ୍ତି ।

**ରାଣୀ ଡୁଡୁମା ଜଳ ପ୍ରପାତ**

କୋରାପୁଟର ଜଳପ୍ରପାଦ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ପାହାଡ଼ ଘାଟି ଅଭୁଲା କଥା କହିଥାଏ । ପାହାଡ଼ ଚଟାଣରୁ ତଳକୁ ଲମ୍ଫ ପ୍ରଦାନ କରୁଥିବା ଜଳଧାରାର ଦୃଶ୍ୟ ଅତୀବ ମନୋଲୋଭା ।

କୋରାପୁଟଠାରୁ ୪୦ କି.ମି. ଦୂରରେ ଏବଂ ସିମିଳିଗୁଡ଼ା ରାସ୍ତାରେ ୭ କି.ମି. ଯିବା ପରେ ନନ୍ଦପୁର ପଡ଼ିଥାଏ । ନନ୍ଦପୁରରର ଜଗନ୍ନାଥ ମନ୍ଦିର ଦେଇ ୧.୫ କି.ମି. ଯିବା ପରେ ଗାଁ ଭିତରେ ଗୋଟିଏ ଗେଟ୍ ପଡ଼ିଥାଏ, ବାମ କଡ଼ରେ ଭୈରବ ମନ୍ଦିର ରହିଛି । ସେଠାରେ ୫୦୦ ମିଟର ପାଦଚଲା ରାସ୍ତା ଗଲା ପରେ ଉପରକୁ ଯିବାକୁ ପାହାଚ ଏବଂ ବାରିକେଟ୍ ଚିତ୍ରରେ ଚିତ୍ରିତ ହୋଇଛି । ସେଠାରୁ ରାଣୀ ଡୁଡୁମାକୁ ଅତି ନିକଟରୁ ଦେଖିହୁଏ । ଏହା ମାଛକୁଣ୍ଡ ନଦୀର ୨ଟି ଛୋଟ ଜଳ ପ୍ରପାତର ଧାରାର ମିଶ୍ରଣ । କୁଟୁଣୀମାଳା ପଦର ବା ପର୍ବତ ଉପରୁ ଉତ୍ପତ୍ତି । ଏହି ଦୁଇଟି ଜଳଧାରା ଏକତ୍ରିତ ହୋଇ ଗୋଟିଏ ବଡ଼ ଚଟାଣ ଉପରେ ପ୍ରବାହିତ ହେଲା ପରେ ତଳକୁ ଲମ୍ଫ ପ୍ରଦାନ କରିଛି । ଏହି ଜଳପ୍ରପାତଟି ୩ଟି ବଡ଼ ପଥର ଚଟାଣ ଉପରେ ଜଳର ଧାରାଗୁଡ଼ିକ ବିଚ୍ଛୁରିତ ହୋଇ ପଡ଼ିବା ପରେ ୩ଟି ସ୍ତର ସୃଷ୍ଟି ହୋଇଛି । ପ୍ରଥମ ସ୍ତରରେ ବର୍ଷସାରା ପାଣି ଭରପୂର ହୋଇ ରହିଥାଏ ଏବଂ ଚାରିଆଡ଼େ ସବୁଜ ସୁନ୍ଦର ବନାନୀ ଦେଖାଦିଏ । ପ୍ରଥମ ଚଟାଣରୁ ପାଣି ନିର୍ଗତ ହେଲା ପରେ ତାହା ଜଙ୍ଗଲ ପାହାଡ଼ ଅତିକ୍ରମ କରି ଦ୍ୱିତୀୟ ଚଟାଣରେ ବିଛୁରିତ ହୋଇ ପଡ଼ିଥାଏ । ତୃତୀୟ ଚଟାଣ ଉପରେ ଜଳ ପ୍ରବାହ ପ୍ରକାଣ୍ଡ ଶବ୍ଦ କରି ପଡ଼ିଥାଏ । ତା'ପରେ ଜଳସ୍ରୋତ ସବୁଜ ସୁନ୍ଦର ଦୁଇ ପାହାଡ଼ ଦେଇ ଝରଣା ଆକାରରେ ବୋହିଯାଏ । ଜଳପ୍ରପାତଟି ତୃତୀୟ ଚଟାଣରେ ଅତି ସୁନ୍ଦର ଭାବେ ପ୍ରତି ଜଳକଣାରେ ସୂର୍ଯ୍ୟରଶ୍ମୀ ବିଚ୍ଛୁରିତ ହୁଏ । ନିକଟରୁ ପର୍ଯ୍ୟଟକ ଏହି ରାଣୀ ଡୁଡୁମା ଦୃଶ୍ୟ ଦେଖିପାରିବେ । ଏହି ରାଣୀ ଡୁଡୁମା ଜଳପ୍ରପାତର ନାମକରଣ ବିଷୟରେ ଏକ ଜନଶ୍ରୁତି ରହିଛି । ଏହି ପ୍ରପାତଟି ମାଛକୁଣ୍ଡ ନଦୀ ଏବଂ କୁଟୁଣୀମାଳା ପର୍ବତରୁ ପ୍ରବାହିତ । ଦିନେ ଜୟପୁର ରାଜ୍ୟର ରାଜଧାନୀ ନନ୍ଦପୁର ରାଜ୍ୟ ଥିଲା । ସେଠାରେ ମହାରାଜା ବିଜୟ ଚନ୍ଦ୍ରାକ୍ଷ ଦେବ ରାଜତ୍ୱ କରୁଥିଲେ । ଦିନେ ମହାରାଜା ପାରିଧିରୁ ଫେରିଲା ପରେ ଦେଖିଲେ ମହାରାଣୀ କୁଟୁଣୀମାଳା ପାହାଡ଼ ଉପରେ ବସିଥିଲେ ଏବଂ କୁଟୁଥିଲେ । ରାଜା ଦେଖିଲେ ସେସମୟରେ ରାଣୀଙ୍କ ପିନ୍ଧିଲା ପଣତକାନି ଖସିଯାଇଛି । ରାଣୀଙ୍କୁ ସତର୍କ କରିବା ପାଇଁ ମହାରାଜା ୩ଟି ଶର ମାରିଥିଲେ । ଶରକୁ ଦେଖି ମହାରାଣୀ ଲାଜେଇ ଗଲେ । ମହାରାଜା ମହଲକୁ ଫେରିବା ପରେ ରାଣୀ ସେହି କୁଟୁଣୀମାଳା ପାହାଡ଼ ଉପରେ ବସିଥିଲେ, ଚିନ୍ତାମଗ୍ନ ହୋଇଥିଲେ । ରାଣୀ ନିଜକୁ ଅପମାନ ବୋଧ କରି କୁଟୁଣୀମାଳା ପର୍ବତରୁ ତଳକୁ ଲମ୍ଫ ପ୍ରଦାନ କରି ନିଜ ଜୀବନକୁ ବିସର୍ଜନ କରିଥିଲେ । ସେହି ଦିନଠାରୁ ଏହି ଜଳପ୍ରପାତର ନାମକରଣ ରାଣୀ ଡୁଡୁମା ହୋଇଛି । ଜନମତ ରହିଛି ରାତ୍ରିର ନିଶବ୍ଦ ପ୍ରହରରେ ରାଣୀଙ୍କ ମୁଣ୍ଡ

ସହିତ ଖୋଲାବାଳ ଏହି ଜଳପ୍ରପାତର ଜଳରେ ଭାସୁଥାଏ । ରହିରହି ଶବ୍ଦ ଶୁଭୁଥାଏ । ଆଜିକାଲି ଏହା ଏକ ସୁନ୍ଦର ବଣଭୋଜିର ସ୍ଥାନ । ପୂର୍ବେ ଜଳପ୍ରପାତ ନିକଟକୁ ଗଲେ ପାହାଡ଼ ଉପରେ ବୁଲିବୁଲି ଯିବାକୁ ପଡୁଥିଲା । ଆଜିକାଲି ଗମନାଗମନର ସୁବିଧା, ପାନୀୟ ଜଳର ସୁବିଧା ରହିବା ଫଳରେ ଏହାର ନୈସର୍ଗିକ ଶୋଭାରାଜି ଅତି ନିକଟରୁ ଦେଖି ହେଉଛି । ରାଣୀ ଡୁଡୁମାର ଜଳସ୍ରୋତ ପ୍ରଖର ନୁହେଁ । ଅତି ନିକଟରୁ ପର୍ଯ୍ୟଟକମାନେ ଏହାର ରୂପ ଲାବଣ୍ୟ ମନଭରି ଉପଭୋଗ କରିଥାନ୍ତି ।

**ପୁଞ୍ଜିଶିଳ**

କୋରାପୁଟରୁ ରାୟଗଡ଼ା ଯିବା ରାସ୍ତାରେ ଦଶମନ୍ତପୁର ଏବଂ ୨୪ କି.ମ. ଯିବା ପରେ ପୋଡ଼ାଗଡ଼ ପଡ଼ିଥାଏ । ପୋଡ଼ାଗଡ଼ର ୫ କି.ମି. ଭିତରକୁ ଦକ୍ଷିଣ ପାର୍ଶ୍ୱରେ ଯିବା ପରେ ତେନ୍ତୁଳିଗୁଡ଼ା ପଡ଼ିଥାଏ । ସେଠାରେ ଏହି ଜଳପ୍ରପାତ ଅବସ୍ଥିତ । ପାହାଡ଼ ପର୍ବତ ଘେରା ଘଞ୍ଚଜଙ୍ଗଲ, ସବୁଜ ବନାନୀ ଦୁଇ ପାହାଡ଼ ମଧ୍ୟରୁ ଜଳଧାର ପ୍ରବାହିତ ହୋଇଛି । ପଥର ଚଟାଣରେ ଜଳଧାର ସିଧା ପଡ଼ିଛି । ତା'ପରେ ବିଭିନ୍ନ ଚଟାଣ ଦେଇ ସମତଳ ସ୍ଥାନରେ ଜଳଧାର ତଳକୁ ଧିରେ ଧିରେ ପ୍ରବାହିତ ହୋଇଥାଏ । ଜଳପ୍ରପାତଟି ବିପଦପୂର୍ଣ୍ଣ ସ୍ଥାନ ହୋଇନଥିବା ଯୋଗୁଁ ଉତ୍ପତ୍ତି ସ୍ଥଳକୁ ଅତି ନିକଟରୁ ସମସ୍ତେ ଦେଖିପାରନ୍ତି । ପ୍ରଥମେ ଜଳପ୍ରପାତ ନିକଟକୁ ଯିବାକୁ ହେଲେ ପଥର ଚଟାଣ ଏବଂ ମାଟି ରାସ୍ତାରେ ଯିବାକୁ ପଡ଼ିଥାଏ । ଛୋଟରୁ ବଡ଼ ପର୍ଯ୍ୟନ୍ତ ପର୍ଯ୍ୟଟକମାନେ ଗାଧୋଇ ଏଠାରେ ଭରପୂର ମଜା ନେଇଥାନ୍ତି । ପାହାଡ଼ର ଛାତି ଚିରି ବୋହି ଆସୁଥିବା ଝରଣାଟିକୁ ମନଭରି ଉପଭୋଗ କରିଥାନ୍ତି ପର୍ଯ୍ୟଟକ । ଏହା ଏକ ମନୋରମ ବଣଭୋଜିର ସ୍ଥାନ । ତେଣୁ ଦୂରଦୂରାନ୍ତରୁ ଏଠାକୁ ଛୁଟି ଆସନ୍ତି ପର୍ଯ୍ୟଟକ । ଏହାର ଗମନାଗମନ, ପାନୀୟଜଳ ଓ ରହିବା ସ୍ଥାନ ତିଆରି ହେଲେ ଏହାର ଗୁରୁତ୍ୱ ବଢ଼ିଯିବ ।

**ଦେଓମାଳୀ**

କୋରାପୁଟଠାରୁ ୨୦୦ କି.ମି. ଦୂରରେ ଓଡ଼ିଶାର ଉଚ୍ଚତମ ପର୍ବତଶୃଙ୍ଗ ଦେଓମାଳୀ ଅବସ୍ଥିତ । ଦେଓମାଳୀ ପର୍ବତ ଶୃଙ୍ଗକୁ ଯିବାକୁ ହେଲେ ପ୍ରଥମେ କୋରାପୁଟରୁ ସିମିଳିଗୁଡ଼ା ରାସ୍ତାରେ ୭୦ କି.ମି. ଯିବା ପରେ ପଟାଙ୍ଗୀ ପଂଚାୟତ ରହିଛି । ଏହାର ଦକ୍ଷିଣ ପାର୍ଶ୍ୱ ରାସ୍ତାରେ ଦେଓମାଳୀ ଯିବାକୁ ରାସ୍ତା ଓ ଦ୍ୱାର ରହିଛି । ସେହି ରାସ୍ତାରେ ଆଗକୁ ୨୨ କି.ମି. ଗଲା ପରେ ଦୁଇ ପାର୍ଶ୍ୱରେ ସବୁଜିମା ଭରା ଜଙ୍ଗଲ, ଅଳସୀ ଫୁଲର କ୍ଷେତ, ଉଚ୍ଚନୀଚ ପାହାଡ଼ ଦେଇ ଅତିକ୍ରମ ପରେ ଭାରତର ପୂର୍ବଘାଟ ପର୍ବତମାଳାର ଏକ ଅଂଶବିଶେଷ ଦେଓମାଳୀ ପର୍ବତ ପଡ଼ିଥାଏ । ଏହି ଦେଓମାଳୀ ଶୃଙ୍ଗ ସମୁଦ୍ର ପତ୍ତନଠାରୁ ୧୬୭୨ ମିଟର ଉଚ୍ଚତା ଅଥବା ୫୪୮୬ ଫୁଟ ଉଚ୍ଚରେ ଅବସ୍ଥିତ । ଏହି ଅଂଚଳଟି ଡୁହହରି ଗ୍ରାମ ନିକଟରେ ରହିଛି । ଦେଓମାଳୀ ପର୍ବତ ଉପରେ ଅଂଶ ସମତଳ ୫ କି.ମି. ରହିଛି । ଏହାର ଶିଖର ଇଂରାଜୀ ଅକ୍ଷର ଏମ୍ ଭଳି ଦେଖାଯାଏ । ଗ୍ରୀଷ୍ମ ଓ ଶୀତ ଦିନ ହେଉଛି ଏହି ଶୃଙ୍ଗକୁ ବୁଲିଯିବା ପାଇଁ ଉତ୍କୃଷ୍ଟ ସମୟ । ପର୍ଯ୍ୟଟକ ଯେତେ ପାଖକୁ ଦେଓମାଳୀର ଯାଏ, ସେ ଦେଖେ ଆକାଶ ଅଗଣାରେ ଢ଼େଉ ଢ଼େଉ ପର୍ବତ ସ୍ତର ପର୍ବତ ଶିଖର ଆକାଶକୁ ଛୁଇଁଯିବା ଭଳି ଦୃଷ୍ଟିଗୋଚର ହୁଏ । ଏହି ପର୍ବତଟି ଜୀବଜନ୍ତୁ, ଉଦ୍ଭିଦରେ ପରିପୂର୍ଣ୍ଣ । ପର୍ବତ ଶିଖର ଅଂଶ ସମତଳ ହୋଇଥିବାରୁ ପର୍ଯ୍ୟଟକମାନେ ବୁଲାବୁଲି କରି ଭରପୂର ଆନନ୍ଦ ନେଇ ଥାଆନ୍ତି । ଏହି ପର୍ବତ ଚୂନପଥର, ବକ୍ସାଇଟ୍ ଏବଂ ରନ୍ ପଥର ଭଳି ଖଣିଜ ସମ୍ପଦରେ ପରିପୂର୍ଣ୍ଣ । ଏଠାରେ କନ୍ଧ, ପରଜା, କୁଟିଆ, ଗାଦବା, କାନ୍ଦାସା ଏବଂ ଅନ୍ୟାନ୍ୟ ଜନଜାତି ବାସ କରିଥାନ୍ତି ଏବଂ ପାହାଡ଼କୁ ସ୍ତରସ୍ତର କରି କାଟି ପୋଡୁଚାଷ କରିଥାନ୍ତି । ପର୍ବତ ଆରୋହଣ, ଅନ୍ୟାନ୍ୟ ଦୁଃସାହସିକ କ୍ରୀଡ଼ା ପାଇଁ ଏଠାରେ ପ୍ରଶିକ୍ଷଣ ଦିଆଯାଇଥାଏ । ତେଣୁ କ୍ରୀଡ଼ାବିତ୍‌ମାନେ ଆସି ପ୍ରଶିକ୍ଷଣ ନେଇଥାନ୍ତି । ପର୍ବତ ଶୃଙ୍ଗ ଉଚ୍ଚ ହୋଇଥିବା ଯୋଗୁଁ ଉପର ଅଂଶରେ ଆରୋହଣ କଲାବେଳେ ପର୍ଯ୍ୟଟକଙ୍କୁ ନିଃଶ୍ୱାସ ଓ ପ୍ରଶ୍ୱାସ ନେବାରେ ଅସୁବିଧା ହୋଇଥାଏ । ସ୍ତର ସ୍ତରରେ ପାହାଡ଼ି ଝରଣା ରହିଛି । ଓଡ଼ିଶା ସରକାରଙ୍କ ଦ୍ୱାରା ପାନୀୟ ଜଳ, ଗମନାଗମନର ସୁବିଧା ଏବଂ ସ୍ଥାନେ ସ୍ଥାନେ ଦେଖିବା ପାଇଁ ଭିୟୁ ପଏଣ୍ଟ ତିଆରି କରାଯାଇଛି । ଏଠାରେ ଶୀତ ଦିନରେ ଭୀଷଣ

ଶୀତ ହୋଇଥାଏ । କିନ୍ତୁ ଶୀତ ଦିନର ଦୃଶ୍ୟ ଅତ୍ୟନ୍ତ ମନୋଲୋଭା ଯାହାଦ୍ୱାରା କି ପର୍ଯ୍ୟଟକଙ୍କ ଆଖି ଲାଖି ରହିଥାଏ ।

**ଶାବର ଶ୍ରୀକ୍ଷେତ୍ର**

କୋରାପୁଟର ମଧ୍ୟଭାଗରେ ରହିଛି ଓଡ଼ିଶାର ଆରାଧ୍ୟ ଦେବତା ପ୍ରଭୁ ଜଗନ୍ନାଥଙ୍କ ଶାବର ଶ୍ରୀକ୍ଷେତ୍ର, ଯେଉଁଠି ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକତ୍ରିତ ହୋଇ ପୂଜା କରିଥାନ୍ତି ଜଗତର ନାଥ ଜଗନ୍ନାଥଙ୍କୁ । ପ୍ରଥମେ ଚାଳ କୁଡ଼ିଆ ପରେ ଟିଣ ଛପର ଘର ଓ ତା'ପରେ ବିରାଟ ଶାବର ଶ୍ରୀକ୍ଷେତ୍ର ମନ୍ଦିର ବର୍ଣ୍ଣନା କରୁଛି ଅନେକ କାହାଣୀ ।

ଦିନେ ଶବର ଏଠାରେ ଜଗନ୍ନାଥଙ୍କୁ ନୀଳମାଧବ ଭାବରେ ପୂଜା କରୁଥିଲା । ମନ୍ଦିରର ପରିସୀମାରେ ତିନିଟି ସ୍ତର ରହିଛି । ପ୍ରଥମ ସ୍ତରରେ ରହିଛି ଜଗନ୍ନାଥ ସଂସ୍କୃତି ଗବେଷଣା କେନ୍ଦ୍ର, ଦ୍ୱିତୀୟ ସ୍ତରରେ ଭାରତର ବିଭିନ୍ନ ଦେବଦେବୀଙ୍କ ମନ୍ଦିର, ଆନନ୍ଦ ବଜାର ଏବଂ ଉପର ସ୍ତରରେ ରହିଛି ମୂଳ ଜଗନ୍ନାଥ ମନ୍ଦିର ସହିତ ପାର୍ଶ୍ୱ ଦେବାଦେବୀ ମନ୍ଦିର । ଦିନେ ଜଗନ୍ନାଥ ସଂସ୍କୃତିର ପୁରୋଧା ଜଗନ୍ନାଥଙ୍କ ମୂର୍ତ୍ତି ପ୍ରତିଷ୍ଠା କରିବା ପାଇଁ ଆସିଥାନ୍ତି ପଦ୍ମଶ୍ରୀ ସଦାଶିବ ରଥ ଶର୍ମା । ଚାରିଆଡ଼େ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ପ୍ରଦର୍ଶନୀ ଚାଲିଥାଏ । ଆଦିବାସୀମାନେ ଚାରିଆଡ଼େ ବୁଲି ଦେଖୁଥାନ୍ତି ଓ ଜଗନ୍ନାଥଙ୍କ ରସାମୃତ ଆରୋହଣ କରୁଥାନ୍ତି । ହଠାତ୍ ଭିଡ଼ ଭିତରୁ ଜଣେ ଆଦିବାସୀ ମହିଳା ଆଖିରେ ଆନନ୍ଦାଶ୍ରୁ, ପଣତ କାନିରେ କିଛି ଜଙ୍ଗଲି ଫଳ ଧରି ମଞ୍ଚ ଉପରକୁ ଉଠିଆସି ଜିଦ୍ କଲା ଜଗନ୍ନାଥଙ୍କୁ ଫଳ ଖୁଆଇବ । ଏହା ଦେଖି ପଣ୍ଡିତ ରଥଶର୍ମାଙ୍କ ଆନନ୍ଦାଶ୍ରୁ ବୋହିଗଲା । ସେ ଦେଖିଲେ ମହିଳା ଜଣଙ୍କ ଫଳସବୁ ଚାଖି ଜଗନ୍ନାଥଙ୍କୁ ରଙ୍ଗ ଅଧରରେ ଖୁଆଇ ଚାଲିଛି ଏବଂ ଗୁଣୁଗୁଣୁ ହୋଇ ଆଦିବାସୀ ଭାଷାରେ କହୁଛି ଏବଂ କାନ୍ଦୁଛି । ଏହା ଦେଖି ରଥଶର୍ମାଙ୍କ ହୃଦୟରୁ ବାହାରିଲା "ଶାବର ଶ୍ରୀକ୍ଷେତ୍ର" । ସେଦିନରୁ ଏହି ସ୍ଥାନର ନାମ ଶାବର ଶ୍ରୀକ୍ଷେତ୍ର ନାମରେ ନାମିତ ହେଲା ।

ଏହି ଆଦିପୀଠରେ ଦିନେ କୋରାପୁଟ ଜିଲ୍ଲାର ପଦ୍ମପୁର ଜଗମଣ୍ଡା ପାହାଡ଼ ଶବର ରାଜା ବିଶ୍ୱାବସୁଙ୍କର ରହିଥିଲା । ଯେଉଁଠି ଦିନେ ଜଗନ୍ନାଥ ନୀଳମାଧବ ରୂପେ ପୂଜା ପାଉଥିଲେ ବୋଲି ଜନଶ୍ରୁତି ରହିଛି । ପ୍ରଥମେ ଶବର ଜଗନ୍ନାଥ ମନ୍ଦିରରେ ପୂଜା କଲା ପରେ ବ୍ରାହ୍ମଣମାନେ ପୂଜା କରିଥାନ୍ତି । ଶ୍ରୀକ୍ଷେତ୍ର ପୁରୀରେ ଯେଉଁ ରୀତି ନୀତି, ପୂଜା ପାର୍ବଣ କରାଯାଏ ସେହିପରି ଶାବର ଶ୍ରୀକ୍ଷେତ୍ରରେ ମଧ୍ୟ ପ୍ରତ୍ୟେକ ବିଧିବିଧାନ ଅନୁସାରେ ସଂପାଦିତ କରାଯାଇଥାଏ । ଘୋଷଯାତ୍ରାରେ ପ୍ରଥମେ ମହାପ୍ରଭୁଙ୍କୁ ଶବରମାନେ ରୀତିନୀତି ଅନୁସାରେ ପୂଜା କରିବା ପରେ ବ୍ରାହ୍ମଣମାନେ ପୂଜା କରିଥାନ୍ତି । ଆଦିବାସୀ ଶବରମାନେ ନିଜର ପାରମ୍ପରିକ ବେଶଭୂଷାରେ ଫୁଲଫଳ ଧରି ରଥ ଉପରେ ଚଢ଼ିଥାନ୍ତି । ଶବର ମୁଖିଆ ଛେରା ପହଁରା କରିଥାଏ ଏବଂ ଅନ୍ୟମାନେ ଭୋଗ କରିବା ପରେ ପୂଜାପଣ୍ଡା ପୂଜା କରିଥାନ୍ତି । ଶବର ସଂପ୍ରଦାୟର ମନୋନୀତ ବ୍ୟକ୍ତିକୁ ଜିଲ୍ଲାପାଳ ମୁଣ୍ଡରେ ଶିରୋପା ପିନ୍ଧାଇଥାନ୍ତି । ରଥ ଆଗରେ ପାରମ୍ପରିକ ଢ଼େମ୍‌ସା ନାଚ, ସାଇଁଲୋଡ଼ି ଗୀତ, ବାଦ୍ୟର ତାଳେ ତାଳେ ଆଦିବାସୀମାନେ ନୃତ୍ୟ କରିଥାନ୍ତି ।

ଶାବର ଶ୍ରୀକ୍ଷେତ୍ରର ଉପରକୁ ଉଠିବାକୁ ପାହାଚ ରହିଛି । ରାସ୍ତାରେ ପାନୀୟ ଜଳ, ବିଶ୍ରାମଗାର ରହିଛି । ଉପର ଅଂଶଟି ସମତଳ ହୋଇଥିବାରୁ ପର୍ଯ୍ୟଟକ ଜଗନ୍ନାଥଙ୍କ ନିକଟରେ ବସି ନିଜ ଦୁଇହାତ ପ୍ରସାରି ଦୁଃଖ ଜଣାଇଥାଏ ଚକାଡ଼ୋଳାଙ୍କୁ ଏବଂ ନିଜକୁ ଭାବବିହ୍ୱଳ ହୋଇ ସମର୍ପଣ କରିଥାଏ । ଏହି ଶାବର ଶ୍ରୀକ୍ଷେତ୍ରର ଦୃଶ୍ୟ ଅତି ମନାଲୋଭା ଓ ଚିତ୍ତାକର୍ଷକ ।

**କୋଲାବ ଜଳଭଣ୍ଡାର**

ସୌନ୍ଦର୍ଯ୍ୟମୟୀ କୋରାପୁଟ ତା'ର ନଦୀ, ଝରଣା, ପାହାଡ଼ ପର୍ଯ୍ୟଟକର ହୃଦୟକୁ ସ୍ପର୍ଶ କରିଥାଏ । କୋଲାବ ଜଳଭଣ୍ଡାର ମାଇଲ ମାଇଲ ଧରି ବିସ୍ତୀର୍ଣ୍ଣ ଜଳରାଶି, କାଶ୍ମୀରର ଡାଲ୍ ଓ ଓଲାର ହ୍ରଦ ଏବଂ ଓଡ଼ିଶାର ଚିଲିକା ସହିତ ତୁଳନା କରିହୁଏ । ଦୁଇ ପାର୍ଶ୍ୱରେ ରହିଛି ପାହାଡ଼ ପର୍ବତ ଘେରା ସବୁଜ ବନାନୀ, କେଉଁଠି ଜଳରାଶି ବିସ୍ତୀର୍ଣ୍ଣ ତ କେଉଁଠି ସଂକୀର୍ଣ୍ଣ । ଏହି ଜଳଭଣ୍ଡାର ୭ଟି ଜଳପ୍ରପାତ ବାଗ୍ରା ଜଳପ୍ରପାତକୁ ଏକତ୍ରିତ କରି ବୈଦ୍ୟୁତିକ ଉତ୍ପାଦନ

କେନ୍ଦ୍ର ସୃଷ୍ଟି କରାଯାଇଛି । ସ୍ଥାନେ ସ୍ଥାନେ ସ୍ଥଳଭାଗ, ଉଚ୍ଚନୀଚ ପାହାଡ଼, ଦ୍ୱୀପ ଓ ଟାପୁ ସୃଷ୍ଟି ହୋଇଛି । ସେଗୁଡ଼ିକ ହେଲା– କେଚେଲା, କଂସ ପାଚୁଲି, ଶରଧା କୁପୁଲି । ଏଠାରେ ଖାଇବା, ପିଇବାର ବ୍ୟବସ୍ଥା, ବସିବା ବ୍ୟବସ୍ଥା ରହିଛି । ପର୍ଯ୍ୟଟକମାନେ ମଟର ଲଞ୍ଚ ସାହାଯ୍ୟରେ ବିଭିନ୍ନ ସ୍ଥାନକୁ ବୁଲିଯାଆନ୍ତି । ସନ୍ଧ୍ୟାରେ ମନୋରମ ସୂର୍ଯ୍ୟାସ୍ତ ଦେଖି ପର୍ଯ୍ୟଟକ ବିମୋହିତ ହୋଇପଡ଼େ । ଏହି ଗ୍ରାମମାନଙ୍କର ବିଶେଷ ଆକର୍ଷଣ ହେଉଛି ଏଠାରେ ଥିବା ଜୈନ ମନ୍ଦିର ।

### ଚିଙ୍ଗୁଡ଼ି ଦୋରା ଓ ରଙ୍ଗ ପାନିନାଳ ଜଳପ୍ରପାତ

ଜୟପୁରଠାରୁ ବୈପାରୀଗୁଡ଼ା ଯିବା ବାଟରେ ମାଲକାନଗିରି ରାସ୍ତାରେ ପ୍ରାୟ ୪ କି.ମି. ଯିବା ପରେ ଦଶମନ୍ତପୁର ଅବସ୍ଥିତ । ସେଠାରୁ ପାଦଚଲା ରାସ୍ତା କିଛି ସମୟ ଯିବା ପରେ ଦର୍ଶକ ଅପରୂପା ଲାବଣ୍ୟ ଦେଖି ବିମୋହିତ ହୋଇପଡ଼େ । ସେଠାରେ ପାହାଡ଼ରୁ ଦୁଇଟି ଜଳପ୍ରପାତ ଦୃଷ୍ଟିଗୋଚର ହୁଏ ଚିଙ୍ଗୁଡ଼ି ଦୋରା ଓ ରଙ୍ଗ ପାନି ନାଳ ଜଳପ୍ରପାଦ । ଏହି ଦୁଇ ଜଳ ପ୍ରପାତର ଚଳଚଞ୍ଚଳ ଜଳଧାରା ପାହାଡ଼ ପାହାଡ଼ ଅତିକ୍ରମ କରି ଦର୍ଶକଙ୍କୁ ସ୍ୱାଗତ ଜଣାଏ । ପାଣିର ଢ଼େଉ ଢ଼େଉକା ଗତି ପାହାଡ଼କୁ ପାହାଡ଼ ଅତିକ୍ରମ କରିବା ସମୟରେ ଦର୍ଶକଙ୍କ ମନ ମୋହିନିଏ ।

### ସୁବେଇ

ନନ୍ଦପୁର ହେଉଛି ମନ୍ଦିରମାଳିନୀର ଗ୍ରାମପୁଞ୍ଜ । ନନ୍ଦପୁର ରାସ୍ତାରେ ୧୭ କି.ମି. ଗଲା ପରେ ସୁବେଇ ଗ୍ରାମରେ ପହଞ୍ଚିବେ । ପୂର୍ବେ କୋରାପୁଟ ଜିଲ୍ଲାରେ ଜୈନ ଏବଂ ବୌଦ୍ଧ ଧର୍ମାବଲମ୍ବୀମାନେ ବାସ କରୁଥିଲେ । ଏଠାରେ ଅନେକ ଜୈନ ମନ୍ଦିର ଦେଖିବାକୁ ମିଳେ । ଭଗ୍ନ ଜୈନ ମୂର୍ତ୍ତିକୁ ଆଦିମ ଆଦିବାସୀ ବା ଜନଜାତି ବରଚୁନି ଦେବୀ, ଅଷ୍ଟଦେବୀ, ବୁଦ୍ଧମୂର୍ତ୍ତି, ଦୁର୍ଗାମୂର୍ତ୍ତି, ଜାଗୁଆ କାର୍ତ୍ତିକେଶ୍ୱର, ମାଉଲି, ଈଶ୍ୱର, ନନ୍ଦୀଭୃଙ୍ଗୀ ଆଦି ଦେବଦେବୀ ନାମରେ ପୂଜା କରି ଆସୁଅଛି । ଏହି ମୂର୍ତ୍ତିଗୁଡ଼ିକ କଳା ମୁଗୁନି ପଥରରେ ନିଖୁଣ ଭାବରେ ନିର୍ମିତ କରାଯାଇଥିଲା ଏବଂ ଏହାର ଚୁମ୍ବକୀୟ ଗୁଣ ରହିଛି ।

### ବାଲ୍ମୀକି ଆଶ୍ରମ

ଓଡ଼ିଶା –ଆନ୍ଧ୍ର ସୀମାନ୍ତବର୍ତ୍ତୀ ଗ୍ରାମ ପାଚ୍ଛୁଲୁରୁ ଗ୍ରାମ ପଂଚାୟତରେ ପୁରାଣ ପ୍ରସିଦ୍ଧ ତଥା ରାମାୟଣ ଯୁଗର ବାଲ୍ମୀକି ଆଶ୍ରମ ରହିଛି । ନନ୍ଦପୁରର ଅନତି ଦୂରରେ ମାଛକୁଣ୍ଡ ନଦୀର ଅବବାହିକାରେ ନମିଲାଲା ପର୍ବତର ପାଦଦେଶରେ ରହିଛି ମୁକ୍ତଆମ୍ବ ଗ୍ରାମ । ଏହି ଗ୍ରାମ ଦେଇ



ଯାତ୍ରା କରିବା ପରେ ପଡ଼ିଥାଏ କପାଟ ପର୍ବତ । ଏଠାରେ ରହିଛି ୨୦୦ ମିଟର ତିନିତାଲା ବିଶିଷ୍ଟ ବାଲ୍ମୀକି ଗୁମ୍ଫା । ଜନଶ୍ରୁତି ରହିଛି ଶ୍ରୀରାମଚନ୍ଦ୍ର ବନବାସ ସମୟରେ ଏହି ରାସ୍ତା ଦେଇ ଯିବା ବାଟରେ – ସୀତାଦେବୀଙ୍କୁ ଶୋଷ ହୋଇଥିଲା । ତୃଷା ମେଣ୍ଟାଇବା ପାଇଁ ରାମଚନ୍ଦ୍ର ଧନୁତୀର ଦ୍ୱାରା ଭୂପୃଷ୍ଠ ଭେଦ କରି ଜଳଧାରା ବାହାର କରିଥିଲେ । ତେଣୁ ଏହି ଜଳଧାରା କେବେ କି ଶୁଖେନାହିଁ । ଗ୍ରୀଷ୍ମ, ବର୍ଷା, ଶୀତ ଋତୁରେ ସମାନ ଜଳସ୍ତର ରହିଥାଏ । ଏଠାରେ ବାଲ୍ମୀକି ଶିଷ୍ୟମାନଙ୍କ ସହିତ ବାସ କରୁଥିଲେ । ବାଲ୍ମୀକିଙ୍କ ମହାପ୍ରୟାଣ ପରେ ଶିଷ୍ୟମାନେ ପରିଚାଳନା ଦାୟିତ୍ୱ ବହନ କଲେ । କିନ୍ତୁ ଦୟାନିଧି ବାବାଙ୍କ କଠୋର ମନୋଭାବ

ଫଳରେ ଶିଷ୍ୟମାନେ ଏହି ଗୁମ୍ଫା ଛାଡ଼ି ଚାଲିଥିଲେ । ଦୟାନିଧି ବାବାଙ୍କ ମୃତ୍ୟୁ ପରେ ସ୍ଥାନୀୟ ଲୋକ ଏଠାରେ ବାହାଘର ମଣ୍ଡପ କରି ଭୋଜି ଭାତ କରିଥାନ୍ତି । ଏଠାରେ ପାଣିକୁଣ୍ଡ, ଯଜ୍ଞକୁଣ୍ଡ ରହିଛି । ତୃତୀୟ ମହଲାକୁ ପହଂଚିବା କଷ୍ଟସାଧ୍ୟ । ତେଣୁ ଦୁଇ ମହଲାକୁ କେବଳ ବ୍ୟବହାର କରାଯାଏ ।

### ଡୁଡୁମା ଜଳ ପ୍ରପାତ – ମାଛକୁଣ୍ଡ

ଆନ୍ଧ୍ର–ଓଡ଼ିଶା ମଧ୍ୟବର୍ତ୍ତୀ ମାଡ଼ଗୋଲ ପର୍ବତମାଳାରୁ ମାଛକୁଣ୍ଡ ନଦୀର ଉତ୍ପତ୍ତି । ଡୁଡୁମା ଜଳପ୍ରପାତ ଓଡ଼ିଶାର ଉଚ୍ଚତମ ଜଳପ୍ରପାତ । ଏହି ଜଳପ୍ରପାତ ମାଛକୁଣ୍ଡ ନଦୀରୁ ବାହାରିଛି । ଏହି ଜଳପ୍ରପାତ ଦୁଇଟି ଜଳ ପ୍ରପାତର ସମିଶ୍ରଣରେ ଉତ୍ପତ୍ତି । କୋରାପୁଟଠାରୁ ଡୁଡୁମା ଜଳପ୍ରପାତର ଦୂରତ୍ୱ ୮୩ କି.ମି. । ପାହାଡ଼ ଉପରୁ ପଡୁଥିବା ଜଳପ୍ରପାତର ପ୍ରଚଣ୍ଡ ଘୋ ଘୋ ନାଦ ସାଙ୍ଗକୁ ଆଖପାଖର ମନୋରମ ଦୃଶ୍ୟ ବାନ୍ଧି ରଖେ ପର୍ଯ୍ୟଟକଙ୍କୁ । ପର୍ଯ୍ୟଟକ କାର୍ ବା ବସ୍ ମାଧ୍ୟମରେ ଆସିପାରିବେ । ସରକାର ଏହାର ସୌନ୍ଦର୍ଯ୍ୟକରଣ ସହିତ ସୁରକ୍ଷାର ଧ୍ୟାନ ଦେବା ଦରକାର । ଯେଉଁଠାରୁ ଜଳପ୍ରପାତର ଉତ୍ପତ୍ତି ସେ ସ୍ଥାନକୁ ପର୍ଯ୍ୟଟକମାନେ ଯାଇପାରିବେ । ଏହି ଜଳପ୍ରପାତଟି ବାଦିଗୁଡା ଗାଁରୁ ଉତ୍ପତ୍ତି । ଗୋଟିଏ ପଟେ ଆନ୍ଧ୍ର ଏବଂ ଅନ୍ୟ ପଟେ ଓଡ଼ିଶା ରହିଛି । ପାହାଡ଼ ଉପରୁ ଲମ୍ଫ ପ୍ରଦାନ କରୁଥିବା ଘୋଡ଼ାଲାଞ୍ଜ ସଦୃଶ ଜଳପ୍ରପାତ ବାଦିଗୁଡ଼ା ନିକଟସ୍ଥ ପର୍ବତ ଶିଖରରୁ ପ୍ରାୟ ୫୫୦.୧୯ ଫୁଟ ଉଚ୍ଚରୁ ମାଛକୁଣ୍ଡ ନଦୀ ନିମ୍ନକୁ ଲମ୍ଫ ପ୍ରଦାନ କରିଛି । ଏହି ଜଳପ୍ରପାତରେ ପ୍ରତି ସେକେଣ୍ଡରେ ପ୍ରାୟ ୧୦୪ କ୍ୟୁବିକ୍ ଫୁଟ ଜଳ ପ୍ରବାହିତ ହେଉଅଛି । ମାଛକୁଣ୍ଡ ନଦୀର ଜଳ ଭୀମକାନ୍ତ ଏବଂ ବିପଦପୂର୍ଣ୍ଣ । ଏହି ଜଳପ୍ରପାତ ଏକ ଅପରୂପା ଲାବଣ୍ୟର ଶୋଭାମଣ୍ଡନ ସୃଷ୍ଟି କରିଛି । ନିକଟରେ ଅଳସୀ କ୍ଷେତ, ଛୋଟ ଛୋଟ ଜଳପ୍ରପାତ ଏବଂ ଜଳପ୍ରପାତ ତଳେ ରହିଛି ଛୋଟ ଶିବ ମନ୍ଦିର । ଦର୍ଶକ ଏସବୁ ଦେଖି ରୋମାଞ୍ଚିତ ହୋଇଉଠେ । ଜନଶ୍ରୁତି ରହିଛି ରାମଚନ୍ଦ୍ର ବନବାସ ସମୟରେ ସୀତା ଦେବୀଙ୍କ ସହିତ ଏଠାରେ ଶିବଙ୍କୁ ପୂଜା କରୁଥିଲେ । ଜଳାପୁଟ ଜଳଭଣ୍ଡାର ହେଉଛି ୨୪୦୦୦ ଏକର ଅଂଚଳ ପରିବ୍ୟାପ୍ତ । ଏହାର ଦୈର୍ଘ୍ୟ ୧୩୭୫ ଫୁଟ ଏବଂ ଉଚ୍ଚତା ୧୮୦ ଫୁଟ । ମାଛକୁଣ୍ଡ ଡୁଡୁମା ଜଳପ୍ରପାତ ତଳେ ଏକ ବିଦ୍ୟୁତ କେନ୍ଦ୍ର ଅଛି । ସେଠାକୁ ଯିବାକୁ ହେଲେ ଲମ୍ବ ଲମ୍ବ ପାହାଚ ଅତିକ୍ରମ କରି ତଳକୁ ଯିବାକୁ ପଡ଼ିଥାଏ । ଦର୍ଶକମାନେ ତଳକୁ ଯିବା ପାଇଁ ଉଇଞ୍ଚ ବ୍ୟବହାର କରିଥାନ୍ତି । ଉଇଞ୍ଚ ଦୁଇଟିରେ ଛୋଟ ରେଳଡବା ସଂଯୁକ୍ତ ହୋଇଛି । ପର୍ଯ୍ୟଟକମାନେ ବସିବା ପାଇଁ ସ୍ଥାନ ରହିଛି । ଉପର ଅଂଶରେ ରହିଛି ମେସିନ ଘର । ମୋଟା ଲୌହ ଦଉଡ଼ି ଉଇଞ୍ଚକୁ ସଂଯୋଗ କରାଯାଇଛି । ଉପରକୁ ଟାଣିଲେ ଉଇଞ୍ଚ ଉପରକୁ ଉଠେ ଏବଂ ତଳକୁ ଦଉଡ଼ି ଛାଡ଼ିଲେ ତଳକୁ ଯାଇ ''ହାଇଡ୍ରୋ ଇଲେକ୍ଟ୍ରିସିଟି'' ବା ବିଦ୍ୟୁତ କେନ୍ଦ୍ରରେ ପହଂଚିଥାଏ । ବିଦ୍ୟୁତ କେନ୍ଦ୍ରରେ କିପରି ବଡ଼ବଡ଼ ଯନ୍ତ୍ର ସାହାଯ୍ୟରେ ଜଳପ୍ରପାତର ସ୍ରୋତରୁ ବିଜୁଳି ଟରବାଇନ ମାଧ୍ୟମରେ ପ୍ରସ୍ତୁତ ହେଉଅଛି, ତାହା ଯନ୍ତ୍ରୀମାନେ ବୁଝାଇଥାନ୍ତି । ନିକଟରେ ବିଶାଳ ଜଳାଶୟ, ଉଦ୍ୟାନର ଶୋଭା ଦୁଇଗୁଣିତ କରିଥାଏ । ଉଇଞ୍ଚରେ ତଳକୁ ଯିବା ସମୟରେ ମଝିରେ ମଝିରେ ଦେଖିହୁଏ ଡୁଡୁମା ଜଳପ୍ରପାତର ଅଙ୍କାବଙ୍କା ଧୂଆଁ ଧାର, ସତେଯେମିତି ରୁପାର ମୁକ୍ତା ହାର ପିନ୍ଧି ଦର୍ଶକଙ୍କୁ ସ୍ୱାଗତ ଜଣାଉଛି ଆକାଶ ଅଗଣାରେ । ଯାହା ଦେଖି କ୍ଷଣିକ ସକାଶେ ଦର୍ଶକ ନିଜର ଦୁଃଖ ଭୁଲିଯାଏ ।

### ବତ୍ରିଶ ସିଂହାସନ

କୋରାପୁଟଠାରୁ ୩୨ କି.ମି. ଦକ୍ଷିଣକୁ ଗଲେ ନନ୍ଦପୁର ପଡ଼ିଥାଏ । ଏହା ଏକ ଐତିହାସିକ ସ୍ଥାନ, ନାନ୍ଦନିକରେ ନନ୍ଦପୁର । ବସ୍‌ଷ୍ଟାଣ୍ଡ ପାଖରେ ଥିବା ବତ୍ରିଶ ସିଂହାସନ ବିଶେଷ ମାନ୍ୟତା ପାଇଛି । ନନ୍ଦପୁର ଦିନେ ଜୟପୁର ରାଜାଙ୍କ ରାଜଧାନୀ ଥିଲା । ନନ୍ଦପୁର ସେତେବେଳେ ଉଜ୍ଜୟିନୀ ରାଜା ବିକ୍ରମାଦିତ୍ୟଙ୍କ ସିଂହାସନ ସଦୃଶ ରାଜା ବିକ୍ରମଦେବ ଏକ ସିଂହାସନ ନିର୍ମାଣ କରିଥିଲେ ଏବଂ ଏହାର ନାମକରଣ କରିଥିଲେ ବତ୍ରିଶ ସିଂହାସନ । ଅନେକ ଜନଶ୍ରୁତି ମଧ୍ୟ ରହିଛି ଏହି ସିଂହାସନ ନିର୍ମାଣ ଉପରେ । ରାଜା ବିନାୟକ ଦେବ ଏହି ସିଂହାସନକୁ ପ୍ରତିଷ୍ଠା

କରି ସିଂହାସନ ଆରୋହଣ କରିଥିଲେ । ଏହି ସିଂହାସନରେ ୩୨ଟି ପାହାଚ ରହିଛି । ପ୍ରତିଟି ପାହାଚର ପାର୍ଶ୍ୱରେ ୩୨ ଜଣ ଦେବୀଙ୍କ ଶାଳଗ୍ରାମ ରହିଛି । ଏହି ସ୍ଥାନଟି ପବିତ୍ର ସ୍ଥାନ । ଯେତେବେଳେ ମହାରାଜା ବତ୍ରିଶ ସିଂହାସନରେ ବସନ୍ତି, ସେତେବେଳେ ସେ ଉପଯୁକ୍ତ ନ୍ୟାୟ ଦେବା ପାଇଁ ଚିନ୍ତା କରିଥାନ୍ତି । ମହାରାଜା ଈଶ୍ୱରଙ୍କୁ ସାକ୍ଷୀ ରଖି ସେଠାରେ ନ୍ୟାୟ ପ୍ରଦାନ କରିଥାନ୍ତି । ଏବେ ମଧ ବତ୍ରିଶ ସିଂହାସନ ପାଖକୁ ଗଲେ ଅନ୍ୟାୟ, ଅନୀତିର ପାଖ ମାଡ଼େନାହିଁ ବୋଲି ମନେହୁଏ, ଉପଯୁକ୍ତ ନ୍ୟାୟ କଥା ମନକୁ ଆସିଯାଏ । ତେଣୁ ଏହି ସିଂହାସନ ଦେବଭୂମିର ମାନ୍ୟତା ପାଇଛି । ଏଠାରେ କୌଣସି ପୂଜା ହୁଏ ନାହିଁ । କେବଳ ଦୁର୍ଗାପୂଜା ଦିନ ଏଠାରେ ପୂଜା କରାଯାଏ । ଏହାର ନିକଟରେ ଗୋଟିଏ ମନ୍ଦିର ରହିଛି । ସେଠାରେ ପ୍ରତିଦିନ ପୂଜାରୀ ପୂଜା କରିଥାନ୍ତି । ଦୁର୍ଗାପୂଜା ଦିନ କୁଟୁଣୀ ମାଳା ପର୍ବତରୁ ଧାନ ଜୟପୁର ମହାରାଜାଙ୍କ ନଅରକୁ ଯାଇଥାଏ । ସେଠାରେ ରାଜା ସେହି ଧାନରେ ନୂଆ ଖାଇଥାନ୍ତି ଏବଂ ଏହି ଧାନଭାର ସହିତ ନନ୍ଦପୁରର ଲାଠି ଜୟପୁର ରାଜନଅରକୁ ମଧ ଯାଇଥାଏ । ବତ୍ରିଶ ସିଂହାସନ ଆଜି ମଧ ଏକ ଆକର୍ଷଣୀୟ କେନ୍ଦ୍ରବିନ୍ଦୁ ହୋଇ ରହିଛି ।

**ମୁକ୍ତେଶ୍ୱର ପୀଠ ଶିବଲିଙ୍ଗ**

କୋରାପୁଟଠାରୁ ୪୦ କି.ମି. ଯିବା ପରେ ପଡ଼ିଥାଏ କାକରିଗୁମା । ତା'ପରେ ପଡ଼େ କୁସୁମଗୁଡ଼ା । ସେଠାରୁ ଦକ୍ଷିଣକୁ ୪ କି.ମି. ଯିବା ପରେ ପଡ଼ିଥାଏ କୁଟୁଣୀ ପଦର । କୁଟୁଣୀ ପଦରଠାରେ ରହିଛି ମୁକ୍ତେଶ୍ୱର ଶୈବପୀଠ, ଯେଉଁଠାରେ ସହସ୍ରାଧିକ ଶିବଲିଙ୍ଗ ଦେଖିବାକୁ ମିଳିଥାଏ । ପୂଜାରୀ କହିଥାନ୍ତି ଏହା ଗୋଟିଏ ଛୋଟ ପାହାଡ଼ । ସେହି ଛୋଟ ପାହାଡ଼କୁ କାଟି ଗୁମ୍ଫା ହୋଇଥିଲା । ଏହି ପ୍ରବେଶ ଦ୍ୱାରକୁ ଜ୍ୟୋତିର୍ଲିଙ୍ଗ ଗୁମ୍ଫା କୁହାଯାଏ । ପ୍ରବେଶ ଦ୍ୱାରଟି ଅତ୍ୟନ୍ତ ସଂକୀର୍ଣ୍ଣ । ଭିତରକୁ ଯିବାକୁ ହେଲେ ସାବଧାନତା ସହିତ ଯିବାକୁ ପଡ଼ିଥାଏ । ଏହି ଗୁମ୍ଫାର ଦ୍ୱାରଦେଶରେ ୨ଟି ସିଂହ ଏବଂ ମା' ପାର୍ବତୀ ରହିଛନ୍ତି । ଗୁମ୍ଫା ଭିତରେ ଯେଉଁ ଜାଗାରେ ଖୋଳାଯାଏ ସେଠାରେ ଶିବଲିଙ୍ଗ ବାହାରୁଛି । ଏହି ଗୁମ୍ଫା ଭିତରେ ତାରିଣୀ, ଦୁର୍ଗା, ଅନନ୍ତ ଶୟନ ବିଷ୍ଣୁ, ବ୍ରହ୍ମା, ଭୈରବ, ଜଗନ୍ନାଥ, ଗଣେଶ ଆଦି ଦେବାଦେବୀ ରହିଛନ୍ତି । ପ୍ରତି ଶିବଲିଙ୍ଗ ୪ ଫୁଟ ଉଚ୍ଚତା ବିଶିଷ୍ଟ । ଭକ୍ତର ମନସ୍କାମନା ପୂର୍ଣ୍ଣ ହେଲା ପରେ ଭକ୍ତ ଘଣ୍ଟି ଏବଂ ନଡ଼ିଆ କଦଳୀ ଶିବଙ୍କୁ ଅର୍ପଣ କରିଥାଏ । ଏଠାରେ ରୋଗ, ବୈରାଗ, ଅପୁତ୍ରିକକୁ ପୁତ୍ର କନ୍ୟା ସନ୍ତାନ ଲାଭ ପ୍ରଭୁଙ୍କ କୃପାରୁ ମିଳିଥାଏ ବୋଲି ଲୋକଙ୍କ ବିଶ୍ୱାସ ରହିଛି । ଗୁମ୍ଫା ଭିତରେ ଏକ ଜଳକୁଣ୍ଡ ରହିଛି । ମନ୍ଦିରଟି ଅତି ପୁରାତନ ମନ୍ଦିର ଅଟେ ।

ଏହା ବ୍ୟତୀତ କୋରାପୁଟ ଜିଲ୍ଲାରେ ଅନେକ ଦର୍ଶନୀୟ ସ୍ଥାନମାନ ରହିଛି । ଯଥା– ବାଲଦା ଗୁମ୍ଫା, ରାଇସିଲ ଜଳପ୍ରପାତ, ପୁଟସିଲ ଜଳପ୍ରପାତ, ଗାଲି ଗାବଡ଼ା ଜଳପ୍ରପାତ, ଡୁମରିପୁଟ ହନୁମାନ ମନ୍ଦିର, ଡ଼ିଡ଼ି ଘାଟ ଲକ୍ଷ୍ମୀପୁର ଓ ଲକ୍ଷ୍ମୀପୁର ଟନେଲ ଇତ୍ୟାଦି ।

ପାଇଲ ସାହି, ଜୟପୁର, କୋରାପୁଟ



# ଅନନ୍ୟ ପର୍ଯ୍ୟଟନ ସ୍ଥଳ – ମୟୂରଭଞ୍ଜ

**କମଳ କୁମାର ରାଉତ**

ଚାରିଆଡ଼େ ସ୍ଥଳଭାଗ, ପାହାଡ଼, ଜଙ୍ଗଲ ଓ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପରିପୂର୍ଣ୍ଣ ମୟୂରଭଞ୍ଜ ଓଡ଼ିଶାର ଉତ୍ତର ସୀମାରେ ଅବସ୍ଥିତ । ଏହାର ସଦର ମହକୁମା ବାରିପଦା ଅଟେ । ବ୍ରିଟିଶ୍ ଶାସନ କାଳରେ ଏହା ଏକ ସ୍ୱତନ୍ତ୍ର ରାଜ୍ୟ ଥିଲା ଓ ଭଞ୍ଜ ରାଜତ୍ୱ ଚାଲିଥିଲା । ଭଞ୍ଜ ରାଜାମାନେ କଳା ଓ ସ୍ଥାପତ୍ୟକୁ ଅଗ୍ରାଧିକାର ଦେଉଥିଲେ । ତେଣୁ ବହୁ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ତିଆରି କରିବାରେ ଓ ଆଦିବାସୀ ଛଉ ନୃତ୍ୟର ପ୍ରଚାର ଏବଂ ପ୍ରସାରରେ ସେମାନେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । କଟକରେ ଶ୍ରୀରାମଚନ୍ଦ୍ର ମେଡିକାଲ୍ ସ୍ଥାପନ କରିବା ଏବଂ ରେଭେନ୍ସା କଲେଜ ପାଇଁ ସ୍ୱତନ୍ତ୍ର ଜମି ଓ ଅର୍ଥଦାନ କରିବା ତାଙ୍କର ମହାନତାର ପରିଚୟ ଦିଏ । ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓଙ୍କ ଦ୍ୱାରା ମୟୂରଭଞ୍ଜ ରାଜ୍ୟରେ ରେଳ ରାସ୍ତା ସ୍ଥାପିତ ହୋଇଥିଲା ଏବଂ ପ୍ରଥମଥର ପାଇଁ ଏହା ରୁପ୍‌ସାଠାରୁ ବାରିପଦା ଯାଏଁ ୫୨ କି.ମି. ପର୍ଯ୍ୟନ୍ତ ଅତିକ୍ରମ କରିଥିଲା । ଏହି ରାଜତ୍ୱର ଶେଷ ରାଜା ପ୍ରତାପ ଚନ୍ଦ୍ର ଭଞ୍ଜଦେଓ ୧୯୪୯ ମସିହା ଜାନୁଆରୀ ୧ ତାରିଖ ଦିନ ରାଜ୍ୟକୁ Indian Union ସହିତ ମିଶାଇ ଦେଇଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଭଞ୍ଜରାଜାମାନଙ୍କର ମଧ୍ୟ ଉଲ୍ଲେଖନୀୟ ଅବଦାନ ରହିଥିଲା ।

ମୟୂରଭଞ୍ଜର ଶିମିଳିପାଳ UNESCO World Heritage Siteରେ ଏକ ସ୍ୱତନ୍ତ୍ର ସ୍ଥାନ ପାଇଥିବା ପର୍ଯ୍ୟଟନ ସ୍ଥଳ ଅଟେ । ଜନଶ୍ରୁତି ଅନୁସାରେ ଏକଦା ଶିମିଳିପାଳ ଅରଣ୍ୟ ଅନେକ ଶିମିଳି ଗଛରେ ଭରପୂର ଥିଲା । ଖରାଦିନେ ଲାଲ୍ ରଙ୍ଗର ଶିମିଳି ଫୁଲରେ ଏଠାକାର ଜଙ୍ଗଲ ଓ ପରିବେଶ ଚହଟି ଉଠୁଥିଲା । ସେଥିପାଇଁ ଏହାର ନାମ ଶିମିଳି ପାହାଡ଼, ଯାହା ଏବେ ଅପଭ୍ରଂଶ ହୋଇ ଶିମିଳିପାଳ କୁହାଯାଉଛି । ଶିମିଳିପାଳ ଏକାଧାରରେ ବ୍ୟାଘ୍ର ପ୍ରକଳ୍ପ, ଅଭୟାରଣ୍ୟ, ପ୍ରସ୍ତାବିତ ଜାତୀୟ ଉଦ୍ୟାନ, ହସ୍ତୀ ଅଭୟାରଣ୍ୟ ତଥା ଜୈବ ମଣ୍ଡଳର ବିଚିତ୍ର ସମାହାର । ଶିମିଳିପାଳ ବାଘମାନଙ୍କର ଗର୍ଜନ ଓ ହାତୀମାନଙ୍କର ରଣହୁଙ୍କାର ସ୍ଥଳ । ମହାବଳ ବାଘ ଓ ହାତୀ ଏହି ଜଙ୍ଗଲର ମୁଖ୍ୟ ବନ୍ୟପ୍ରାଣୀ । ଦୁଇ ମୁଖ୍ୟ ପ୍ରାଣୀଙ୍କ ବ୍ୟତୀତ ଚିତାବାଘ, ହେଟାବାଘ, ଗୟଳ, କୁଟୁରା, ସମ୍ବର, ବାର୍‌ହା, ବନ୍ୟ କୁକ୍କୁର, ଗାଢଭାଲୁ, ଉଡନ୍ତା ଗୁଣ୍ଡୁଚି, ବଜ୍ରକାପ୍ତା, ମୟୂର, ଝିଙ୍କପକ୍ଷୀ, ଗୋଧି ଇତ୍ୟାଦି ଏହି ଜଙ୍ଗଲରେ ଦେଖିବାକୁ ମିଳେ । ଶିମିଳିପାଳ ବିଶେଷକରି ଶାରୀ ବା ମଇନା ପକ୍ଷୀଙ୍କ ପାଇଁ ପ୍ରସିଦ୍ଧ । ସରୀସୃପମାନଙ୍କ ମଧ୍ୟରେ ଅଛନ୍ତି, ବିଲୁପ୍ତ ପ୍ରାୟ ଅହିରାଜ, ଅଜଗର, ନାଗ, ମଗର ବା ବଉଳା କୁମ୍ଭୀର ଇତ୍ୟାଦି । ଶିମିଳିପାଳ ଅରଣ୍ୟରେ ମୁଖ୍ୟତଃ ଦେଖିବା ମିଳେ ଆର୍ଦ୍ର ପର୍ଣ୍ଣମୋଚୀ ଶାଳ ଜଙ୍ଗଲ । ଶତକଡ଼ା ୫୦ ଭାଗ ଗଛ ହେଉଛି ଶାଳ ଗଛ । ଏହା ବ୍ୟତୀତ ଶିମୁଳି, ଅର୍ଜୁନ, ଅଶୋକ, ଚମ୍ପା, ଜାମୁ, ମାଙ୍କଡ଼ାକେନ୍ଦୁ, ମହୁଲ, ପିଆଶାଳ ଆଦି ମୂଲ୍ୟବାନ୍ ବୃକ୍ଷରାଜି, ୨୦୦ରୁ ଊର୍ଦ୍ଧ୍ୱ ପ୍ରଜାତିର ଔଷଧୀୟ ବୃକ୍ଷରାଜି, ଗୁଳ୍ମ ଏଠାରେ ମିଳିଥାଏ । ରାଜ୍ୟର ସବୁଠାରୁ ଆର୍ଦ୍ରତମ ଅଞ୍ଚଳ ଶିମିଳିପାଳ ବିଶେଷ କରି ଜୁନ୍ ମାସ ମଧ୍ୟଭାଗରୁ ସେପ୍ଟେମ୍ବର ମାସ ଶେଷ ପର୍ଯ୍ୟନ୍ତ ଏଠାରେ ଯଥେଷ୍ଟ ବର୍ଷା ହୁଏ । ବର୍ଷାଦିନେ

ଶିମିଳିପାଳ ଭିତରକୁ ପ୍ରବେଶ କରିବା ବଡ଼ କଷ୍ଟକର । ଅକ୍ଟୋବର ଓ ନଭେମ୍ବର ମାସରେ ଏଠାକୁ ଶୀତଳ ଓ ମନୋମୁଗ୍ଧକର ଶୀତଋତୁର ଆଗମନ ହୁଏ । ଶିମିଳିପାଳର ଉପତ୍ୟକାମାନଙ୍କରେ ଜାନୁଆରୀ ମାସର ପ୍ରଥମାର୍ଦ୍ଧରୁ ଗଭୀର ଭାବେ ଶୀତ ଅନୁଭୂତ ହୁଏ । ଗ୍ରୀଷ୍ମଋତୁରେ ଶିମିଳିପାଳରେ ରାତ୍ରି ବେଶ୍ ଶୀତ ଅନୁଭୂତ ହୁଏ । ଏଠିକାର ନିଘଞ୍ଚ ଅରଣ୍ୟ ଓ ପାହାଡ଼, ପର୍ବତ, ଖୋଲମାନଙ୍କରେ ଚିରସ୍ରୋତା ଝରଣା ଓ ପାହାଡି ନଈ ସର୍ବଦା ପ୍ରବାହମାନ । ଏହାର ପ୍ରଭାବରେ ଏଠିକାର ବାୟୁମଣ୍ଡଳର ଆର୍ଦ୍ରତା ବର୍ଷସାରା ଯଥେଷ୍ଟ ଥାଏ । ଗ୍ରୀଷ୍ମଋତୁରେ ଶିମିଳିପାଳ ଭିତରେ ଥିବା ଡାକବଙ୍ଗଳାମାନଙ୍କରେ ରାତ୍ରିଯାପନ ଏକ ନିଆରା ଅନୁଭୂତି । ଖରାଦିନେ ମଧ୍ୟ ମୃଦୁ ମନ୍ଦ ଶୀତଳ ପବନ ସଂଚରି ଯାଇ ଦେହ ଓ ମନକୁ ଉଲ୍ଲସିତ କରିଦିଏ । ନଭେମ୍ବର ମାସରୁ ଜୁନ୍ ମାସ ମଧ୍ୟଭାଗ ପର୍ଯ୍ୟନ୍ତ ଅର୍ଥାତ୍ ବର୍ଷା ଆରମ୍ଭ ହେବା ପୂର୍ବରୁ ଶିମିଳିପାଳ ଜଙ୍ଗଲ ଭିତରୁ ପରିଭ୍ରମଣରେ ଯିବା ପ୍ରକୃଷ୍ଟ ସମୟ । ପ୍ରକୃତିପ୍ରେମୀ ପର୍ଯ୍ୟଟକମାନଙ୍କ ପାଇଁ ଶିମିଳିପାଳ ଅଭୟାରଣ୍ୟ ଭିତରେ ଅନେକ ରମଣୀୟ ପ୍ରାକୃତିକ ପର୍ଯ୍ୟଟନ ସ୍ଥଳ ରହିଛି ।

**୧) ରାମତୀର୍ଥ –** ଶିମିଳିପାଳ ଜଙ୍ଗଲରୁ ବାହାରିଥିବା ଖଇରି ଓ ଭଣ୍ଡାନ ନଦୀର ସଙ୍ଗମ ସ୍ଥଳରେ ରହିଛି ରାମତୀର୍ଥ । ନଦୀ ପଠାର ସୁଦୃଶ୍ୟ ପଥର ଚଟାଣ ଉପରେ ଥିବା ରାମ ମନ୍ଦିର ହିନ୍ଦୁମାନଙ୍କର ପବିତ୍ର ଉପାସନା ପୀଠ । ଏଠିକାର ରମଣୀୟ ପିକ୍‌ନିକ୍ ସ୍ପଟ୍‌କୁ କେନ୍ଦ୍ର କରି ଗଢ଼ି ଉଠିଛି କୁମ୍ଭୀର ଗବେଷଣା କେନ୍ଦ୍ର । ପର୍ଯ୍ୟଟନମାନଙ୍କ ରହିବା ପାଇଁ ରାମତୀର୍ଥରେ ରହିଛି ଚିଙ୍କାରାଭିଲ୍ଲା, ଚିତଳଭିଲ୍ଲା, ଚଉସିଙ୍ଗାଭିଲ୍ଲା, ଆଦିବାସୀ କୁଟୀର ଓ ଦେବସ୍ଥଳ କଟେଜ୍ ଇତ୍ୟାଦି । ରହଣି ଅବସରରେ ପର୍ଯ୍ୟଟକମାନଙ୍କୁ ଖାଦ୍ୟପେୟ ଓ ଆବଶ୍ୟକତା ସେବା ଯୋଗାଇ ଦେବା ନିମନ୍ତେ ଶିମିଳିପାଳ ଇକୋ–ଟୁରିଜିମ୍ ସୋସାଇଟି ତରଫରୁ ଟି.କେ. ଇଣ୍ଟରନ୍ୟାସ୍‌ନାଲ୍‌କୁ ଦାୟିତ୍ୱ ଦିଆଯାଇଛି ।

**୨. ଲୁଲୁଙ୍ଗ –** ଶିମିଳିପାଳ ଅଭୟାରଣ୍ୟ ଭିତରକୁ ପଶିବା ନିମନ୍ତେ ଲୁଲୁଙ୍ଗ ଅନ୍ୟତମ ପ୍ରବେଶ ଦ୍ୱାର । ଏହା ପଲପଲା ନଦୀର ଏକ ଶାଖା ନଦୀ କୂଳରେ ଅବସ୍ଥିତ । ଚିରସ୍ରୋତା ଜଳ ଉତ୍ସରେ ଭରା ଏହି ଶାଖା ନଦୀର କାଚସ୍ୱଚ୍ଛିକ ପରି ସ୍ୱଚ୍ଛ ଜଳ ନଦୀ ପଠାରେ ଥିବା ବିଭିନ୍ନ ଆକୃତିର ବାଲିଗରଡ଼ା ଏବଂ ନଦୀର ଉଭୟ ପାର୍ଶ୍ୱରେ ଥିବା ଘଞ୍ଚ ଅରଣ୍ୟାନୀ ଏଠାକୁ ପର୍ଯ୍ୟଟକ ଓ ଦର୍ଶକମାନଙ୍କୁ ଆକୃଷ୍ଟ କରିଥାଏ । ପର୍ଯ୍ୟଟକମାନଙ୍କ ରହିବା ନିମନ୍ତେ ଏକ ସୁଦୃଶ୍ୟ ପାନ୍ଥନିବାସ ଓଡ଼ିଶା ପର୍ଯ୍ୟଟନ ନିଗମ ଦ୍ୱାରା ଏଠାରେ ନିର୍ମାଣ କରାଯାଇଛି । ଖାଦ୍ୟପେୟର ଉପଯୁକ୍ତ ବନ୍ଦୋବସ୍ତ ଥିବା ହେତୁ ଏଠିକାର ପାନ୍ଥନିବାସରେ ରାତ୍ରିଯାପନ କରି ଦିନବେଳା ଅଭୟାରଣ୍ୟ ଭିତରେ ବୁଲିବାକୁ ଅନେକ ପର୍ଯ୍ୟଟକ ପସନ୍ଦ କରିଥାନ୍ତି ।

**୩. ଗୁରୁଗୁଡ଼ିଆ –** ଖଇରୀ ନଦୀ କୂଳରେ ଅବସ୍ଥିତ ଏବଂ ନିବିଡ଼ ଘଞ୍ଚ ଜଙ୍ଗଲ ଦ୍ୱାରା ପରିବେଷ୍ଟିତ ଗୁରୁଗୁଡ଼ିଆ, ଶୈଳ ନିବାସର ଭ୍ରମ ସୃଷ୍ଟି କରେ । ରାତ୍ରିଯାପନ ପାଇଁ ଏଠାରେ ବନ ବିଭାଗର ଡାକବଙ୍ଗଳା, ବାଉଁଶ ଘର ଏବଂ ଟୁରିଷ୍ଟ କଟେଜ୍‌ମାନ ରହିଛି । ଏଠାରେ ଏକ ଅର୍କିଡିୟମ ମଧ୍ୟ ନିର୍ମାଣ କରାଯାଇଛି (ଚିତ୍ରା ଜାତୀୟ ଉଦ୍ଭିଦ ସଂଗ୍ରହ କରାଯାଇ ଲଗାଯାଏ) । ଅର୍କିଡର ବିବିଧତା ପାଇଁ ଏହି ସ୍ଥାନ ପ୍ରସିଦ୍ଧ ଅଟେ । ଖରାଦିନେ ବିଶେଷ କରି ମଇ ଓ ଜୁନ୍ ମାସରେ ଅର୍କିଡ୍ ସବୁ ରଙ୍ଗ ବେରଙ୍ଗ ଫୁଲରେ ଭରିଯାଏ । ପର୍ଯ୍ୟଟକମାନଙ୍କୁ ହାତୀ ପିଠିରେ ବସେଇ ଜଙ୍ଗଲ ଭିତରେ ବୁଲାଇବା ନିମନ୍ତେ ପୋଷା ହାତୀ ମଧ୍ୟ ଅଛନ୍ତି । ଅନ୍ୟଥା ଜଣେ ପ୍ରକୃତିପ୍ରେମୀ ପର୍ଯ୍ୟଟକ ଅଙ୍କାବଙ୍କା ପାହାଡ଼ିଆ ରାସ୍ତାରେ ଚାଲିଚାଲି ପ୍ରକୃତିର ସୌନ୍ଦର୍ଯ୍ୟକୁ ମନଭରି ଉପଭୋଗ କରିପାରିବ ।

**୪. ଚହଲା –** ଅଳ୍ପ କିଛି ପୁରାତନ ଇଉକାଲିପଟାସ୍ ଗଛ ଏବଂ ଚାରିପଟେ ଘେରି ରହିଥିବା ନିଘଞ୍ଚ ଶାଳ ଜଙ୍ଗଲ ଭିତରେ ରାଜକୀୟ ଠାଣିରେ ଠିଆ ହୋଇଛି ଚହଲା ଡାକ ବଙ୍ଗଳା । ଅତୀତରେ ମୟୂରଭଞ୍ଜ ରାଜାଙ୍କ ପାଇଁ ଜଙ୍ଗଲ ଥିଲା ପ୍ରମୋଦ ଉଦ୍ୟାନ । ଶିକାର କରିବାକୁ ହେଉ ଅଥବା ବନ୍ଧୁବାନ୍ଧବ ଏବଂ ପାରିଷଦମାନଙ୍କ ମନୋରଞ୍ଜନ ପାଇଁ ହେଉ, ବହୁ ସମୟରେ ସେମାନେ ଜଙ୍ଗଲକୁ ଚିତ୍ତବିନୋଦନ

ସ୍ଥଳୀ ଭାବେ ବ୍ୟବହାର କରୁଥିଲେ । ଡାକବଙ୍ଗଳା ସାମ୍ନାରେ ଥିବା ବିସ୍ତୃତ ଘାସ ପଡ଼ିଆରେ ସକାଳେ ଓ ଅପରାହ୍ନରେ ପଲପଲ ହରିଣ, ମୟୂର ଚରୁଥିବାର ଦୃଶ୍ୟ ନିଶ୍ଚିତ ଭାବେ ଦେଖିବାକୁ ମିଳିବ । ସଞ୍ଜ ଗଡ଼ିଲା ପରେ ହାତୀମାନେ ମଧ୍ୟ ଆସନ୍ତି । ଏଠାରେ ଥିବା ଆଡ଼ି ବନ୍ଧକୁ ପାଣି ପିଇବାକୁ ଆସୁଥିବା ଜୀବଜନ୍ତୁଙ୍କ ଦେଖିବା ପାଇଁ ଉପରେ କାଚ ଓ କାଠ ଦ୍ୱାରା ଆବୃତ କରାଯାଇଥିବା ସୁନ୍ଦର ନିରୀକ୍ଷଣ ମଞ୍ଚଟିଏ ମଧ୍ୟ ନିର୍ମାଣ କରାଯାଇଛି । ଅନେକ ଦୃଷ୍ଟିରୁ ସବୁ ଶ୍ରେଣୀ ପର୍ଯ୍ୟଟକମାନଙ୍କର ଏହା ପ୍ରଥମ ପସନ୍ଦ 'ଚହଲା'।

**୫. ନଅଣା –** ସବୁଜ ସୁନ୍ଦର ବିସ୍ତାରିତ ଉପତ୍ୟକାଟିଏ । ମଝିରେ ମଝିରେ ଧାନ କ୍ଷେତ । ଶୀତଦିନେ ଉପତ୍ୟକାର ଦୃଶ୍ୟ ବିଶେଷକରି ସକାଳୁ ସକାଳୁ ଘାସ ପଡ଼ିଆ ଉପରେ ଶିଶିର ଚାଦର ବିଛେଇ ହୋଇ ରହିଥିବା ଦୃଶ୍ୟ ପର୍ଯ୍ୟଟକମାନଙ୍କ ମନକୁ ମୋହିନିଏ ।

**୬. ମେଘାସନୀ –** ସମୁଦ୍ର ପତନଠାରୁ ୧୧୬୩ ମିଟର ଉଚ୍ଚରେ ଅବସ୍ଥିତ ଏହି ଗିରିଶୃଙ୍ଗ । ବର୍ଷସାରା ଭିଣା ତୂଳା ପରି ଖଣ୍ଡଖଣ୍ଡ ଚଲାମେଘ ଏହି ଗିରିଶୃଙ୍ଗ ଚାରିପଟେ ଏବଂ ନିମ୍ନ ଦେଶରେ ଗଛଲତାଭରା ଉପତ୍ୟକା ଉପରେ ଯାତାୟାତ କରୁଥାଆନ୍ତି । ଶୃଙ୍ଗ ଉପରେ ଥିବା ପଥର ଚଟାଣ ଉପରେ ବସିଲେ ଚାରିପଟର ଘଞ୍ଚ ସବୁଜ ଶ୍ୟାମଳିମା ଦୃଶ୍ୟ ପର୍ଯ୍ୟଟକମାନଙ୍କୁ ବହୁତ ଆନନ୍ଦ ଦିଏ ।

**୭. ବରେହିପାଣି –** ଶିମିଳିପାଳ ଜଙ୍ଗଲ ଭିତରେ ଥିବା ଏକ ଜଳପ୍ରପାତ ବରେହିପାଣି । ସ୍ଥାନୀୟ ଭାଷାରେ ବରେହି ଅର୍ଥ ଦଉଡ଼ି । ହାତୀ ଗୋଡ଼ ପରି ମୋଟ ଦଉଡ଼ି ଆକୃତିର ହୋଇଥିବାରୁ ନାଁ ଦିଆଯାଇଛି ବରେହିପାଣି । ୪୦୦ ମିଟର ଉଚ୍ଚତା ବିଶିଷ୍ଟ ଏହି ଜଳପ୍ରପାତଟି ଗୁରୁ ଗମ୍ଭୀର ଗର୍ଜନ କରି ପାହାଡ଼ ଉପରୁ ଗିରି ସଂକଟ ମଧ୍ୟକୁ ରାଜକୀୟ ଠାଣିରେ ଖସି ପଡୁଛି । ପ୍ରପାତର ପାଦ ଦେଶରୁ ବୁଢ଼ା ବଳଙ୍ଗ ନଦୀ ବାହାରି ସମତଳ ଅଞ୍ଚଳକୁ ବୋହିଯାଇଛି । ଗିରି ସଙ୍କଟର ଆରପଟେ ଜଳ ପ୍ରପାତର ଠିକ୍ ସମ୍ମୁଖରେ ପର୍ଯ୍ୟଟକମାନଙ୍କର ରାତ୍ରିଯାପନ ପାଇଁ ରହିଛି କାଠରେ ନିର୍ମିତ ଡାକବଙ୍ଗଳା ଓ ଲଗ୍ ହାଉସ୍ । ବଙ୍ଗଳା ବାରଣ୍ଡାରେ ବସିଲେ ମନେହୁଏ ଯେପରି ଚିତ୍ରକରଟିଏ ସ୍ତର ସ୍ତର ପଥର ଉପରେ ଜଳଧାରା ଖସିପଡୁଥିବାର ଚିତ୍ର ଆଙ୍କି ଦେଇଛି ।

**୮.ଯୋରନ୍ଦା –** ୧୮୧ ମିଟର ଉଚ୍ଚତା ବିଶିଷ୍ଟ ଅନ୍ୟତମ ରମଣୀୟ ଜଳପ୍ରପାତ ଯୋରନ୍ଦା ସିଧାସଳଖ ପାହାଡ଼ ଉପରୁ ଗିରିସଙ୍କଟ ମଧ୍ୟକୁ ଖସିପଡ଼ିଛି । ତଳେ ବିଚ୍ଛୁରିତ ହେଉଥିବା ଜଳକଣିକା ମେଘର ଭ୍ରମ ସୃଷ୍ଟି କରିଥାଏ । ଯୋରନ୍ଦାଠାରେ ବନ ବିଭାଗର ଡାକବଙ୍ଗଳା ମଧ୍ୟ ରହିଛି । ସୂର୍ଯ୍ୟ ଅସ୍ତ ହେବା ସହିତ ବଙ୍ଗଳା ଚାରିପଟେ ଥିବା ସବୁଜ ଉପତ୍ୟକା ବର୍ଣ୍ଣିଳ ହୋଇଉଠେ । ସାମ୍ନାର ଘାସ ପଡ଼ିଆରେ ପଲପଲ ହରିଣ, ସମ୍ବର ଓ ବେଳେବେଳେ ହାତୀମାନ ଚରୁଥିବାର ଦେଖାଯାଏ । ପ୍ରକୃତିର ସୌନ୍ଦର୍ଯ୍ୟକୁ ଉପଭୋଗ ନିମନ୍ତେ ପର୍ଯ୍ୟଟକମାନଙ୍କ ପାଇଁ ଏଠାରେ ଏକ ନିରୀକ୍ଷଣ ମଞ୍ଚଟିଏ ରହିଛି ।

ଏତଦ୍‌ବ୍ୟତୀତ ମୟୂରଭଞ୍ଜର କିଛି ଐତିହାସିକ ତଥା ଦର୍ଶନୀୟ ସ୍ଥାନ ମଧ୍ୟ ପର୍ଯ୍ୟଟକମାନଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥାଏ । ସେଗୁଡିକ ହେଲା–

**୧. ଖିଚିଂ –** ଏହା ଅନେକ ବର୍ଷ ପୂର୍ବେ ଭଞ୍ଜ ରାଜବଂଶର ରାଜଧାନୀ ଥିଲା । ଏଠାରେ ଏବେ ସୁଦ୍ଧା ରାଜନବର ଧ୍ୱଂସାବଶେଷ ରହିଛି । ଏହା ବାରିପଦାଠାରୁ ପ୍ରାୟ ୮୦ କି.ମି. ଦୂରରେ ଅବସ୍ଥିତ । ଏଠାରେ ବଡ଼ ବଡ଼ ଶାଳ ଓ ଆମ୍ବଗଛମାନ ଦୃଶ୍ୟମାନ ହୁଏ । ଅନେକ ଗୁଳ୍ମ ଲତା, ଫୁଲ ଫଳରେ ସୁଶୋଭିତ ଏହି ସ୍ଥାନଟି ଦର୍ଶକଙ୍କୁ ଆକର୍ଷଣ କରିଥାଏ । ଏହି ସ୍ଥାନର ପଥର ଖୋଦିତ ମୂର୍ତ୍ତିମାନଙ୍କର କଳାଭାସ୍କର ଦର୍ଶକମାନଙ୍କୁ ମୁଗ୍ଧ କରିଥାଏ । ଏବେ ସୁଦ୍ଧା ଏଠାକାର ଶିଳ୍ପୀମାନେ ଧଳା ପଥର ଓ କଳା ମୁଗୁନି ପଥରରେ ବିଭିନ୍ନ ପ୍ରକାର ମୂର୍ତ୍ତି ନିର୍ମାଣ କରୁଛନ୍ତି । ଖିଚିଂର ଉମା ମହେଶ୍ୱର ପ୍ରସ୍ତର ମୂର୍ତ୍ତି ଅତ୍ୟନ୍ତ ମନୋହର । ଖିଚିଂର ମ୍ୟୁଜିୟମ୍‌ଠାରେ ବହୁ ପ୍ରାଚୀନ ମୂର୍ତ୍ତି ସଂରକ୍ଷିତ ହୋଇ ରହିଛି । ଏହାଛଡ଼ା ତାମ୍ର ପାତ୍ର ଲିପି, ଗୁପ୍ତଶାସନ କାଳର ମୁଦ୍ରା ଓ ଅନେକ ପୁରୁଣା ତାଳପତ୍ରର ପୋଥି ରହିଅଛି । ଖିଚିଂଠାରେ କିଚକେଶ୍ୱରୀ ମନ୍ଦିର ଅବସ୍ଥିତ । ଏଠାରେ ପୂଜିତ କିଚକେଶ୍ୱରୀ ମୟୂରଭଞ୍ଜ ଭଞ୍ଜ ରାଜବଂଶର

କୁଳ ଠାକୁର । ଏହି ମନ୍ଦିରଟି କଳା ମୁଗୁନି ପଥରରେ ନିର୍ମିତ ହୋଇଅଛି । ଏହାର ପ୍ରଧାନ ବିଶେଷତ୍ୱ ହେଉଅଛି ଯେ, ଏହି ମନ୍ଦିରର ମୁଖଶାଳା ନାହିଁ । ମନ୍ଦିର ପରିସରରେ ଏକ ଶିବ ମନ୍ଦିର ରହିଛି । ପ୍ରତିବର୍ଷ ଶିବରାତ୍ରୀ ଦିନ ଏଠାରେ ବଡ଼ଧରଣର ଉତ୍ସବ ପାଳିତ ହୁଏ । ମନ୍ଦିର ବେଢାରେ ଏକ ଆଶ୍ଚର୍ଯ୍ୟ ଓଜନଦାର ବୃହତ୍ ଲୌହମୁଷଳ ରହିଛି । ଜନଶ୍ରୁତିରୁ ଜଣାଯାଏ ଯେ, ଏହା ମହାଭାରତ ଯୁଦ୍ଧର ଭୀମସେନଙ୍କ ଗଦା ଅଟେ । ଆମ ରାଜ୍ୟ ଓ ରାଜ୍ୟ ବାହାରୁ ଅନେକ ଭକ୍ତ, ଦର୍ଶକ ଓ ପର୍ଯ୍ୟଟକମାନେ ଏହି ମନ୍ଦିର କାରୁକାର୍ଯ୍ୟ ଓ ମା'ଙ୍କୁ ଦର୍ଶନ କରିବା ପାଇଁ ଏଠାକୁ ଆସିଥାଆନ୍ତି ।

**୨. ଦେବକୁଣ୍ଡ –** ବାରିପଦାଠାରୁ ୬୦ କି.ମି. ଦୂର ଉଦଳା ନିକଟବର୍ତ୍ତୀ ସ୍ଥାନରେ ଦେବକୁଣ୍ଡ ଅବସ୍ଥିତ । ଏଠାକାର ପାହାଡ଼, ଘଞ୍ଚଜଙ୍ଗଲ ଓ ଝରଣାପୂର୍ଣ୍ଣ ସ୍ଥାନରେ ଅନେକ ପଥରକୁଣ୍ଡ ରହିଛି । ପୌରାଣିକ କିମ୍ବଦନ୍ତୀରୁ ଜଣାଯାଏ ଯେ, ଆଗେ ଦେବୀମାନେ ଏହିସବୁ କୁଣ୍ଡରେ ସ୍ନାନ କରୁଥିଲେ । ଦେବକୁଣ୍ଡର ଉପରିଭାଗ ପାହାଡ଼ ଉପରେ ମା' ଅମ୍ବିକାଙ୍କର ଏକ ମନ୍ଦିର ଅଛି, ଯାହାକି ଏକ ଶକ୍ତିପୀଠ ଅଟେ । ଆଦିବାସୀମାନଙ୍କର ଏହା ଏକ ତୀର୍ଥଭୂମି । ଏଠାରେ ସାନ୍ତାଳ ଆଦିବାସୀମାନେ ମକର ପର୍ବ ପାଳନ କରନ୍ତି ।

**୩. ଭୀମକୁଣ୍ଡ –** ବୁରିଙ୍ଗ ଗ୍ରାମ ପାଖରେ ଅବସ୍ଥିତ ଭୀମକୁଣ୍ଡ ବୈତରଣୀ ନଦୀ ଜଳରେ ସୃଷ୍ଟି ହୋଇଅଛି । କିମ୍ବଦନ୍ତୀ ଅନୁସାରେ, ଭୀମ ଅଜ୍ଞାତବାସରେ ବିରାଟ ନଗରରେ ଥିଲାବେଳେ ଏଠାରେ ଆସି ଗାଧୋଉ ଥିଲେ । ଯାହାକୁ ଏବେ କପ୍ତିପଦା କୁହାଯାଏ । ଏଠାରେ ପ୍ରତିବର୍ଷ ମକର ମେଳା ମହାଆଡ଼ମ୍ବରରେ ପାଳନ କରାଯାଏ ।

**୪. ସୀତାକୁଣ୍ଡ –** କିମ୍ବଦନ୍ତୀରୁ ଜଣାଯାଏ ଯେ, ମାତା ସୀତା ବନବାସ ସମୟରେ ଏକଦା ଏହି କୁଣ୍ଡରେ ସ୍ନାନ କରୁଥିଲେ । ସାତଗୋଟି ଝରଣାର ସମାବେଶ ସହିତ ବାମ ଓ ଡାହାଣ ପାର୍ଶ୍ୱରେ ହନୁମାନ ଏବଂ ଶିବ ମନ୍ଦିର ଅଛି । ପ୍ରକୃତିର ସବୁଜିମା ଦ୍ୱାରା ଆକୃଷ୍ଟ ହୋଇ ପାଖ ରାଜ୍ୟରୁ ବହୁ ପର୍ଯ୍ୟଟକ ଏଠାକୁ ବଣଭୋଜି କରିବାକୁ ଆସିଥାଆନ୍ତି ।

**୫. ଜଗନ୍ନାଥ ମନ୍ଦିର –** ବାରିପଦାରେ ଏହି ମନ୍ଦିର ବୈଦ୍ୟନାଥ ଭଞ୍ଜଦେବଙ୍କ ଦ୍ୱାରା ନିର୍ମାଣ କରାଯାଇଥିଲା । ୮୪ ଫୁଟ୍ ଉଚ୍ଚତା ବିଶିଷ୍ଟ ଏହି ମନ୍ଦିର ମାଙ୍କଡ଼ା ପଥରରେ ନିର୍ମିତ ହୋଇଅଛି । ବାରିପଦାର ରଥଯାତ୍ରା ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ରଥଯାତ୍ରା ଓ ସବୁଠାରୁ ପୁରାତନ ଅଟେ । ପୁରୀରେ ପାଳନ ହେଉଥିବା ରଥଯାତ୍ରା ଓ ବାହୁଡା ଯାତ୍ରାର ପରଦିନ ଏଠାରେ ରଥଯାତ୍ରା ଓ ବାହୁଡ଼ାଯାତ୍ରା ପାଳନ କରାଯାଏ । ଏଠାକାର ବିଶେଷତ୍ୱ ଏହିକି ଯେ, ସୁଭଦ୍ରାଙ୍କ ରଥକୁ ମହିଳାମାନେ ଟାଣନ୍ତି ।

ନୃତତ୍ତ୍ୱରେ ରୁଚି ରଖିଥିବା ପର୍ଯ୍ୟଟକମାନଙ୍କୁ ମିଳିବେ, ମୟୂରଭଞ୍ଜରେ ବାସ କରୁଥିବା କୋହ୍ଲ, ସାନ୍ତାଳ, ଭୂମିଜ, ଭାତୁଡି, ଗୋଣ୍ଡ ଆଦି ସମ୍ପ୍ରଦାୟର ଆଦିମ ଜନଜାତି । ଏମାନେ ସମସ୍ତେ ସ୍ଥାୟୀ କୃଷି ଉପରେ ନିର୍ଭର କରିଥାଆନ୍ତି । ଏଠାକାର ଦୁଇ ବିଶିଷ୍ଟ ଆଦିମ ଜନଜାତି ଖଡ଼ିଆ ଓ ମାଙ୍କଡ଼ିଆ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରି ଚଳନ୍ତି ।

ଏହା ଯଥାକ୍ରମେ ଭୁବନେଶ୍ୱରଠାରୁ ୨୫୦ କି.ମି., କୋଲକାତାରୁ ୨୨୨ କି.ମି. ଏବଂ ଝାଡ଼ଖଣ୍ଡରୁ ୨୬୬ କି.ମି. ଦୂରରେ ଅବସ୍ଥିତ । ଏହା ପର୍ଯ୍ୟଟକମାନଙ୍କ ଚିତ୍ତ ବିନୋଦନ ପାଇଁ ଏକ ସର୍ବଶ୍ରେଷ୍ଠ ସ୍ଥାନ ଓ ମର୍ତ୍ତ୍ୟର ନନ୍ଦନକାନନ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଘର ନଂ– ୧୨୯୧, ଦ୍ୱିତୀୟ ପର୍ଯ୍ୟାୟ
ଡୁମୁଡୁମା ହାଉସିଂବୋର୍ଡ କଲୋନୀ
ଭୁବନେଶ୍ୱର



# ଭାରତୀୟ ସିନେମା ଓ ପ୍ରମୋଦ ପତି

ଗୁରୁକଲ୍ୟାଣ ମହାପାତ୍ର

ପ୍ରାୟ ଆଠ ବର୍ଷ ତଳେ, ମେ ୩, ୨୦୧୩ ମସିହାରେ ଭାରତୀୟ ସିନେମାର ଶତବାର୍ଷିକ ପୂର୍ତ୍ତି ଉତ୍ସବ ଅନୁଷ୍ଠିତ ହୋଇଥିଲା । ତାହା ପୁଣି ଭାରତ



ସରକାରଙ୍କ ସୂଚନା ମନ୍ତ୍ରାଳୟ ଜରିଆରେ, ଅଳ୍ପ କେତେକ ସହରରେ । ଯଦିଓ ଭାରତୀୟମାନେ ସିନେମା ପ୍ରିୟ, ସ୍ୱତଃପ୍ରବୃତ୍ତ ଭାବେ ସେମାନେ ଏହି ଉତ୍ସବ ମହାଡ଼ମ୍ବରରେ ପାଳନ କରି ନ ଥିବା ପରିଲକ୍ଷିତ ହୋଇଥିଲା ସେତେବେଳେ । ସେହି ମେ ମାସ ୩ ତାରିଖରେ(୨୦୧୩) ଭାରତ ସରକାରଙ୍କ ସୂଚନା ମନ୍ତ୍ରାଳୟ ପକ୍ଷରୁ ଦୁଇଗୋଟି ନୂଆ ସିନେମା ମଧ୍ୟ ମୁକ୍ତିଲାଭ କରିଥିଲା ।

ବିଶ୍ୱ ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ମାତା ଓ ନିର୍ଦ୍ଦେଶକ ପଶ୍ଚିମବଙ୍ଗର ସତ୍ୟଜିତ ରାୟ ଜନ୍ମଗ୍ରହଣ କରିଥିଲେ କୋଲକାତା ମହାନଗରରେ ୧୯୨୧ ମସିହା ମେ ୨ ତାରିଖରେ । ତାଙ୍କର ଦେହାନ୍ତ ହୋଇଥିଲା ୧୯୯୨ ଏପ୍ରିଲ ୨୩ ତାରିଖରେ- ସେହି କୋଲକାତା ମହାନଗରରେ । ପ୍ରସିଦ୍ଧ ବଙ୍ଗଳା ଔପନ୍ୟାସିକ ବିଭୂତି ଭୂଷଣ ବନ୍ଦୋପାଧ୍ୟାୟଙ୍କ ରଚିତ ଉପନ୍ୟାସ ଆଧାରରେ ସତ୍ୟଜିତ ରାୟ ଯେଉଁ ‘ପଥେର ପାଞ୍ଚାଲି’ ନାମକ କ୍ଲାସିକାଲ୍ ବା ଶାସ୍ତ୍ରୀୟ ସିନେମା ବଙ୍ଗଳାରେ ନିର୍ମାଣ କରିଥିଲେ, ତାହା ହିଁ ‘ଆପୁ’ତ୍ରୟୀ ସିନେମା ଭାବେ ପରିଚିତ । ସେହି ସିନେମା ହିଁ ତାଙ୍କୁ ବିଶ୍ୱବିଖ୍ୟାତ କରିପାରିଥିଲା । ସତ୍ୟଜିତ ରାୟଙ୍କ ସିନେମାର ‘ଆପୁ’ଚରିତ୍ରକୁ ନେଇ ବିଶିଷ୍ଟ ଓଡ଼ିଆ କବି ସୀତାକାନ୍ତ ମହାପାତ୍ର ଏକ କବିତା ରଚନା କରିଥିବା ପରି ମୋର ମନେ ପଡୁଛି । ଦୁଃଖ ହୁଏ ଯେ, ସତ୍ୟଜିତ ରାୟଙ୍କ ଜନ୍ମ ଶତବାର୍ଷିକ ଗତ ମେ ୨ (୨୦୨୧) ମସିହାରୁ ଆରମ୍ଭ ହୋଇଥିଲେ ହେଁ ସରକାରୀ ବା ବେସରକାରୀ ସ୍ତରରେ ଏହାକୁ ଯେପରି ପ୍ରଚାର କରାଯିବା କଥା ତାହା ହୋଇପାରିନାହିଁ । ଏପରିକି ସିନେମାବାଲାମାନେ ମଧ୍ୟ

ଏହାକୁ ଗୁରୁତ୍ୱ ଦେଇ ନାହାନ୍ତି । ମୋର ଆହୁରି ମଧ୍ୟ ମନେ ପଡୁଛି ଯେ ଆଇ.ଏ.ଏସ୍. ଚାକିରି ଛାଡ଼ି ଜଣେ ବିଶିଷ୍ଟ ଓଡ଼ିଆ ଲେଖକ ହେବାକୁ ଚାହିଁଥିଲେ,ହେଲେ ମଧ୍ୟ । ସେ ହେଉଛନ୍ତି ଓଡ଼ିଆ କବି ଶ୍ରୀ ଜଗନ୍ନାଥ ପ୍ରସାଦ ଦାସ । ତାଙ୍କ ପ୍ରଥମ କବିତା ସଙ୍କଳନ 'ପ୍ରଥମ ପୁରୁଷ'ର ପ୍ରଚ୍ଛଦପଟ ଶିଳ୍ପୀ ଥିଲେ ସ୍ୱର୍ଗୀୟ ସତ୍ୟଜିତ ରାୟ । ଜଣେ ଚିତ୍ରଶିଳ୍ପୀ ଭାବେ ମଧ୍ୟ ସତ୍ୟଜିତ ରାୟ ପ୍ରସିଦ୍ଧ ଥିଲେ ।

ସେହିପରି ଆଉ ଜଣେ ବଙ୍ଗାଳୀ ଚଳଚ୍ଚିତ୍ର ନିର୍ଦ୍ଦେଶକ ଓ ନିର୍ମାତା ମୃଣାଳ ସେନ୍ ମଧ୍ୟ ଭାରତ ବିଖ୍ୟାତ ଥିଲେ । ଭାରତୀୟ ସିନେମା ଜଗତରେ ସେ ଜଣେ ବିହଙ୍ଗ ଭାବେ ବହୁଦୂର ଅତିକ୍ରମ କରିଥିଲେ ଝଡ଼ ଓ ବତାସରେ । ତେଣୁ ତାଙ୍କୁ The stormy petrel of Indian Cinema ବୋଲି କୁହାଯାଇଥାଏ ।

ଅଥଚ ସେ ପୂର୍ବ ବଙ୍ଗ (ଏବର ବାଙ୍ଗଲାଦେଶ )ର ଫରୀଜପୁରଠାରେ ୧୯୨୩ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ୧୯୪୦ରେ ସେ ଇଣ୍ଟରମିଡିଏଟ୍ ପାସ୍ କରି ୧୯୪୦ରେ କଲିକତା ମହାନଗରକୁ ସ୍ନାତକ ଡିଗ୍ରୀ ହାସଲ ପାଇଁ ଚାଲି ଆସିଥିଲେ । କଲିକତାରେ ସେ ଛାତ୍ର ଫେଡେରେସନ୍‌ରେ ରହି ଆନ୍ଦୋଳନ କରିବାରୁ ଜେଲ୍ ଯାଇଥିଲେ । ପରେ ସେ ସି.ପି.ଆଇ(ଏମ୍)ରାଜନୀତିକ ଦଳରେ ମଧ୍ୟ ଥିଲେ । ତାଙ୍କର ପ୍ରଥମ ଚଳଚ୍ଚିତ୍ର ରାଥବୋର ୧୯୫୫ରେ ମୁକ୍ତିଲାଭ କରିଥିଲା । ଏହା ପରେ ସେ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ ଉପନ୍ୟାସକୁ ଭିତ୍ତିକରି 'ମାଟିର ମଣିଷ' ଚଳଚ୍ଚିତ୍ର ନିର୍ମାଣ କରିଥିଲେ । ପରେ ପରେ ସେ ହିନ୍ଦୀରେ 'ଭୁବନ ସୋମ' ଚଳଚ୍ଚିତ୍ର ନିର୍ମାଣ କରି ପ୍ରଶଂସିତ ହୋଇଥିଲେ । ପ୍ରସିଦ୍ଧ ଚଳଚ୍ଚିତ୍ର ନିର୍ଦ୍ଦେଶକ ଶ୍ୟାମ ବେନେଗଲଙ୍କ ଭାଷାରେ, 'ଏହି ଚଳଚ୍ଚିତ୍ର ସ୍ୱତନ୍ତ୍ର ଭାବେ ଏକ ନୂତନ ଦିଗନ୍ତ ସୃଷ୍ଟି କଲା ।'

ଏବେ ଆମେ ଆସିବା ସ୍ୱର୍ଗୀୟ ପ୍ରମୋଦ ପତିଙ୍କ ଉପରେ କିଛି ଆଲୋଚନା କରିବାକୁ । ଭାରତୀୟ ଚଳଚ୍ଚିତ୍ର ଜଗତରେ ସମ୍ଭବତଃ ଦ୍ୱିତୀୟ ଓଡ଼ିଆ ଭାବେ ସେ ଶୀର୍ଷ ସ୍ଥାନକୁ ଯାଇପାରିଥିଲେ । ତାଙ୍କ ପୂର୍ବରୁ ପ୍ରଫେସର ଦେବ ମହାପାତ୍ର (ନୂଆଦିଲ୍ଲୀ) ଭାରତୀୟ ଚଳଚ୍ଚିତ୍ରର ନିର୍ଦ୍ଦେଶନା ଓ ଅଧ୍ୟାପନା କ୍ଷେତ୍ରରେ ନାଁ କରିଥିଲେ । ସେ ଅର୍ଥାତ୍ ପ୍ରମୋଦ ପତି ଜନ୍ମ ହୋଇଥିଲେ ଜାନୁଆରୀ ୧୫ରେ – ୧୯୩୨ ମସିହାରେ ଆଉ ଆମ ସମସ୍ତଙ୍କୁ ଛାଡ଼ି ଚାଲିଯାଇଥିଲେ ସେହି ଜାନୁଆରୀ ମାସର ୨୦ ତାରିଖରେ ୧୯୭୫ ମସିହାରେ । ସେ ନୂତନ ପରୀକ୍ଷା ଓ ପ୍ରୟୋଗରେ ଭାରତୀୟ ସିନେମାର ମର୍ଯ୍ୟାଦା ବୃଦ୍ଧି କରିଥିଲେ ଏବଂ ସେ ଈଶ୍ୱରଙ୍କ ଅବଦାନ ଥିଲେ ବୋଲି ଓଡ଼ିଶାର ରାଜ୍ୟପାଳ ପ୍ରଫେସର ଗଣେଶୀ ଲାଲ ତାଙ୍କର ୪୭ତମ ଶ୍ରାଦ୍ଧବାର୍ଷିକ ଉପଲକ୍ଷେ ସୁଲେଖକ ଓ ଗବେଷକ ଶ୍ରୀ ଗୋଲକ ବିହାରୀ ସିଂଙ୍କ ସମ୍ପାଦନାରେ ପ୍ରକାଶିତ ସ୍ମରଣିକା (ମଧ୍ୟାହ୍ନ ସୂର୍ଯ୍ୟାସ୍ତ)ର ବାର୍ତ୍ତାରେ ପ୍ରକାଶ କରିଛନ୍ତି । ପ୍ରକୃତରେ ଭାରତୀୟ ପ୍ରାମାଣିକ ଚଳଚ୍ଚିତ୍ର, କାର୍ଟୁନ୍ ତଥା ଆନିମେସନରେ ସେ ଯୁଗ ପ୍ରବର୍ତ୍ତକ ବୋଲି କହିଲେ କିଛି ଅତ୍ୟୁକ୍ତି ହେବ ନାହିଁ । ଚଳିତ ବର୍ଷ ଓଡ଼ିଶାର ସର୍ବୋଚ୍ଚ 'ଜୟଦେବ ' ଚଳଚ୍ଚିତ୍ର ପରସ୍କାର ବିଳମ୍ବରେ ହେଲେ ମଧ୍ୟ ବିଶିଷ୍ଟ ଓଡ଼ିଆ ଚଳଚ୍ଚିତ୍ର ନର୍ମାତା ଓ ନିର୍ଦ୍ଦେଶକ ଶ୍ରୀ ଘନଶ୍ୟାମ ମହାପାତ୍ର ଲାଭ କରିଛନ୍ତି । ଭାରତର ଅନ୍ୟତମ ମୁଖ୍ୟ ଚଳଚ୍ଚିତ୍ର ପ୍ରତିଷ୍ଠାନ ଶ୍ରୀ ଜସୂଚମ ରାଜେନ୍ଦ୍ର ଅକୁପେସନାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ରେ (ଏସ୍.ଜେ.ଓ.ଆଇ) ସେ ଚଳଚ୍ଚିତ୍ର ସମ୍ବନ୍ଧରେ ପାଠ ପଢିବା ପାଇଁ ସ୍ୱର୍ଗୀୟ ପ୍ରମୋଦ ପତି ହିଁ ତାଙ୍କୁ ବାଟ ଦେଖାଇଥିଲେ । ସେଥିପାଇଁ ସେ ଓଡ଼ିଶା ସରକାରଙ୍କ ଦ୍ୱାରା ମନୋନୀତ ହୋଇ ମାସିକ ଏକ ହଜାର ଟଙ୍କା ବୃତ୍ତି ପାଇ ବାଙ୍ଗାଲୋରଠାରେ ପଢିଥିଲେ । ସେଠାରୁ ପ୍ରମୋଦ ପତି ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ସ୍ୱର୍ଣ୍ଣ ପଦକ ଲାଭ କରିଥିଲେ ଅତୀତରେ ଏବଂ ପ୍ରମୋଦ ପତିଙ୍କ ପରାମର୍ଶକ୍ରମେ ପାଠ ପଢି ସେ (ଘନଶ୍ୟାମ ମହାପାତ୍ର ) ମଧ୍ୟ ସେଠାରୁ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନରେ ରହି ଓଡ଼ିଶାର ମର୍ଯ୍ୟାଦା ରକ୍ଷା କରିଥିଲେ । ଉଲ୍ଲେଖନୀୟ ଯେ ସେ ପ୍ରମୋଦ ପତିଙ୍କୁ ବଡ଼ ଭାଇ ବୋଲି ଘନଶ୍ୟାମ ମହାପାତ୍ର ମାନୁଥିଲେ, ଯାହା ଉପରୋକ୍ତ ସ୍ମରଣିକାର 'ଅଗ୍ରଜ ପ୍ରମୋଦ ପତି ' ଲେଖାରୁ ସୂଚନା ମିଳିଥାଏ । ଘନଶ୍ୟାମ ବାବୁ, ପଲ୍ଲୀକବି ନନ୍ଦ କିଶୋର

ବଳଙ୍କ ରଚିତ ଉପନ୍ୟାସ ଉପରେ' କନକଲତା ' ଚଳଚ୍ଚିତ୍ର ନିର୍ମାଣ କରି ପରିଚିତ ହୋଇଥିଲେ ସର୍ବତ୍ର ।

ଭାରତୀୟ ଚଳଚ୍ଚିତ୍ରର ଅନ୍ୟତମ ଜନକ ଭାବେ ଖ୍ୟାତ ପ୍ରମୋଦ ପତିଙ୍କ ସ୍ମୃତିରେ ଭୁବନେଶ୍ୱରରେ ଏକ ଟ୍ରଷ୍ଟ 'ପ୍ରମୋଦ ପତି' ଟ୍ରଷ୍ଟ ନାମରେ ଗଠିତ ହୋଇଛି । ଏହି ଟ୍ରଷ୍ଟ ଆନୁକୂଲ୍ୟରେ 'ମଧ୍ୟାହ୍ନରେ ସୂର୍ଯ୍ୟାସ୍ତ ' ନାମକ ଏକ ତଥ୍ୟପୂର୍ଣ୍ଣ ଲେଖା ଓ ଉପାଦେୟ ଫଟୋଚିତ୍ର ସମ୍ବଳିତ ସ୍ମରଣିକା ପ୍ରକାଶ ପାଇଛି । ଏହି ସ୍ମରଣିକାର ପ୍ରଥମ ଲେଖାରେ ବିଶିଷ୍ଟ ଓଡ଼ିଆ କବି ଓ ପ୍ରାବନ୍ଧିକ ଡକ୍ଟର ରବି ନାରାୟଣ ସେନାପତି ପ୍ରଥମରୁ ଉଲ୍ଲେଖ କରିଛନ୍ତି – He lived for forty three years, but he had lit a thousand lamps in his short journey of life (A Homage to Creative Genious of Pramod Pati). ଯାହାକି ଏ ଲେଖକଙ୍କୁ ସ୍ପର୍ଶ କରିଛି ।

ସେହିପରି ପ୍ରମୋଦ ପତିଙ୍କ ସହଧର୍ମୀଣୀ ସୁଚିତ୍ରା ପତିଙ୍କ ଲେଖା 'ପ୍ରତିଶ୍ରୁତି', ଯାହା ଶେଷ ଲେଖାଟି ଭାବେ ଏହି ସ୍ମରଣିକାରେ ପ୍ରକାଶ ପାଇଛି, ତାହା ମଧ୍ୟ ମୋତେ ମୁଗ୍ଧ କରିଛି । ସେହି ଲେଖାଟିର କିୟଦଂଶ ଏହିପରି– 'ଶ୍ୱଶୁରଙ୍କ ଘର ଭୁବନେଶ୍ୱରରେ ଥିଲେ ମଧ୍ୟ ମୋର ପ୍ରତିଶ୍ରୁତି ଅନୁସାରେ ମୁଁ ପିଲାମାନଙ୍କୁ ନେଇ ଅଲଗା ରହିଥିଲି । ପିଲାମାନଙ୍କୁ ଭଲ ମଣିଷ କରିବାକୁ ଯଥାଶକ୍ତି ଚେଷ୍ଟା କରିଛି । ଦୁଇ ଝିଅକୁ ବିବାହ ଦେଇ ଏକ ପ୍ରକାର କର୍ତ୍ତବ୍ୟ ସମାପନ କରିଛି । ବଡ଼ ଜ୍ୱାଇଁ ଜଣେ ଓଡ଼ିଶା ପ୍ରଶାସନିକ ସେବା ଅଧିକାରୀ ଏବଂ ସାନ ଝିଅ ଜ୍ୱାଇଁ ଆମେରିକାରେ ସୁବ୍ୟବସ୍ଥିତ ଭାବେ ଅବସ୍ଥାପିତ । ବସ୍ତୁତଃ ସବୁ ସମୟରେ ମୁଁ ପ୍ରମୋଦଙ୍କର ଉପସ୍ଥିତିକୁ ହୃଦୟଙ୍ଗମ କରିଛି । କାରଣ ତାଙ୍କର ମୋ ପାଇଁ ପ୍ରତିଶ୍ରୁତି ଥିଲା – 'ଡରୁଛ କାହିଁକି, ମୁଁ ପରା ତମ ପାଖରେ ଅଛି ।'

ସ୍ୱର୍ଗୀୟ ପତି ଥିଲେ ଓଡ଼ିଶାର ଖ୍ୟାତନାମା ଗଣିତଜ୍ଞ ଓ ପ୍ରଧାନ ଶିକ୍ଷକ ସ୍ୱର୍ଗୀୟ ନାରାୟଣ ପତି ଓ କ୍ଷେତ୍ରମଣି ପତିଙ୍କ ପୁତ୍ର ଏବଂ ପୂର୍ବତନ ମନ୍ତ୍ରୀ ସ୍ୱର୍ଗୀୟ ଗଙ୍ଗାଧର ମହାପାତ୍ର (ପୁରୀ) ତଥା ରୁକ୍ମିଣୀ ଦେବୀଙ୍କ ଜାମାତା । ୧୯୫୨ରେ ଶିକ୍ଷା ସମାପନ ପରେ ସେ ଓଡ଼ିଶା ସରକାରଙ୍କର (ଗୃହ, ସୂଚନା ଓ ଲୋକସମ୍ପର୍କ) ବିଭାଗରେ ଚଳଚ୍ଚିତ୍ର ଅଧିକାରୀଭାବେ ନିଯୁକ୍ତି ପାଇଥିଲେ । ପ୍ରାମାଣିକ ଚଳଚ୍ଚିତ୍ର ପ୍ରସ୍ତୁତି ଓ ପ୍ରସାରଣ ତାଙ୍କ ଦାୟିତ୍ୱରେ ଥିଲା । ପରେ ସେ ଭାରତ ସରକାରଙ୍କ ଫିଲ୍ମ ଡିଭିଜନ୍‌ରେ ଏକ ବଡ ପଦବୀରେ ଅବସ୍ଥାପିତ ହୋଇଥିଲେ, ଜୀବନର ଶେଷ ପର୍ଯ୍ୟନ୍ତ ।

ତାଙ୍କ ସ୍ମୃତି ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଭୁବନେଶ୍ୱର



# ଶ୍ରୀକ୍ଷେତ୍ରର ମଠ ସଂସ୍କୃତି

ଡକ୍ଟର ପ୍ରମୋଦିନୀ ଜେନା

ବିଶ୍ୱର ସକଳ ଧର୍ମଶାସ୍ତ୍ରର ସାରତତ୍ତ୍ୱ, ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁଭବନୀୟ । ଏହି ସଂସ୍କୃତି କୌଣସି ଧର୍ମଧାରାର ଗଣ୍ଡି ଭିତରେ ସୀମାବଦ୍ଧ ନୁହେଁ । ଶ୍ରୀଜଗନ୍ନାଥ ସଂସ୍କୃତିରେ କୌଣସି ଆଞ୍ଚଳିକ ସଂକୀର୍ଣ୍ଣତା ନାହିଁ । ସଂସ୍କୃତି ହେଉଛି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ସଂଯୋଗକାରୀ ସେତୁ । ଏହା ତା'ର ମହାନତା । ପରିବର୍ତ୍ତନଶୀଳ ସମୟରେ ଏହାର ବାହ୍ୟ ରୂପର ପରିବର୍ତ୍ତନ ଘଟିଲେ ହେଁ ମୂଳତତ୍ତ୍ୱ ଅପରିବର୍ତ୍ତିତ ରହିଛି । ସଂସ୍କୃତିର ମହାନତା ଭିତରେ ରହିଛି ଏକତା, ସମାନତା, ଶାନ୍ତିପୂର୍ଣ୍ଣ ସହାବସ୍ଥାନ, ବିଶ୍ୱ ଭ୍ରାତୃତ୍ୱର ବାଣୀ ଓ ସହୃଦୟତା ଯାହା ସବୁ ଜଗନ୍ନାଥ ସଂସ୍କୃତି ଭିତରେ ପ୍ରତିଫଳିତ ହୋଇଛି । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ସମଗ୍ର ମାନବ ଜାତିର ବିଭିନ୍ନ ରଙ୍ଗର ନିଦର୍ଶନ । ଏହା ହିଁ



ପ୍ରମାଣ କରିଥାଏ ଜଗନ୍ନାଥ ସଂସ୍କୃତି ହେଉଛି ସାର୍ବଜନୀନ ସଂସ୍କୃତି । ଚତୁର୍ଦ୍ଧାମୂର୍ତ୍ତିଙ୍କର ଚାରିଗୋଟି ବର୍ଣ୍ଣ ହେଉଛି ପ୍ରତୀକାତ୍ମକ, ଯାହା ସମଗ୍ର ବିଶ୍ୱବାସୀଙ୍କ ନିକଟରେ ସାମ୍ୟ, ମୈତ୍ରୀ, ଭ୍ରାତୃତ୍ୱ ଓ ଏକତ୍ୱବାଦ ପ୍ରତିଷ୍ଠା କରି ଆସୁଅଛି । ଏହି ପୁରୋଦୃଷ୍ଟିରେ ଜଗନ୍ନାଥ ସଂସ୍କୃତି ଜନହିତୈଷୀ ସଂସ୍କୃତି । ଏହି ସଂସ୍କୃତି ବିଶ୍ୱର ମଙ୍ଗଳ ଉପରେ ହିଁ ପ୍ରାଧାନ୍ୟ ଦିଏ । ନୃତ୍ୟ, ସଙ୍ଗୀତ, ସାହିତ୍ୟ, କଳା, ସ୍ଥାପତ୍ୟ ଓ ଭାସ୍କର ପ୍ରଭୃତି ହେଉଛି ସଂସ୍କୃତିର ଅନ୍ତରଙ୍ଗ ବିଭବ । ସମନ୍ୱୟାତ୍ମକ ଜଗନ୍ନାଥ ସଂସ୍କୃତିରେ ଏହିସବୁ ଅନ୍ତରଙ୍ଗ ବିଭବର ଅନ୍ତଃସ୍ରୋତ ପ୍ରବାହିତ ଓ ମାନବୀୟ ପ୍ରକାର ଉନ୍ନତ ଛବି ଓ ସଂସ୍କାରବୋଧ ଦ୍ୱାରା ଏହା ଉଜ୍ଜ୍ୱଳବର୍ଣ୍ଣା । ଜଗନ୍ନାଥ ସଂସ୍କୃତିର ବିଶେଷତ୍ୱ ହେଉଛି ଯୁଗ ଯୁଗ ଧରି ବିଶ୍ୱଜନମାନଙ୍କୁ ଆକର୍ଷିତ କରି ଜଗନ୍ନାଥ ସଂସ୍କୃତି ସହିତ ଜନଜୀବନକୁ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ କରିବା । ନିତ୍ୟ ସମାହିତ ତିନି ଧୂପ, ପାଞ୍ଚ ଅବକାଶ ରୀତିର ପୂଜା, ପର୍ବପର୍ବାଣି ଓ ବାରମାସରେ ତେର ଯାତ୍ରା ଜଗନ୍ନାଥ ସଂସ୍କୃତିକୁ ସୁସଙ୍ଗଠିତ କରିପାରିଛି । ସଭିଙ୍କୁ ଧର୍ମ କ୍ଷେତ୍ରରେ ସମାନ ଅଧିକାର ପ୍ରଦାନ କରିବାର ମହାଭିପ୍ରାୟରେ ଶ୍ରୀଜଗନ୍ନାଥ ବାହୁ ପ୍ରସାରୀ ସମସ୍ତଙ୍କୁ

ଆପଣାର କରି ଦେଇଛନ୍ତି । ସମସ୍ତଙ୍କୁ ସେବାଧିକାର ଦେବା ନିମିତ୍ତ ସେ ଛତିଶା ନିଯୋଗ ଭିଆଇଛନ୍ତି ।

ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀରେ ଆବିର୍ଭୂତ ଅମର ସିଂହଙ୍କ ଦ୍ୱାରା ସଙ୍କଳିତ ଓ ଭାରତର ସର୍ବାଞ୍ଚଳରେ ପ୍ରଚଳିତ 'ନାମଲିଙ୍ଗାନୁଶାସନଂ' ନାମକ କୋଷଗ୍ରନ୍ଥରେ ବିଷ୍ଣୁଙ୍କ ପର୍ଯ୍ୟାୟରେ ଶ୍ରୀଜଗନ୍ନାଥଙ୍କ ନାମ ପରିଦୃଷ୍ଟ ହୁଏ ନାହିଁ । କିନ୍ତୁ ଭଗବାନ ଶଙ୍କରାଚାର୍ଯ୍ୟ (୭୮୮-୮୨୦ ଖ୍ରୀଷ୍ଟାବ୍ଦ) ସ୍ୱରଚିତ ବିଷ୍ଣୁ 'ସହସ୍ରନାମଭାଷ୍ୟଂ'ରେ ବିଷ୍ଣୁଙ୍କ ଜଗନ୍ନାଥ ନାମକୁ ପ୍ରାଧାନ୍ୟ ଦେଇଥିଲେ ।

'ତସ୍ୟ ଲୋକପ୍ରାଧାନସ୍ୟ ଭୂପତେ ।
ବିଷ୍ଣୋର୍ନାମସହସ୍ରଂ ମେ ଶୃଣୁ ପାପଭୟାପହମ ।'
(ଦ୍ୱାଦଶ ଶ୍ଳୋକ)

ତତ୍‌କାଳୀନ ଭାରତର ଅନ୍ୟ କୌଣସି ତୀର୍ଥରେ ଜଗନ୍ନାଥ ପୂଜାର ପ୍ରଚଳନ ସମ୍ବନ୍ଧରେ ପ୍ରମାଣର ଅଭାବ ଯୋଗୁଁ ମହାପୁରୁଷ ଶ୍ରୀ ଶଙ୍କର ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଜଗନ୍ନାଥଙ୍କୁ ଲକ୍ଷ୍ୟ କରି ଏହି ଶ୍ଳୋକ ରଚନା କରିଥିବା ସ୍ୱତଃସିଦ୍ଧ । ଶ୍ରୀ ଶଙ୍କର ଶ୍ରୀକ୍ଷେତ୍ରରେ ମଠ ପ୍ରତିଷ୍ଠା କରି ସ୍ୱୀୟ ପ୍ରିୟ ଶିଷ୍ୟ ଶ୍ରୀ ପଦ୍ମପାଦାଚାର୍ଯ୍ୟଙ୍କୁ ସ୍ୱଧର୍ମ ମତ ପ୍ରଚାର କରିବା ପାଇଁ ଅବସ୍ଥାପିତ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗ ପର୍ଯ୍ୟନ୍ତ ଶ୍ରୀ ଶଙ୍କର ଓ ଶ୍ରୀ ପଦ୍ମପାଦଚାର୍ଯ୍ୟଙ୍କ ଦୁଇଟି ପ୍ରତିମା ରତ୍ନ ସିଂହାସନ ଉପରେ ଚତୁର୍ଦ୍ଧାମୂର୍ତ୍ତି ନିକଟରେ ପୂଜିତ ହେଉଥିବାର ମାଦଳାପାଞ୍ଜିରୁ ଜଣାଯାଏ । ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ସମୟରୁ ଶ୍ରୀମନ୍ଦିର ପରିଚାଳନାରେ ତାଙ୍କ ସମ୍ପ୍ରଦାୟର ସନ୍ନ୍ୟାସୀମାନଙ୍କ ବିଶେଷ କୃତିତ୍ୱ ପ୍ରତିଷ୍ଠିତ ହୋଇଥିଲା । ମହାତ୍ମା ଶଙ୍କରଙ୍କ ଦ୍ୱାରା ଶ୍ରୀଜଗନ୍ନାଥଙ୍କୁ ବିଷ୍ଣୁତତ୍ତ୍ୱ ବା ପୁରୁଷୋମତତ୍ତ୍ୱ ପ୍ରତିପାଦିତ ହେଲା ପରେ ପରବର୍ତ୍ତୀ କାଳରେ ଏହା ସୁଧୀ ସମାଜରେ ସ୍ୱୀକୃତ ହୋଇଥିଲା । ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ବୌଦ୍ଧ କୋଷାକାରଙ୍କ କୋଷଗ୍ରନ୍ଥ 'ତ୍ରିକାଣ୍ଡ ଶେଷ'ରେ ବିଷ୍ଣୁ ପର୍ଯ୍ୟାୟରେ ଜଗନ୍ନାଥଙ୍କୁ ସ୍ଥାନ ଦେଇଛନ୍ତି । ଯଥା-

'ହେମ ଶଙ୍ଖ-ଶତାବର୍ତ୍ତେ-ମନୁ-ଶାଶ୍ୱତ-ବାରୀଶାଃ
ବର୍ଦ୍ଧମାନ-ସତାନନ୍ଦୋ-ଜଗନ୍ନାଥଃ-ସ୍ୱଜାମୁନଃ ।'

ଗ୍ରନ୍ଥ ଆରମ୍ଭରେ କୋଷକାର ଲେଖିଛନ୍ତି ଯେ-

ଅଲୌକିକତ୍ୱାଦମର ସ୍ୱକୋଷ
ନ ଯାନି ନମାନି ସମୁଲିଲେଖ
ବିଲୋକ୍ୟତେ ଗପ୍ୟଧୁନା ପ୍ରଚାର
ମୟଂ ପ୍ରଯତ୍ନଃ ପୁରୁଷୋତ୍ତମସ୍ୟ ।

ଉଦ୍ଧୃତ ଶ୍ଳୋକରୁ ସ୍ପଷ୍ଟ ପ୍ରତିପାଦିତ ହୁଏ ଯେ 'ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ଜଗନ୍ନାଥ ଉକ୍ତ କୋଷ ପ୍ରଣୟନ ସମୟକୁ ଭାରତରେ ପୁରୁଷୋତ୍ତମ ବିଷ୍ଣୁ ରୂପେ ଖ୍ୟାତିଲାଭ କରିଥିଲେ ।'

ମୈତ୍ରୀ ଦେବ ଜଗନ୍ନାଥ ସମନ୍ୱୟର ସଙ୍କେତ । ଏହି ସମନ୍ୱୟତା ପାଇଁ ମହାତ୍ମା, ସାଧୁ, ସନ୍ଥମାନେ, ଶ୍ରୀକ୍ଷେତ୍ରକୁ ନିଜର ସ୍ମୃତି ରକ୍ଷା କରିବା ପାଇଁ ପୁରୀରେ 'ମଠ' ମାନ ସ୍ଥାପନ କରି ଶ୍ରୀଜଗନ୍ନାଥଙ୍କ ମାହାତ୍ମ୍ୟ, ସଂସ୍କୃତି ଓ ପରମ୍ପରାକୁ ବିଶ୍ୱବିଦିତ କରାଇଥିଲେ । ତତ୍‌ସହିତ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ନିଜ ନିଜର ପରିକଳ୍ପିତ ଦେବତାକୁ ଦେଖପାରିଥିଲେ । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ି ଉଠିଥିବା 'ମଠ'ଗୁଡ଼ିକ ଧର୍ମ, ସଂସ୍କୃତି, ଶିକ୍ଷା ବ୍ୟବସ୍ଥାର ବିକାଶରେ ସହାୟକ ପ୍ରଦାନ କରୁଥିଲେ । ନିରାଶ୍ରୟମାନଙ୍କୁ ଆଶ୍ରୟ ଓ ଅନ୍ନଛତ୍ର ପ୍ରଦାନ କରି ମଠଗୁଡ଼ିକ ନିଜ ମହାନୁଭବତାର ପରମ୍ପରା ସୃଷ୍ଟି କରିଥିଲେ । ଦୂରଦୂରାନ୍ତରୁ ଆସୁଥିବା ସିଦ୍ଧ, ସାଧୁ, ସନ୍ନ୍ୟାସୀମାନଙ୍କୁ ପୁରୀ ମଠଗୁଡ଼ିକ ସୁନ୍ଦର ଆତିଥେୟତା ପ୍ରଦାନ କରିବା ସହିତ ସଂସ୍କୃତିକୁ ସମୃଦ୍ଧି କରିଥିଲେ । ପୁରୀରେ ଅବସ୍ଥିତ ଥିବା ମଠମାନଙ୍କର ଐତିହ୍ୟ ଓ ଐତିହାସିକ ସମୃଦ୍ଧି ଓଡ଼ିଶାର ଧାର୍ମିକ ଆକାଶର ଗୋଟିଏ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର । ଓଡ଼ିଶାର ଧାର୍ମିକ ଐତିହାସିକ କ୍ଷେତ୍ରରେ ପୁରୀର 'ମଠ' ସଂସ୍କୃତି ଏକ କାଳଜୟୀ ଅଧ୍ୟାୟ । ଓଡ଼ିଶାର ଧାର୍ମିକ ବିଭବ ରୂପେ ଶ୍ରୀକ୍ଷେତ୍ରର 'ମଠ' ସଂସ୍କୃତିକୁ ବିବେଚିତ କରାଯାଏ ।

ପୁରୁଷୋତ୍ତମ କ୍ଷେତ୍ରରେ ଅତ୍ୟନ୍ତ ପ୍ରାଚୀନ କାଳରୁ ମଠ ସଂସ୍କୃତି ଉତ୍ପତ୍ତି ହୋଇଛି । ଦୀର୍ଘ ଆଠ ଶହ ବର୍ଷ

ପୂର୍ବରୁ ଓଡ଼ିଶାର ଧର୍ମ ଓ ସଂସ୍କୃତିର ଇତିହାସରେ ଏହି ମଠମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଥିଲା । ବିଭିନ୍ନ ଧର୍ମର, ବିଭିନ୍ନ ସମ୍ପ୍ରଦାୟର ଶତାଧିକ ମଠ ଏହି ପରମ ପବିତ୍ର ଶ୍ରୀକ୍ଷେତ୍ରରେ ସୁପ୍ରିତିଷ୍ଠିତ । 'ମଠ' ଶବ୍ଦଟି ମଠ ଧାତୁରେ ଅଧିକରଣ 'ଅ' ସଂଯୁକ୍ତରେ ଉତ୍ପନ୍ନ ହୋଇଛି । ଏହାର ଅର୍ଥ ହେଉଛି ଯେଉଁଠାରେ ବିଦ୍ୟାର୍ଥୀମାନେ ବାସ କରନ୍ତି । 'ମଠ' ଶବ୍ଦର ଅନ୍ୟ ଗୋଟିଏ ଅର୍ଥ ହେଉଛି ଦେବ ସେବା ନିମନ୍ତେ ସ୍ଥାପିତ ଓ ଜମିବାଡ଼ି ଖଞ୍ଜାଥିବା ଆଶ୍ରମ । ସଂସ୍କୃତ ମହାଭାରତରେ ମଧ୍ୟ 'ମଠ' ଶବ୍ଦଟି ଆଶ୍ରମ କୁଟୀର ଅର୍ଥରେ ପ୍ରୟୋଗ ହୋଇଥିବା ଜଣାଯାଏ । ପ୍ରାବନ୍ଧିକ ଜଗବନ୍ଧୁ ସିଂହଙ୍କ ମତରେ 'ମଠ'ର ଅର୍ଥ ଛାତ୍ରାବାସ । ଶିଷ୍ୟମାନେ ଯେଉଁଠି ରହି ଧର୍ମଶିକ୍ଷା ଓ ଶାସ୍ତ୍ରାଲୋଚନା କରନ୍ତି ତାକୁ ମଠ କୁହାଯାଏ । ପୁରୀରେ ଶତାଧିକ ମଠ ସ୍ଥାପନର ମୂଳ ଉଦ୍ଦେଶ୍ୟ ଥିଲା ହିନ୍ଦୁ ଧର୍ମ ତଥା ଜଗନ୍ନାଥ ଧର୍ମ ଓ ଦର୍ଶନର ପ୍ରଚାର ତଥା ପ୍ରସାର । ପୁରୀ ଜିଲ୍ଲା ଗେଜେଟିୟରରେ ପୁରୀ ମଠମାନଙ୍କ ସମ୍ପର୍କରେ ଉଲ୍ଲେଖ ଅଛି – "Maths are monastic house originally founded with the object of giving religious instructions to chelas or disciples and generally encouraging a religious life". (Puri district gazetteer 1929)

ପ୍ରାବନ୍ଧିକ ଜଗବନ୍ଧୁ ସିଂଙ୍କ ରଚିତ ଓଡ଼ିଶାର ପ୍ରଥମ ପ୍ରାମାଣିକ ଇତିହାସ 'ପ୍ରାଚୀନ ଉତ୍କଳ' ପୁସ୍ତକ ଅନୁଯାୟୀ ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବଙ୍କ ସମୟରେ ଦେଉଳର ଚତୁପାର୍ଶ୍ୱରେ ଅନେକ ମଠ ସ୍ଥାପନ ହୋଇଥିଲା । ମଠାଧିଶମାନେ ବିଭିନ୍ନ କାର୍ଯ୍ୟ କରିବାକୁ ଦାୟୀ ଥିଲେ । ଯଥା ପରମେଶ୍ୱରଙ୍କ ଭୋଗ ନିଯୋଗ ଭଲ ମନ୍ଦ ବୁଝିବେ ମୁଦ୍ରହସ୍ତ ବା ମୁଦିରଥ । ଏହି ନିୟମରେ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ ୫୨ ମଠ ମଧ୍ୟରେ ଆନ୍ଧ୍ର ୧୨, ମହାରାଷ୍ଟ୍ର ୮, ଦ୍ରାବିଡ଼, କନୌଜ ୫ଟି ଲେଖାଏଁ, ହେଙ୍ଗୁଳ ୩, ଓଡ଼ିଆ ୧୫, ଗୌଡ଼ୀୟ ୫, ଦଣ୍ଡୀ ୭ ମଠ ଆଦି ସୃଷ୍ଟି ହୋଇଥିଲା । 'ବୃହତ୍ ବିବିଧ' ସଂଗ୍ରହ ଅନୁଯାୟୀ ଶ୍ରୀକ୍ଷେତ୍ର ୭୫୦ ମଠ ପରିବର୍ତ୍ତେ ୫୨ଟି ମଠ ସ୍ଥାପିତ ହୋଇଥିଲା । ପରବର୍ତ୍ତୀ ସମୟରେ ଏଥି ସହିତ ନୂତନ ମଠ ସୃଷ୍ଟି ହୋଇ ଏହି ସଂଖ୍ୟା ଶତାଧିକ ହେଲା ।

ଅଷ୍ଟମ ଶତାବ୍ଦୀରେ ଜଗତଗୁରୁ ଶଙ୍କରାଚାର୍ଯ୍ୟ ଶ୍ରୀକ୍ଷେତ୍ରରେ ପହଞ୍ଚି ଠାକୁର ନଥିବାରୁ କ୍ଷୋଭ ପ୍ରକାଶ କରିଥିଲେ । ଠାକୁର ସୋନପୁରଠାରେ ପାତାଳି ହୋଇଥିବା ଖବର ପାଇ ଯଯାତିଙ୍କୁ ସେଠାରୁ ଠାକୁରଙ୍କୁ ଅନୁସନ୍ଧାନ କରି ଆଣିବା ପାଇଁ ପଠାଇଥିଲେ । ପରେ ପରେ ଜଗନ୍ନାଥଙ୍କ ମୂର୍ତ୍ତି ସେଠାରୁ ଆଣି ତା'ର ବ୍ରହ୍ମ ପରୀକ୍ଷା କରି ବ୍ରହ୍ମ କୀଟଦ୍ରଷ୍ଟ ହୋଇଯାଇଥିବାରୁ ନେପାଳରୁ ବ୍ରହ୍ମଶିଳା ମଗାଇ ତା'ମଧ୍ୟରେ ରଖି ମହାପ୍ରଭୁଙ୍କୁ ସିଂହାସନରେ ପ୍ରତିଷ୍ଠିତ କରାଇଥିଲେ । ଜଗନ୍ନାଥଙ୍କ ସେବାପୂଜାରେ ଅନେକ ପୁନରୁଦ୍ଧାର କରିଥିଲେ । ଶଙ୍କରାଚାର୍ଯ୍ୟ ନିଜର ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ଭୋଗବର୍ଦ୍ଧନ ବା ଗୋବର୍ଦ୍ଧନ ପୀଠ ବସାଇ ତାଙ୍କର ପ୍ରିୟ ଶିଷ୍ୟ ପଦ୍ମପାଦଙ୍କୁ ତା'ର ଦାୟିତ୍ୱ ଦେଇ ମଠର ପୀଠିକା ସୃଷ୍ଟି କଲେ । ଶଙ୍କରାଚାର୍ଯ୍ୟ ଶୈବ ଓ ଅଦ୍ୱୈତବାଦୀ ଥିଲେ । ତାଙ୍କ ପରେ ଶୈବବାଦୀମାନେ ମଧ୍ୟ ପୁରୀ ଆସି ମଠ ସ୍ଥାପନ କଲେ । ତେଣୁ ପୁରୀରେ ଶୈବପୀଠ ଭାବରେ 'ଗୋବର୍ଦ୍ଧନ ପୀଠ', 'ଶିବତୀର୍ଥ ପୀଠ', ଗୋପାଳତୀର୍ଥ ମଠ', 'ମହୀ ପ୍ରକାଶ ମଠ' ସ୍ଥାପିତ ହେଲା । ଶାକ୍ତମାନେ ପୁରୀରେ 'ଲଙ୍ଗୁଳି ମଠ' ଏବଂ 'ଅର୍ଦ୍ଧାଶନୀ ମଠ' ସ୍ଥାପନ କରିଥିଲେ । ଅନନ୍ତ ବର୍ମନ ଚୋଡ଼ଗଙ୍ଗ ଦେବଙ୍କ ସମୟରେ ଶ୍ରୀ ରାମାନୁଚାର୍ଯ୍ୟ ୧୧୪୮ ଖ୍ରୀଷ୍ଟାବ୍ଦରେ ଦକ୍ଷିଣରୁ ଆସି ପୁରୀରେ ପହଞ୍ଚି ତାଙ୍କର ପରମ୍ପରା ରକ୍ଷା ପାଇଁ 'ଏମାର ମଠ' ସ୍ଥାପନ କଲେ । ବଲ୍ଲଭଚାର୍ଯ୍ୟ ପୁରୀକୁ ଆସି ଜଗନ୍ନାଥଙ୍କୁ କୃଷ୍ଣ ବୋଲି ଘୋଷଣା କରି 'ପ୍ରଭୁଜୀକି ବୈଠକ' ନାମରେ ଏକ ମଠ ସ୍ଥାପନ କଲେ । ଚତୁର୍ଦ୍ଦଶ ଶତାବ୍ଦୀରେ ଶ୍ରୀରାମାନନ୍ଦାଚାର୍ଯ୍ୟ ମୁସଲମାନଙ୍କ ଆକ୍ରମଣରୁ ପୁରୀ ଶ୍ରୀମନ୍ଦିରକୁ ରକ୍ଷା କରିବା ପାଇଁ 'ଛାଉଣୀ ମଠ' ସ୍ଥାପନ କରି ହନୁମାନଙ୍କ ଉପାସକ ରୂପେ ମନ୍ଦିରକୁ ଆକ୍ରମଣକାରୀଙ୍କ ହାତରୁ ରକ୍ଷା କଲେ । ମଧୁର ରସାତ୍ମକ ଭାବର ପ୍ରଚାରକ ବିଷ୍ଣୁ ସ୍ୱାମୀ ଶ୍ରୀକ୍ଷେତ୍ରକୁ ଆସି 'ଜଗନ୍ନାଥ

ବଲ୍ଲଭ' ମଠ ପ୍ରତିଷ୍ଠା କଲେ । ଏହା ହେଲା ପ୍ରଭୁଙ୍କ ପ୍ରମୋଦ ଉଦ୍ୟାନ । 'ଦେବଦାସୀ ନୃତ୍ୟ' ର ପରମ୍ପରା ତାଙ୍କ ସମୟରେ ସୃଷ୍ଟି ହେଲା । ସେସମୟରେ ଗୋଟିପୁଅ ନାଚ ପ୍ରବର୍ତ୍ତନ କରାଗଲା । ବର୍ତ୍ତମାନ 'ଜଗନ୍ନାଥ ବଲ୍ଲଭ ମଠ' ମନ୍ଦିରର ଯାନିଯାତ୍ରାର କେନ୍ଦ୍ରସ୍ଥଳୀ । ଏହି ମଠ ଶ୍ରୀମନ୍ଦିର ସଂସ୍କୃତିର ଏକ ବିଶିଷ୍ଟ ବାର୍ତ୍ତାବହ । ପ୍ରତାପରୁଦ୍ରଙ୍କ ସମୟରେ ଶ୍ରୀଚୈତନ୍ୟ ଶ୍ରୀକ୍ଷେତ୍ରକୁ ଆସି ୧୮ ବର୍ଷ ଅବସ୍ଥାନ କାଳରେ ସିଦ୍ଧବକୁଳ, ଟୋଟା ଗୋପୀନାଥ, କୁଞ୍ଜମଠ, ଆହ୍ଲଲା ମଠ ସ୍ଥାପନ କରି ଗୌଡ଼ୀୟ କୀର୍ତ୍ତନର ପ୍ରଚାର ପ୍ରସାର କରି ସାରା ଓଡ଼ିଶାରେ ଚହଳ ସୃଷ୍ଟି କରିଥିଲେ ।

ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଦ୍ୱେଷ ଭାବ ଦୂର କରିବା ପାଇଁ କବୀର ଦାସ ପୁରୀକୁ ଆସି ହିନ୍ଦୁଙ୍କ ଜଗନ୍ନାଥ ଓ ମୁସଲମାନଙ୍କ ଆଲ୍ଲାଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ ବୋଲି ଅନୁଭବ କରି ଜଗନ୍ନାଥଙ୍କୁ ଖଣ୍ଡିଏ ଜାଗା ମାଗିଥିଲେ ରହିବା ପାଇଁ । ମହାପ୍ରଭୁ ପ୍ରୀତ ହୋଇ ସମୁଦ୍ରକୂଳ ଲଙ୍ଘନ କରି ଖଣ୍ଡିଏ ଜାଗା କବୀର ଦାସଙ୍କୁ ଦେଲେ । ତାହା 'କବୀର ଛତା' ବା 'କବୀର ଚଉରା ମଠ' ନାମରେ ନାମିତ ହେଲା । ଶିଖ୍ ଗୁରୁ ନାନକ ନିଜ ଧର୍ମର ପ୍ରଚାର ପାଇଁ 'ମଙ୍ଗୁମଠ' ଓ 'ନାନକ ମଠ' ସ୍ଥାପନ କଲେ । ନାଥ ସମ୍ପ୍ରଦାୟର ଗୋରେଖ ନାଥ ଜଗନ୍ନାଥଙ୍କୁ ଷଡ଼ଚକ୍ରର ଅନୁଭବ ଆଣିଲେ ଓ ପୁରୀରେ 'ଗୁରୁଦେବ ମଠ' ସ୍ଥାପନ କରି ନାଥ ସମ୍ପ୍ରଦାୟର ପ୍ରଭାବ ଶ୍ରୀମନ୍ଦିରରେ ପକାଇଲେ । ରାମାନନ୍ଦୀ ସମ୍ପ୍ରଦାୟର ଭୋଗ ଆଖଡ଼ା ମଠ, ଖାକି ଆଖଡ଼ା ମଠ, ନିର୍ମାଣ ଆଖଡ଼ା ମଠ, ତ୍ରିମାଳି ମଠ, ରେବସା ମଠ, ତୋରାଣି ଛତ୍ର ମଠ, ବଡ଼ ଆଖଡ଼ା ମଠ ଓ ସାନ ଆଖଡ଼ା ମଠ, ନିମ୍ବାର୍କଙ୍କ ରାଧାବଲ୍ଲଭ ମଠ, ମଧ୍ୱାଚାର୍ଯ୍ୟଙ୍କ ରାଧାକାନ୍ତ ମଠ, ଓଡ଼ିଆ ମଠ, ବଡ଼ ଓଡ଼ିଆ ମଠ, ସାନ ଓଡ଼ିଆ ମଠ, ଜୟଦେବ ଦଶାବତାର ମଠ, ଉପେନ୍ଦ୍ର ଭଞ୍ଜ ଘୁମୁସର ମଠ, ପଣ୍ଡିତ ସର୍ବୋଭୌମଙ୍କ 'ଗଙ୍ଗାମାତା ମଠ' ପ୍ରଭୃତି ପ୍ରତିଷ୍ଠିତ ହୋଇଥିବା ଜଣାଯାଏ । ମଠମାନେ ଶିଷ୍ୟମାନଙ୍କୁ ନିଜ ଅକ୍ତିଆରରେ ରଖି ଗୁରୁମନ୍ତ୍ର ପ୍ରଦାନ କରୁଥିଲେ । ସେବା, ପୂଜା, ଧ୍ୟାନ କୀର୍ତ୍ତନରେ ଭକ୍ତମାନଙ୍କୁ ନିୟୋଜିତ କରୁଥିଲେ । ମଠର କାର୍ଯ୍ୟରେ ଆକୃଷ୍ଟ ହୋଇ ଭକ୍ତମାନେ ଜଗନ୍ନାଥଙ୍କ ସେବାପୂଜା ପାଇଁ ମଠ ମାର୍ଫତ୍‌ରେ ଜମିଜମା ଦାନ କରୁଥିଲେ, ନଗଦ ଅର୍ଥ ମଧ୍ୟ ଦେଉଥିଲେ । ସେବା ପୂଜା ପାଇଁ ଭକ୍ତମାନଙ୍କଠାରୁ ପାଉଥିବା ଧନ ଯୋଗୁଁ ମଠମାନେ ମନ୍ଦିର ସହିତ ସମ୍ପୃକ୍ତ ହେଲେ ଓ ମନ୍ଦିରର ସେବାପୂଜାରେ କ୍ରମଶଃ ଭାଗ ନେଲେ । ରାଜାମାନେ ମଧ୍ୟ ମଠର ପ୍ରତିଷ୍ଠାତାମାନଙ୍କ ଦ୍ୱାରା ଆକୃଷ୍ଟ ହୋଇ ମନ୍ଦିରର ସେବା, ପୂଜା ପାଇଁ ଦାନ ଦେଲେ । ଏହିପରି ମଠମାନେ ଶ୍ରୀମନ୍ଦିରର ଦୈନନ୍ଦିନ ନୀତି, ସେବା, ପୂଜା, ପର୍ବପର୍ବାଣି, ଯାନିଯାତ୍ରା ଓ ବେଶ ସହିତ ସମ୍ପୃକ୍ତ ହେଲେ । ମଠର ସମ୍ପତ୍ତି ଭୋଗ ବିଳାସ ପାଇଁ ଉଦ୍ଦିଷ୍ଟ ନଥିଲା । ସମ୍ପତ୍ତିର ସ୍ୱ ବର୍ଣ୍ଣନା ବେଳେ ଅମୃତ ମଣୋହି ସମ୍ପତ୍ତି ବୋଲି ଲେଖାଯାଉଥିଲା । ଅମୃତ ମଣୋହି ଅର୍ଥ ଜଗନ୍ନାଥଙ୍କ ସମ୍ପତ୍ତି, ମଠାଧୀଶମାନେ କେବଳ ମାର୍ଫତଦାର ହୋଇ ରହିଲେ, ତାହା ତାଙ୍କର ନିଜସ୍ୱ ସମ୍ପତ୍ତି ନଥିଲା । ଖରିଦ ଓ ହସ୍ତାନ୍ତର କ୍ଷମତା ମଧ୍ୟ ତାଙ୍କର ନଥିଲା । ସମ୍ପତ୍ତିର ଚିରସ୍ଥାୟୀ ପଟା ଦେବାର ବ୍ୟବସ୍ଥା ମଧ୍ୟ ନଥିଲା । ଜଗନ୍ନାଥଙ୍କ ଯେକୌଣସି ସେବକ, ଉପାସକ, ଭକ୍ତ, ସମ୍ପତ୍ତି ରକ୍ଷା ଲାଗି ସେମାନଙ୍କ ନାମରେ ମୋକଦ୍ଦମା କରିପାରିବେ । ଅପବ୍ୟୟ କଲେ ମହନ୍ତମାନଙ୍କୁ ଉଚ୍ଛେଦ କରିବାର ବ୍ୟବସ୍ଥା ଥିଲା ।

ଓଡ଼ିଶାର ଧର୍ମ ଓ ସଂସ୍କୃତିର ଇତିହାସରେ ଏହି ମଠମାନଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱଥିଲା । ଶ୍ରୀକ୍ଷେତ୍ରକୁ ନେଇ ହିନ୍ଦୁମାନଙ୍କର ବିଭିନ୍ନ ସମ୍ପ୍ରଦାୟ ଓ ପନ୍ଥୀମାନଙ୍କ ମଠ ଶ୍ରୀକ୍ଷେତ୍ରରେ ପ୍ରତିଷ୍ଠିତ । ବର୍ତ୍ତମାନ ପୁରୀକୁ ବିଶ୍ୱସ୍ତରୀୟ ଐତିହ୍ୟ ସହରରେ ପରିଣତ କରିବା ଲକ୍ଷ୍ୟ ନେଇ ରାଜ୍ୟ ସରକାର ସବୁଜ ଓ ଐତିହ୍ୟ ପୁରୀ ପାଇଁ ନକ୍ସା ପ୍ରସ୍ତୁତ କରିଛନ୍ତି । ଶ୍ରୀଜଗନ୍ନାଥ ମନ୍ଦିରଠାରୁ ଶ୍ରୀଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ରର ପବିତ୍ର ବଡ଼ଦାଣ୍ଡକୁ ସମ୍ପୂର୍ଣ୍ଣ ଅବରୋଧମୁକ୍ତ କରିବାକୁ ଖସଡ଼ା ପ୍ରସ୍ତୁତ କରିଛନ୍ତି । ମୋଟାମୋଟି ଭାବେ କହିବାକୁ ଗଲେ ମେଘନାଦ ଚତୁଃପାର୍ଶ୍ୱରେ ପରିକ୍ରମା ମାର୍ଗ, ଭକ୍ତଙ୍କ ସୁବିଧାକୁ ଦୃଷ୍ଟିରେ ରଖି ବିଭିନ୍ନ ପ୍ରକଳ୍ପ ନିର୍ମାଣ ପାଇଁ ପୂର୍ବରୁ ଯେଉଁ ଦାବି

ହୋଇ ଆସୁଥିଲା ସରକାର ତାହାକୁ ଯଥୋଚିତ ସମ୍ମାନ ଦେଇଛନ୍ତି । ଏହାଦ୍ୱାରା ପର୍ଯ୍ୟଟନ ଶିଳ୍ପର ମାନ ବୃଦ୍ଧି ହେବା ସହିତ ଭକ୍ତମାନେ ସ୍ୱଚ୍ଛନ୍ଦରେ ଶ୍ରୀମନ୍ଦିର ଚତୁଃପାର୍ଶ୍ୱ ପରିଭ୍ରମଣ କରିପାରିବେ । ଏହାଦ୍ୱାରା ଭକ୍ତ ଓ ଶ୍ରଦ୍ଧାଳୁଙ୍କ ଦ୍ୱାରା, ଶୃଙ୍ଖଳିତ ଆଧ୍ୟାତ୍ମିକ ପରିବେଶ ସୃଷ୍ଟି ହୋଇପାରିବ । ଯେପରିକି ସିଂହଦ୍ୱାରରେ ଛିଡ଼ା ହେଲେ ଦେଖାଯିବ ସ୍ୱର୍ଗଦ୍ୱାର । ଶ୍ରୀମନ୍ଦିରରୁ ଭକ୍ତମାନେ ବାହାରି କିପରି ସମୁଦ୍ରକୂଳ, ସ୍ୱର୍ଗଦ୍ୱାର ପର୍ଯ୍ୟନ୍ତ ସୁରୁଖୁରୁରେ ଯାତାୟାତ କରିପାରିବେ ସେଥିପାଇଁ କାକୁଡ଼ିଖାଇ ଛକରୁ ବାଲିସାହି ରାସ୍ତାକୁ ଚଉଡ଼ା କରିବା ପାଇଁ ସରକାରଙ୍କ ଯୋଜନା କାର୍ଯ୍ୟକାରୀ ହେଉଛି ।

ତତ୍‌ସହିତ ଏହି ଶ୍ରୀବୃଦ୍ଧି ଯୋଜନା ଭିତରେ ପୁରୀ ସହରର ପ୍ରମୁଖ ରାସ୍ତାପାର୍ଶ୍ୱ ସମେତ ସ୍କୁଲ, କଲେଜ, ଡାକ୍ତରଖାନା, ମଠ, ମନ୍ଦିର, ଜାଗା ଆଖଡ଼ା ଓ ସରକାରୀ କାର୍ଯ୍ୟାଳୟରେ ସବୁଜ ବଳୟ ସୃଷ୍ଟି ମଧ୍ୟ କରାଯାଉଛି । ପୁରୀ ସହରକୁ ଭକ୍ତମାନେ କିପରି ଦେଶ ବିଦେଶରୁ ବିନା ପ୍ରତିବନ୍ଧକରେ ଆସି ପାରିବେ ସେଥିପାଇଁ ରାଜପଥରେ ଥିବା ଚାରିନଳା, କଦଳୀ ବାରିପାଟଣା ଏବଂ ବାଟଗାଁ ରାସ୍ତାକୁ ମଧ୍ୟ ଚଉଡ଼ା କରାଯାଇଛି । ଏହା ସହିତ ପୁରୀ ସହରର ପ୍ରବେଶ ପଥ ଅଠର ନଳାର ଐତିହ୍ୟ ତୋରଣ ନିର୍ମାଣ କରାଯିବା ସହ ଐତିହ୍ୟ ଅଠର ନଳା ଏବଂ ମୂଷା ନଈର ସୌନ୍ଦର୍ଯ୍ୟକରଣ କରାଯାଉଛି । ଆଗାମୀ ବର୍ଷ ଭିତରେ ପୁରୀ ସହରକୁ ସବୁଜ ସୁନ୍ଦର ଏବଂ ଉନ୍ନତ କରାଇ କିପରି ଶ୍ରୀମନ୍ଦିରକୁ ବିଶ୍ୱସ୍ତରୀୟ ଐତିହ୍ୟ ସହର ଭାବରେ ସ୍ଥାନିତ କରିବେ ସେଥିପାଇଁ ସରକାରଙ୍କ ପକ୍ଷରୁ ସବୁ ପ୍ରକାର ଯୋଜନା ଚାଲିଛି ।

ଆଜି ପୁରୀ ସହରକୁ ସୁନ୍ଦର କରିବା ଓ ଶ୍ରୀମନ୍ଦିରର ସୁରକ୍ଷା ପାଇଁ ଓଡ଼ିଶା ସରକାର ଯେଉଁ ନିଷ୍ପତ୍ତି ନେଇଛନ୍ତି ସେଥିପାଇଁ ଭଙ୍ଗା ଯାଉଛି ଶ୍ରୀଜଗନ୍ନାଥ ମନ୍ଦିରଠାରୁ ୭୫ ମିଟର ମଧ୍ୟରେ ଅବସ୍ଥିତ ଅନେକ ମଠ । ଯଥା– ଏମାର ମଠ, ଉତ୍ତରପାର୍ଶ୍ୱ ମଠ, ଦକ୍ଷିଣ ପାର୍ଶ୍ୱ ମଠ, ରାଘବଦାସ ମଠ, ପଞ୍ଜାବୀ ମଠ, କୌଶଲ୍ୟା ଦାସ ମଠ, ତ୍ରିମାଳୀ ମଠ, ରେବେସା ମଠ, ତୋରାଣୀ ଛତ୍ର ମଠ, ବଡ଼ ଆଖଡ଼ା ମଠ, ନରସିଂହଚାରୀ ମଠ, ଲଙ୍ଗୁଳି ମଠ, ରାଧାବଲ୍ଲଭ ମଠ, ମଙ୍ଗୁ ମଠ, ବଡ଼ଛତା ମଠ ଇତ୍ୟାଦି ।

ଏମାର ମଠ, ଉତ୍ତର ପାର୍ଶ୍ୱମଠ, ଦକ୍ଷିଣ ପାର୍ଶ୍ୱ ମଠ, ମନ୍ଦିରର ତିନି ଦିଗରେ ରହି ମନ୍ଦିରର ସେବା ସହିତ ସମ୍ପୃକ୍ତ । ଏମାରମଠ ରାମାନୁଜଙ୍କ ଦ୍ୱାରା ପ୍ରତିଷ୍ଠିତ । ଏଠାରେ ଲକ୍ଷ୍ମୀନାରାୟଣ ପୂଜା ପାଆନ୍ତି । ତ୍ରିମାଳୀ ମଠ, ରେବସା, ତୋରାଣି ଛତ୍ର, କୌଶଲ୍ୟା ଦାସ ମଠ ଇତ୍ୟାଦି ଏହି ପରିସରର ଅନ୍ତର୍ଭୁକ୍ତ । ଏମାର ମଠ ବଡ଼ ସିଂହାର ବେଶ ପାଇଁ ଫୁଲର ଚନ୍ଦ୍ରିକା ଓ ଚଉସରାମାଳ ଯୋଗାଏ । ଚନ୍ଦନଯାତ୍ରା ସମୟରେ ଫୁଲଚନ୍ଦନ ଯୋଗାଏ । ଦକ୍ଷିଣ ପାର୍ଶ୍ୱ ମଠ ପ୍ରତ୍ୟହ ବଡ଼ ସିଂହାର ପାଇଁ ଫୁଲରେ ତିଆରି କରପଲ୍ଲବ, ତଡ଼ପ କୁଣ୍ଡଳ ଯୋଗାନ୍ତି । ଏମାର ମଠ ଦ୍ୱାରା ପ୍ରତିଷ୍ଠିତ ରଘୁନନ୍ଦନ ପାଠାଗାର ଏକ ପୁରାତନ ଗ୍ରନ୍ଥାଗାର । ଏଠାରେ ଜଗନ୍ନାଥ ଚେତନା, ଉପାସନା ସମ୍ବନ୍ଧୀୟ ଅନେକ ପୁସ୍ତକ ଓ ତାଳପତ୍ର ପୋଥି ରଖାଯାଇଥିଲା । ବିଦେଶାଗତ ଯାତ୍ରୀମାନେ ରଘୁନନ୍ଦନ ପାଠାଗାର ଉପରେ ରହି ଶ୍ରୀମନ୍ଦିରର ଶୋଭା ଦର୍ଶନ କରିଥାଆନ୍ତି । ଦୀର୍ଘ ୯୦୦ ବର୍ଷର ପୁରୁଣା ଏମାର ମଠକୁ ସରକାରଙ୍କ ଉଚ୍ଛେଦ ଯୋଜନା ଭିତରେ ଉଚ୍ଛେଦ ସମୟରେ ଏକ ଭୂତଳ ଘରକୁ ଠାବ କରାଯାଇଛି । ଏହା ୩୦୦ ବର୍ଷରୁ ଅଧିକ ପୁରୁଣା ବୋଲି ଅନୁମାନ କରାଯାଉଛି । ଏହି ଭୂତଳ ଗୃହ ବିଷୟରେ ଜଗନ୍ନାଥ ସଂସ୍କୃତି ଗବେଷକ ସୁରେନ୍ଦ୍ର ମିଶ୍ର କହିଛନ୍ତି, ଓଡ଼ିଶାରେ ଚୋଡ଼ଗଙ୍ଗ ଦେବଙ୍କ ଶାସନ ବେଳେ ଶ୍ରୀ ରାମାନନ୍ଦ ପୁରୀ ଆସି ଏମାର ମଠକୁ ପ୍ରତିଷ୍ଠା କରିଥିଲେ । ଅଖଣ୍ଡ ଓଡ଼ିଶାର ବହୁ ରାଜା ମହାରାଜାମାନେ ଏହି ମଠକୁ ବହୁ ଧନ ସମ୍ପତ୍ତି ଦାନ କରିଥିଲେ । ଏହି ସ୍ଥାବର ଏବଂ ଅସ୍ଥାବର ସମ୍ପତ୍ତିକୁ ଏହି ଭୂତଳ ଘରେ ରଖାଯାଉଥିଲା । ପ୍ରକୃତରେ ଏହା ହେଉଛି ଛଅ ତାଲା ବିଶିଷ୍ଟ ଘର । ଏଥିରେ ବିଭିନ୍ନ ଖାଦ୍ୟଶସ୍ୟ ରଖାଯାଉଥିଲା । ପୁରୀ ବାହାରୁ ଆସୁଥିବା ଭକ୍ତମାନଙ୍କ ପାଇଁ ଜଗନ୍ନାଥଙ୍କ ଅବଢ଼ା ଓ ଖାଦ୍ୟପେୟର ବ୍ୟବସ୍ଥା ଏହି ଏମାର ମଠ ପକ୍ଷରୁ କରାଯାଉଥିଲା । ତେଣୁ ଏମାର ମଠରେ ଏଭଳି

କୋଠା ରହିବା ସ୍ୱାଭାବିକ । ପ୍ରକୃତରେ ଏହା କୌଣସି ଭୂତଳ ନୁହେଁ । ଏମାର ମଠରେ ଅନ୍ୟ ପାର୍ଶ୍ୱରେ ରହିଛି ମୁଖ୍ୟ ଗାଦି । ଯେଉଁଠି ପୂଜା ପାଆନ୍ତି ପ୍ରଭୁ ରଘୁନାଥ । ରାମ, ଲକ୍ଷ୍ମଣ ଓ ସୀତାଙ୍କର ଚଳନ୍ତି ପ୍ରତିମା ପୂଜା ପାଆନ୍ତି । ରଘୁନାଥଙ୍କ ମନ୍ଦିରକୁ ଲାଗି ରହିଛି ମଠର ପ୍ରତିଷ୍ଠାତା ଶ୍ରୀ ରାମାନୁଚାର୍ଯ୍ୟଙ୍କ ଆସ୍ଥାନ । ମଠର ପରିସରରେ ପୁରୁଷ ପୁରୁଷ ଧରି ରହି ଆସୁଛନ୍ତି ମହନ୍ତ, ସେବାୟତ ଓ ସେମାନଙ୍କ ପରିବାର । ଏମାର ମଠ ପ୍ରାୟତଃ ଦ୍ୱାଦଶ ଶତାବ୍ଦୀର । ଏହି ମଠରେ ଲକ୍ଷ୍ମୀନାରାୟଣଙ୍କ ଝୁଲଣ ଯାତ୍ରାକୁ ବେଶ୍ ଧୁମ୍‌ଧାମ୍‌ରେ ପାଳନ କରାଯାଏ । ଶ୍ରୀମନ୍ଦିର ବଲ୍ଲଭ ନୀତି ପାଇଁ ଯେଉଁସବୁ ସାମଗ୍ରୀର ଆବଶ୍ୟକତା ପଡ଼ିଥାଏ ତାହା ମଧ୍ୟ ଏହି ମଠ ତରଫରୁ ଯୋଗାଇ ଦିଆଯାଏ । ସେହିପରି ରଥଯାତ୍ରା ସମୟରେ ମଠର ମହନ୍ତ ମହାପ୍ରଭୁଙ୍କ ପାଖେ ଆଲଟ ଚାମର ସେବା କରିଥାନ୍ତି । ଜଗନ୍ନାଥବଲ୍ଲଭ ମଠରେ ଶ୍ରୀମନ୍ଦିରର ଅନେକ ଯାନିଯାତ୍ରା ପାଳିତ ହୁଏ । ମଧୁର ରସାତ୍ମକ ଭାବର ପ୍ରଚାରକ ବିଷ୍ଣୁସ୍ୱାମୀ ଶ୍ରୀକ୍ଷେତ୍ରକୁ ଆସି ଜଗନ୍ନାଥ ବଲ୍ଲଭ ମଠ ପ୍ରତିଷ୍ଠା କଲେ । ଏହା ମହାପ୍ରଭୁଙ୍କ ପ୍ରମୋଦ ଉଦ୍ୟାନ । ନୃତ୍ୟ, ସଙ୍ଗୀତ ମାଧ୍ୟମରେ ଜଗନ୍ନାଥଙ୍କୁ ପାଇହୁଏ । ଏ କଥା ସେ ପ୍ରଚାର କଲେ, ଦେବଦାସୀ ନୃତ୍ୟ ପରମ୍ପରା ତାଙ୍କ ସମୟରୁ ସୃଷ୍ଟି ହେଲା । ସେହି ରମଣୀୟ ଉଦ୍ୟାନରେ ରାୟ ରାମାନନ୍ଦ, 'ଜଗନ୍ନାଥ ବଲ୍ଲଭନାଟକ' ରଚନା କରି ପ୍ରଦର୍ଶନ କରିଥିଲେ । ସେସମୟରେ ଗୋଟିପୁଅ ନୃତ୍ୟ ପ୍ରଦର୍ଶନ କରାଯାଇଥିଲା । ଏହି ମଠ ଶ୍ରୀମନ୍ଦିର ସଂସ୍କୃତିର ଏକ ବିଶିଷ୍ଟ ବାର୍ତ୍ତାବହ । ଏହି ମଠରେ ଚାଚେରୀ ବେଶ, ଚନ୍ଦନଯାତ୍ରା, ବେଣ୍ଟଶିକାର, ବଣଭୋଜୀ, ଦୟଣାଚୋରୀ କର୍ମମାନ କରାଯାଏ । ସ୍ନାନଯାତ୍ରା, ରଥଯାତ୍ରା, ବାହୁଡ଼ାଯାତ୍ରା ଓ ନୀଳାଦ୍ରି ବିଜେ ଦିନ ଠାକୁରଙ୍କ ପହଣ୍ଡି ବିଜେ ପାଇଁ ଟାହିଆ ଯୋଗାନ୍ତି । ଜ୍ୟେଷ୍ଠ ଏକାଦଶୀ, ଅକ୍ଷୟ ତୃତୀୟା ଓ ରୁକ୍ମିଣୀ ହରଣ ନୀତିମାନଙ୍କରେ ଶୀତଳ ଭୋଗ ଯୋଗାନ୍ତି । କାର୍ତ୍ତିକ ମାସରେ 'ବାଳଧୂପ' ଯୋଗାନ୍ତି । ଶ୍ରୀମନ୍ଦିରରୁ ବିଜେ ପ୍ରତିମାମାନଙ୍କର ବିଜେ ଦିନମାନଙ୍କରେ କାଳୀୟ ଦଳନ, ରାଧାଷ୍ଟମୀ, ରାମାଭିଷେକ, ଗୁଣ୍ଡିଚା ଘରେ ରଥଯାତ୍ରା ବେଳେ ପନ୍ତି ଭୋଗ କରାନ୍ତି । ଅଣସର ସମୟରେ ଅଣସର ପିଣ୍ଡିରେ ଚକଟା ଭୋଗ କରନ୍ତି । ଶ୍ରୀମନ୍ଦିର ରୋଷଘରେ ଏହି ମଠର ଚୁଲା ଅଛି । ଜଗନ୍ନାଥଙ୍କ ବିଜେ ପ୍ରତିମା 'ମଦନମୋହନ' ପ୍ରାୟ ଏକଶହ ବର୍ଷ ପୂର୍ବେ ଏହି ମଠ ତରଫରୁ ପ୍ରଦାନ କରାଯାଇଥିଲା । ଏହା ବ୍ୟତୀତ କେତେକ ଯାନିଯାତ୍ରା ଦିନରେ ସ୍ୱତନ୍ତ୍ର ନୀତି ମଧ୍ୟ ଖଞ୍ଜା ହୋଇଛି ରାଘବ ଦାସ ମଠ ପକ୍ଷରୁ । ଶିଖ୍ ସମ୍ପ୍ରଦାୟର ଗୁରୁ ନାନକ ପୁରୀକୁ ଆସିଥିଲେ ନିଜର ଧର୍ମପ୍ରଚାର କରିବା ପାଇଁ ନିଜର ଆସ୍ଥା ଜମେଇ ରହିଲେ । ଗଢ଼ିଲେ ମଙ୍ଗୁମଠ ଓ ନାନକ ମଠ । ବଡ଼ ଓଡ଼ିଆ ମଠ ଷୋଳପୂଜା ସମୟରେ ବିମଳାଙ୍କ ମନ୍ଦିରରେ ରୋଷେଇ ପାଇଁ ଚାଉଳ, ପରିବା, ସରକାରଙ୍କ ଜରିଆରେ ଯୋଗାଇଥାନ୍ତି । ତ୍ରିମାଳୀ ମଠ ଓ ଉତ୍ତର ପାର୍ଶ୍ୱ ମଠ ମୋହନ ଭୋଗ ଆଗରୁ ଯୋଗାଉଥିଲେ । ଶ୍ରୀମନ୍ଦିରର ରୋଷଘରେ ବଡ଼ ଓଡ଼ିଆ ମଠ, ରାଧାକାନ୍ତ ମଠ, ଉତ୍ତରପାର୍ଶ୍ୱ ମଠ, ଶାକ୍ତ ମଠ ଭାବରେ ଲଙ୍ଗୁଳି ମଠ ମଧ୍ୟ ଖ୍ୟାତିଲାଭ କରିଛି । ବଡ଼ଛତା ମଠ ତରଫରୁ ମଙ୍ଗଳ ଆଳତି ଓ ପହୁଡ଼ ଆଳତିରେ କୀର୍ତ୍ତନ କରାଯାଏ । ବାଳଧୂପ, ଚନ୍ଦନ, ଦୋଳଯାତ୍ରା ସମୟରେ ମଧ୍ୟ କୀର୍ତ୍ତନ କରାଯିବା ବିଧି ଅଛି । ମଠ ତରଫରୁ ଶ୍ରୀମନ୍ଦିରରେ ତିନି ଠାକୁରଙ୍କୁ ପଦ୍ମବେଶ କରାଯାଏ । ମାଘ ଅମାବାସ୍ୟାଠାରୁ ବସନ୍ତ ପଞ୍ଚମୀ ମଧ୍ୟରେ ଶନିବାର କିମ୍ବା ବୁଧବାରରେ ଏହି ବେଶ ଅନୁଷ୍ଠିତ ହୁଏ । ବେଶ ଦିନ ମଠ ତରଫରୁ କ୍ଷୀରି ଭୋଗ କରାଯାଏ । ଏହି ମଠ ସିଂହଦ୍ୱାର ନିକଟରେ ଅଛି । ନିମ୍ବାର୍କ ରାଧାକାନ୍ତ ମଠ ପ୍ରତିଷ୍ଠା କରିଥିଲେ । ମହନ୍ତ ଉପଚାର, ଚାମର ଓ ଆଲଟ ସେବା କରିବାର ବ୍ୟବସ୍ଥା ଅଛି । ମଠର ଭିତର ବେଢ଼ା, ବାହାର ବେଢ଼ା ଓ ଗୁଣ୍ଡିଚା ଘର ପରିଷ୍କାର କରିବା ଦାୟିତ୍ୱ ଅଛି । ରାଧାକାନ୍ତ ମଠ ଚୈତନ୍ୟ ଗମ୍ଭୀରା ନାମରେ ପରିଚିତ । ଗୁଣ୍ଡିଚାକୁ ବୈଷ୍ଣବମାନେ ମାଧୁର୍ଯ୍ୟ ଲୀଳା ହିସାବରେ ଗ୍ରହଣ କରନ୍ତି । ସେଥିପାଇଁ ଗୁଣ୍ଡିଚା ଘର, ଗୁଣ୍ଡିଚା ଯାତ୍ରା ପୂର୍ବରୁ ମାର୍ଜନା କରି ନାମ ଗାଇ ଗାଇ ଗୌଡ଼ୀୟ ବୈଷ୍ଣବମାନେ ଅତ୍ୟନ୍ତ ବିହ୍ୱଳିତ ହୁଅନ୍ତି । ଏହି ଆଲୋଚନାରୁ ଜଣାଯାଉଛି ବିଶେଷତଃ ଏମାର ମଠ, ଉତ୍ତରପାର୍ଶ୍ୱ ମଠ, ଦକ୍ଷିଣ

ପାର୍ଶ୍ୱମଠ, ଜଗନ୍ନାଥବଲ୍ଲଭ ମଠ, ରାଧାକାନ୍ତ ମଠ, ରାଘବଦାସ ମଠ, ଶଙ୍କରାନନ୍ଦ ମଠ, ଓଡ଼ିଆ ମଠ ବ୍ୟତୀତ ଶ୍ରୀମନ୍ଦିରକୁ କେନ୍ଦ୍ର କରି ଅନେକ ମଠ ଗଢ଼ି ଉଠିଛି ବିଭିନ୍ନ ଧର୍ମାବଲମ୍ବୀମାନଙ୍କ ଦ୍ୱାରା । ଯଥା–ସାଲବେଗ ମଠ,




କବୀର ଚଉରା ମଠ, ଖାକି ଆଖଡ଼ାମଠ, ନିର୍ମାଣ ଆଖଡ଼ା ମଠ, ନିର୍ମୋହି ଆଖଡ଼ା ମଠ, ବଡ଼ ଆଖଡ଼ା ମଠ ଓ ସାନ ଆଖଡ଼ା ମଠ । ବାଉଳି ମଠ, ମହୀପ୍ରକାଶ ମଠ, ଗଙ୍ଗାମାତା ମଠ, ଦର୍ପଣ ନାରାୟଣ ମଠ, ଶଙ୍କରାନନ୍ଦ ମଠ, ଶିବତୀର୍ଥ ମଠ, ଲବଣିଖିଆ ମଠ, ଛାଉଣୀ ମଠ, ଝାଡୁ ମଠ, ପାପୁଡ଼ିଆ ମଠ, ଆଚାରୀ ମଠ, ନେଉଳ ଦାସ ମଠ, ଦେବଗିରି ମଠ, ପିପିଲି ସଦାବର୍ତ୍ତ ମଠ, ସୁନ୍ଦରଦାସ ମଠ, ବଡ଼ ସନ୍ଥ ମଠ, ସିଦ୍ଧବକୁଳ ପୀଠ, ସାନଛତା ମଠ, ଅଷ୍ଟଗ୍ରାସୀ ମଠ, ବଟିଆ ବାବାଜୀ ମଠ, ଚିକିଟି ମଠ, କୋଠଭୋଗ ମଠ, ସଂକ୍ରାନ୍ତି ମଠ, କେନ୍ଦୁଝର ମଠ, ସୁନାର ଗୌରାଙ୍ଗ ମଠ, ଆହ୍ଲା ମଠ, ଘୁମୁସର ମଠ, ଖଡ଼ାଖିଆ ମଠ, ନାଗା ମଠ, ଗୌରୀ ମଠ, ଦର୍ପଣୀ ମଠ, ଗୋପାଳତୀର୍ଥ ମଠ ଇତ୍ୟାଦି । ଏହା ବ୍ୟତୀତ ଆହୁରି ଅନେକ ମଠ ଶ୍ରୀମନ୍ଦିର ସଂସ୍କୃତି ସହିତ ଓତଃପ୍ରୋତ ଭାବେ ଜଡ଼ିତ ।

ଆମ ଐତିହ୍ୟ ଆମର ପରିଚୟ । ରାଜ୍ୟ ସରକାର ନୂତନ ପଦକ୍ଷେପ ନେବା ଦ୍ୱାରା ପୁନଃ ଐତିହ୍ୟରାଜି ପୁନଃଜୀବିତ ହୋଇଉଠୁଛି । ସବୁଠୁ ବଡ଼ କଥା, ସାମ୍ପ୍ରତିକ ଯୁଗରେ ଯୁବପିଢ଼ି ଆମର ପରମ୍ପରା, ଐତିହ୍ୟ, ସଂସ୍କୃତିର ମାହାତ୍ମ୍ୟ ବିଷୟରେ ଜାଣିବା ନିହାତି ଦରକାର । ସରକାରଙ୍କ କାର୍ଯ୍ୟ ପାଇଁ ଏବଂ ଗଣମାଧ୍ୟମର ପ୍ରଚାର ପ୍ରସାର ମାଧ୍ୟମରେ ଶ୍ରୀମନ୍ଦିର ଓ ତା'ର ସଂସ୍କୃତିର ନବୀକରଣ ଆଜି ସାରା ବିଶ୍ୱରେ ଚହଳ ପକାଇଛି । ଏହି ନବୀକରଣ ନୀତିରେ ମଠ ସଂସ୍କୃତିର ଇତିହାସ ହଜି ନ ଯାଉ, ବରଂ ଶତଗୁଣରେ ତା'ର ମାହାତ୍ମ୍ୟର ପ୍ରଚାର ପ୍ରସାର ହେଉ, ଏହା ହିଁ ଆଜିର ଦିନରେ ମୁଖ୍ୟ ପ୍ରସଙ୍ଗ ।

ଓଡ଼ିଆ ବିଭାଗ ମୁଖ୍ୟ
କିସ୍ ମାନିତ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



## ବ୍ୟକ୍ତିତ୍ୱ ଓ କୃତିତ୍ୱ

# ବ୍ୟାସକବି ଫକୀରମୋହନ

ସୁରେଶ କୁମାର ପ୍ରଧାନ

ଆଧୁନିକ ଓଡ଼ିଆ ଭାଷା-ସାହିତ୍ୟର ଭିତ୍ତି ସଂସ୍ଥାପକ ବ୍ୟାସକବି ଫକୀରମୋହନ ସେନାପତି ଯଥାର୍ଥରେ ଥିଲେ ଓଡ଼ିଆ ଜାତିର ସାର୍ଥକ ସେନାପତି । ଓଡ଼ିଆ ଭାଷାକୁ ନୂତନ ଦିଶା ପ୍ରଦାନ କରିବା ସହ ଓଡ଼ିଶାର ଲୁପ୍ତ ଆତ୍ମଗୌରବକୁ ଫେରାଇ ଆଣିବାରେ ତାଙ୍କର ଅକ୍ଳାନ୍ତ ଉଦ୍ୟମ ଚିରସ୍ମରଣୀୟ । ଜାତିପ୍ରାଣ ମନୀଷୀ ଭାବେ ଓଡ଼ିଆଙ୍କ ପ୍ରାଣରେ ନବଉନ୍ମାଦନା ଭରିବାରେ ସେ ଥିଲେ ସାର୍ଥକ ବିନ୍ଧାଣି ।

ଫକୀର ମୋହନଙ୍କ ଶୈଶବର ସ୍ୱର ଝଙ୍କୃତ ହୋଇଥିଲା ୧୮୪୩ ମସିହା ଜାନୁଆରୀ ମାସ ମକର ସଂକ୍ରାନ୍ତିରେ । ସ୍ଥାନଟି ଥିଲା ବାଲେଶ୍ୱର ସହରର ମଲ୍ଲିକାଶପୁର । ସ୍ନେହମୟୀ ଜନନୀ ଥିଲେ ତୁଳସୀ ଦେଈ ଓ ପିତା ଥିଲେ ଲକ୍ଷ୍ମୀନାରାୟଣ ସେନାପତି । ଈଶ୍ୱରଙ୍କର କରୁଣା ତାଙ୍କ ପ୍ରତି ଥିଲା ଅପାର । ଯେଉଁଥିପାଇଁ ସେ ନିଜସ୍ୱ ମେଧା ବଳରେ ସ୍ୱ ଭାଷା ଓ ଜାତି ପାଇଁ ନିଜକୁ ଉତ୍ସର୍ଗ କରିବାର ମହାର୍ଘ ଅବକାଶ ଲାଭ କରିବାର ସୁଯୋଗ ପ୍ରାପ୍ତ ହୋଇଥିଲେ । ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସ୍ୱୀୟ ପ୍ରଜ୍ଞା ପ୍ରତିଭାର ପରିଚୟ ପ୍ରଦାନ କରିବା ସହିତ ମୁମୂର୍ଷୁ ଓଡ଼ିଆ ଭାଷାକୁ ଉଦ୍ଧାର କରିପାରିଥିଲେ । ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର, ଅନ୍ଧବିଶ୍ୱାସ ଓ କୁଶାସନ ଯେତେବେଳେ ଏ ଭୂମିକୁ ଗ୍ରାସ କରିଥିଲା, ଠିକ୍ ସେତିକିବେଳେ ସେନାପତିଙ୍କ ଭଳି ଜଣେ ପ୍ରଜ୍ଞାବାନ୍ ସାରସ୍ୱତ ସାଧକ ସାରସ୍ୱତ ଜଗତର ସେନାପତି ହୋଇପାରିଲେ । ସର୍ଜନା ଓ ସଂଘର୍ଷ ଭିତରେ ଗତିକରି ପରବର୍ତ୍ତୀ କାଳରେ ସେ ହେଲେ ଆଧୁନିକ କଥା ସାହିତ୍ୟର ଜନକ ତଥା ଓଡ଼ିଆ ସାହିତ୍ୟ ଜଗତର 'ବ୍ୟାସକବି' । ତାଙ୍କ ରଚିତ କାଳଜୟୀ ସାହିତ୍ୟ ସେବା ପାଇଁ ୧୯୧୬ରେ ବାମଣ୍ଡାରୁ 'ସରସ୍ୱତୀ' ଉପାଧି ଲାଭ କରିଥିଲେ ।

ଫକୀରମୋହନ ଥିଲେ ବହୁବିଧ ପ୍ରତିଭାର ଉଜ୍ଜ୍ୱଳ ଉଦାହରଣ । ଶ୍ରେଷ୍ଠ କଥାକାର, ସଫଳ ଗାଳ୍ପିକ, ଦକ୍ଷ ସମ୍ବାଦପତ୍ର ପ୍ରତିଷ୍ଠାତା, ସୁଯୋଗ୍ୟ ଦେୱାନ୍, ମହାନ୍ ସଂସ୍କାରକ, ପ୍ରଚଣ୍ଡ ଦେଶଭକ୍ତ ଓ ସର୍ବୋପରି ଦେଶ ନିର୍ମାତା, ପ୍ରବୀଣ ଶିକ୍ଷାବିତ୍, ଶ୍ରେଷ୍ଠ ଭାଷାପ୍ରେମୀ ଓ ଦକ୍ଷ ପ୍ରଶାସକ ଭାବେ ସ୍ୱ କର୍ମମୟ ଜୀବନ ଭିତରେ ଜଣେ ସଙ୍କଟମୋଚକ ଭୂମିକା ନିର୍ବାହ କରି ସ୍ମରଣୀୟ ହୋଇପାରିଛନ୍ତି ଫକୀର ମୋହନ । ମାତୃଭାଷାର ଶ୍ରେଷ୍ଠ ଉପାସକ ହିସାବରେ ମାତୃଭାଷାରେ ଧୂରୀଣ ହେବାସହ ବଙ୍ଗଳା, ଇଂରାଜୀ, ସଂସ୍କୃତ ଓ ତେଲୁଗୁ ଭାଷାକୁ ଆୟତ୍ତ କରିଥିଲେ । ଜଣେ ବହୁ ଶାସ୍ତ୍ରଦର୍ଶୀ ବିଦ୍ୱାନ ହିସାବରେ ତତ୍କାଳୀନ ଓଡ଼ିଆ ସାହିତ୍ୟ ଜଗତରେ ନିଜକୁ ପ୍ରତିପାଦିତ କରିପାରିଥିଲେ । ତାଙ୍କ ବହୁ ଶାସ୍ତ୍ରଦର୍ଶିତାର ପ୍ରମାଣ ହେଉଛି ବଙ୍ଗଳା ଓ ସଂସ୍କୃତ ଭାଷାରୁ ଏକାଧିକ ପୁସ୍ତକର ଓଡ଼ିଆ ଭାଷାକୁ ଅନୁବାଦ ।

ଫକୀରମୋହନଙ୍କ କର୍ମମୟ ଜୀବନ ଥିଲା ସଂଘର୍ଷପୂର୍ଣ୍ଣ । ନଅବର୍ଷ ବୟସରେ ଚାଟଶାଳୀ ଶିକ୍ଷା ଗ୍ରହଣ କରି ଜୀବିକାର୍ଜନ ପାଇଁ ଆଗେଇ ଆସିଥିଲେ । ବାଲେଶ୍ୱରଠାରେ ଅଝାର ସିଲାଇ ଓ ନିମକ ମାହାଲରେ କର୍ମ, ବାରବାଟୀ ସ୍କୁଲ୍ ଓ ମିଶନ୍ ସ୍କୁଲ୍‌ରେ ଶିକ୍ଷକତା । ପ୍ରାୟ ଚାଳିଶ ବର୍ଷର କର୍ମମୟ ଜୀବନ ଭିତରେ ବିଭିନ୍ନ

ଗଡ଼ଜାତ, ଯଥା– ନୀଳଗିରି, ଡମପଡ଼ା, ଦଶପଲ୍ଲା, ଢେଙ୍କାନାଳ, କେନ୍ଦୁଝର, ପାଲଲହଡ଼ା ରାଜ୍ୟମାନଙ୍କରେ ସଫଳତାର ସହ କାର୍ଯ୍ୟ କରିଥିଲେ । କେଉଁଠି ଦେୱାନି ତ ଆଉ କେଉଁଠି ମ୍ୟାନେଜର, ଏହିପରି ବିଭିନ୍ନ ସ୍ଥାନରେ ନିଜର ବ୍ୟକ୍ତିତ୍ୱର ଚିହ୍ନ ଛାଡ଼ିଯାଇଛନ୍ତି । ତାଙ୍କ ଦୁଃସାହସିକ କାର୍ଯ୍ୟ ଆଜିବି ବିଭିନ୍ନ ଜୀବନ ପ୍ରସଙ୍ଗରେ ଆଲୋଚିତ । କେଉଁଝରର ପ୍ରଜା ବିଦ୍ରୋହକୁ ସାମନା କରିବା ଥିଲା ତାଙ୍କ ଚତୁରତାର ଏକ ସ୍ମରଣୀୟ ଅଧ୍ୟାୟ । ତେବେ କୌଣସି ଘଟଣାରେ ଓହରି ଯିବା ତାଙ୍କ ଜାତକରେ ନ ଥିଲା ।

ଜୀବନରେ ଘାତ–ପ୍ରତିଘାତକୁ ସହ୍ୟ କରି ଆଗକୁ ବଢ଼ିବାର କଳା–କୌଶଳ ବେଶ୍ ଜଣାଥିଲା ଫକୀରମୋହନଙ୍କୁ । ପରିଣତ ବୟସରେ ଦୁଃଖ–ଯନ୍ତ୍ରଣା ଭୁଲି ସାହିତ୍ୟ ଓ ସଂସ୍କୃତିର ଉନ୍ନତି ପାଇଁ ନିଜକୁ ସମର୍ପି ଦେଇଥିଲେ ସେ । ନାରୀ ଶିକ୍ଷା ନିମିତ୍ତ ଫକୀର ମୋହନଙ୍କ ବଳିଷ୍ଠ ପଦକ୍ଷେପକୁ ଓଡ଼ିଆ ଜାତି ସର୍ବଦା ମନେରଖିଛି । ସେ ଥିଲେ ବାଲେଶ୍ୱରରେ ନାରୀ ଶିକ୍ଷାର ସଂସ୍ଥାପକ । ତାଙ୍କ ରଚିତ 'ରେବତୀ' ଗଳ୍ପ, ଯାହା ନାରୀ ଶିକ୍ଷାକୁ ଉତ୍ସାହିତ କରିବା ପ୍ରଥମ ଶୁଭଶଙ୍ଖ ନିନାଦିତ ହୋଇଥିଲା ଓଡ଼ିଶା ଭୂଖଣ୍ଡରେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ଫକୀରମୋହନଙ୍କ ଯୋଗଦାନ ଥିଲା ମହତ୍ତ୍ୱପୂର୍ଣ୍ଣ । ୧୯୧୭ ମସିହାରେ କଟକଠାରେ ଅନୁଷ୍ଠିତ ଉତ୍କଳ ସମ୍ମିଳନୀ ଅଧିବେଶନରେ ସେ ସଭାପତିତ୍ୱ କରିଥିଲେ । ଏ ସମ୍ପର୍କରେ 'ଆତ୍ମଜୀବନୀ'ରେ ଉଲ୍ଲେଖ ଅଛି, ''୧୯୧୭ ମସିହାର ଶେଷଭାଗରେ କଟକରେ ସମଗ୍ର ଉତ୍କଳ ଭାଷାଭାଷୀ ମାନଙ୍କର ଯେଉଁ ସମ୍ମିଳନୀ ହୋଇଥିଲା, ସେଥିରେ ମୋ'ପରି ଅଧମ ଲୋକକୁ ସଭାପତି ପଦରେ ବରଣ କରି, ଦେଶବାସୀ ମୋତେ ଯତ୍‌ପରୋନାସ୍ତି ଅନୁଗୃହୀତ କରିଅଛନ୍ତି ।''

ଓଡ଼ିଆ ସାହିତ୍ୟ ଓ ସମ୍ବାଦପତ୍ରର ଶ୍ରେଷ୍ଠ ସଂରକ୍ଷକ ଥିଲେ ଫକୀର ମୋହନ ସେନାପତି । ସେ ଓଡ଼ିଆ ସମ୍ବାଦପତ୍ରକୁ ନୂତନ ଦିଗ୍‌ଦର୍ଶନ ଦେଇଥିଲେ । ତାଙ୍କ ପ୍ରଚେଷ୍ଟାରେ 'ସମ୍ବାଦବାହିକା' ପ୍ରକାଶ ପାଇ ଏକ ଗୌରବମୟ ଅଧ୍ୟାୟକୁ ଆବାହନ କରିଥିଲା । ତତ୍କାଳୀନ ଓଡ଼ିଆ ଜାତିର ନାନା ସମସ୍ୟା ଓ ସାହିତ୍ୟ ଆଦି ଉକ୍ତ 'ସମ୍ବାଦ ବାହିକା'ରେ ସ୍ଥାନ ପାଉଥିଲା । ଯଥାର୍ଥରେ ସେ ଥିଲେ ଓଡ଼ିଆ ସ୍ୱାଭିମାନର ଅନନ୍ୟ ମନୀଷୀ ଓ ବର୍ଣ୍ଣିଳ ବ୍ୟକ୍ତିତ୍ୱର ଅବିକଳ ଉଦାହରଣ ।

ଫକୀର ମୋହନଙ୍କ ସାରସ୍ୱତ ସୃଷ୍ଟି ସମଗ୍ର ତାଙ୍କୁ ଆଜି ଅମର କରିଛି । ସେ ଛାଡ଼ିଯାଇଥିବା ରାଶିରାଶି ରଚନା ଓଡ଼ିଆ ବାଣୀ ଭଣ୍ଡାରର ଅମୂଲ୍ୟ ରତ୍ନ । ଶ୍ରେଷ୍ଠ କଥାଶିଳ୍ପୀ ଭାବେ ଓଡ଼ିଆ ସାହିତ୍ୟକୁ ତାଙ୍କ ଅବଦାନ ଅତୁଳନୀୟ । ଗଳ୍ପ, ଉପନ୍ୟାସ, ଇତିହାସ, ଆତ୍ମଜୀବନୀ, ଅନୂଦିତ ଗ୍ରନ୍ଥ, ରାମାୟଣ, ମହାଭାରତ (ପଦ୍ୟାନୁବାଦ) ଉପନିଷଦ, ବୌଦ୍ଧଗ୍ରନ୍ଥ, ଆତ୍ମଜୀବନ ଚରିତ ଆଦିକୁ ନେଇ 'ଫକୀରମୋହନ ଗ୍ରନ୍ଥାବଳୀ'– ଓଡ଼ିଆ ପାଠକପାଠିକାଙ୍କୁ ଯେଉଁ ପ୍ରେରଣା ଯୋଗାଇଛି, ତାହା ଅବର୍ଣ୍ଣନୀୟ । ବାସ୍ତବିକ ତାଙ୍କ ରଚନାବଳୀ ଅଥବା କୃତି ଆଜି ତାଙ୍କୁ ଅମର କରିରଖିଛି । ୧୮୬୬ରେ ତାଙ୍କ ଲିଖିତ 'ଉତ୍କଳ ସରଳ ବ୍ୟାକରଣ', ଯାହା କଲିକତା ମିଶନ ପ୍ରେସ୍‌ରୁ ମୁଦ୍ରିତ ହୋଇଥିଲା ।

ସଫଳ କଥାକାର ଭାବେ ଫକୀର ମୋହନଙ୍କ ସୃଜନଯାତ୍ରାର ତୁଳନା ନ ଥିଲା । ତାଙ୍କ ଗଳ୍ପ ଓ ଉପନ୍ୟାସରେ ଉତ୍କଳ ଜନଜୀବନର ଚିତ୍ର ଅତ୍ୟନ୍ତ ମାର୍ମିକ ଢଙ୍ଗରେ ଚିତ୍ରିତ । ଫକୀରମୋହନଙ୍କ ରଚନାର ଭାବଭୂମି, ଚରିତ୍ର ଚିତ୍ରଣ, ବର୍ଣ୍ଣନା ଚାତୁରୀ ଓ ଭାଷା ବିନ୍ୟାସର ତୁଳନା ନାହିଁ । ସେ ଗଳ୍ପ ହେଉ ଅଥବା ଉପନ୍ୟାସ ପ୍ରତ୍ୟେକଟିରେ ପାଠକୀୟ ଉପଯୋଗିତା ଲୁକ୍କାୟିତ । ଉଚ୍ଚକୋଟୀର ସାରସ୍ୱତ କୃତି ପାଇଁ ତାଙ୍କୁ କଥାସମ୍ରାଟ୍‌ର ମର୍ଯ୍ୟାଦା ପ୍ରଦାନ କରିଛି । ସେ ଆଜି ନାହାନ୍ତି ସତ କିନ୍ତୁ ତାଙ୍କ ସୃଷ୍ଟି ସମଗ୍ର ମଧ୍ୟରେ ତାଙ୍କ ଅବସ୍ଥିତିକୁ ଉପଲବ୍ଧି କରିହୁଏ । ପ୍ରକାଶ କରିବାରେ କୁଣ୍ଠା ନାହିଁ ଯେ, ତାଙ୍କ ଧରାବତରଣ ଥିଲା ଓଡ଼ିଆ ଜାତି ପାଇଁ ମଙ୍ଗଳମୟ ମୁହୂର୍ତ୍ତ । ନିଶ୍ଚିତ ଭାବରେ ଓଡ଼ିଆ ଜାତି ଏହି ସଂକ୍ରାନ୍ତି ପୁରୁଷଙ୍କ ନିକଟରେ ଚିରକୃତଜ୍ଞ ।

---

ଖୁଣ୍ଟୁଣୀ, ଆଠଗଡ଼, କଟକ

# ଶ୍ରୀରାଧା

ଡକ୍ଟର ସବିତା ମଲ୍ଲିକ

ଶ୍ରୀରାଧା । ସେ ଅନନ୍ୟା, ଅସୀମ, ଅତୁଳନୀୟା ଓ ଅବର୍ଣ୍ଣନୀୟା, ପୂଜାରିଣୀ । ପୁଣି ସେ ପ୍ରେମିକା । ଧରାପୃଷ୍ଠକୁ ଆସିବା ପରେ ସେ ଆଖି ଖୋଲି ନଥିଲେ । ତାଙ୍କ ଆଖି ଏ ପୃଥିବୀ ବକ୍ଷକୁ ଆସିଥିଲା କେବଳ ଜଣକ ପାଇଁ । ସେ ଜଣକୁ ନ ଦେଖିଲେ ସେ ବା ଆଖି ଖୋଲିବେ କେମିତି । ପରିବାରରେ ଭାଳେଣି ପଡ଼ିଗଲା । ଝିଅଟିଏ ଜନ୍ମ ହୋଇଛି । ଆଖି ଖୋଲୁନି । ଏ କି ବିଚିତ୍ର ମାୟା । ଶୂନ୍ୟରୁ ଯେମିତି ଶୁଭୁଥିଲା ତାଙ୍କ ଆଖି ତ କେବଳ ଜଣକ ପାଇଁ । ତାଙ୍କୁ ନ ଦେଖିଲେ ତାଙ୍କ ଆଖି ପତା ଖୋଲିବ ବା କେମିତି ?

ମୋହନ ମୁରାରୀ ଶ୍ୟାମ ଦୁର୍ବାଦଳ ପ୍ରଭୁ ଶ୍ରୀକୃଷ୍ଣ ତାଙ୍କ ପାଖରେ ପହଞ୍ଚିଗଲା ପରେ ଶ୍ରୀରାଧାଙ୍କ ଆଖି ପତା ଆପେ ଖୋଲି ଯାଇଥିଲା । ତାଙ୍କ ଆଖି ପଟଳ ପ୍ରଥମେ ସେହି ମୋହନ ମୁରାରୀଙ୍କୁ ଦର୍ଶନ କରିଥିଲା । ସେ ଯେମିତି ତାଙ୍କରି ପାଇଁ ଏ ଧରାପୃଷ୍ଠକୁ ଆସିଥିଲେ ।

'ଶ୍ରୀରାଧା' ତାଙ୍କର ରହସ୍ୟମୟ ଜୀବନ ବୃତ୍ତାନ୍ତ ପାଇଁ ସେ ଆଜି ଏ ଧରାପୃଷ୍ଠରେ ପରିଚିତା । ସମଗ୍ର ବିଶ୍ୱ ଇତିହାସରେ ତାଙ୍କର ଗୋଟିଏ ପରିଚୟ ପ୍ରେମିକା । କେବଳ ପ୍ରେମିକା । ମର୍ତ୍ତ୍ୟରେ ତାଙ୍କର ଜନ୍ମନେବା ଥିଲା ପୂର୍ବ ନିର୍ଦ୍ଧାରିତ । ଯେମିତି ପ୍ରତ୍ୟେକ ମଣିଷର ଜନ୍ମଗତ ରହସ୍ୟ ପୂର୍ବ ନିର୍ଦ୍ଧାରିତ । ସେମିତି ରାଧାଙ୍କର ଜନ୍ମ ବୃତ୍ତାନ୍ତ ଥିଲା ପୂର୍ବ ନିର୍ଦ୍ଧାରଣ । ଧିରେ ଧିରେ ବଡ଼ ହୋଇଛନ୍ତି । ତାଙ୍କର ଗହମ ରଙ୍ଗର ଦେହ । ନିଃସ୍ୱାର୍ଥପର ମନ । ସାରା ବୃନ୍ଦାବନକୁ ଚମତ୍କୃତ କରଛି । ଚମତ୍କୃତ କରିଛି ମୋହନ ମୁରାରୀଙ୍କୁ । ଛଳ ଛଳ ଆଖି ସଭିଙ୍କୁ ଆପଣାର କରିଛି ।

ଯୌବନରେ ପାଦ ଦେଲା ପରେ ପିତାମାତା ବିବାହ ବନ୍ଧନରେ ବାନ୍ଧି ଦେଇଛନ୍ତି । ଯେଉଁ ବନ୍ଧନ ଏ ସୃଷ୍ଟିର ବୃହତ୍ ବନ୍ଧନ । ଯେଉଁଥିରୁ ମୁକୁଳିବା ଗୋଟିଏ ନାରୀ ପାଇଁ ସହଜ ସାପେକ୍ଷ ନୁହେଁ । ତାକୁ ସେ ସହଜରେ ଏଡ଼େଇ ଦେଇଛନ୍ତି । ସ୍ୱାମୀ, ଶାଶୁ, ଶ୍ୱଶୁର ସାହି ପଡ଼ିଶା କେହି ବି ତାଙ୍କୁ ବାନ୍ଧି ପାରିନାହାନ୍ତି ।

କେବଳ ସେହି ମୋହନ ମୁରାରୀଙ୍କର ମଧୁର ବଂଶୀ ଧ୍ୱନି ଶୁଣିବା ପାଇଁ ଶ୍ରୀରାଧା ଯେମିତି ବିକଳ ହେଉଛନ୍ତି । ଜଳ ବିନା ମୀନ ପରି ସେ ଘରର ଚାରି କାନ୍ଥ ଭିତରେ ଛଟପଟ ହେଉଛନ୍ତି ।

ସେଦିନ ରାତି ଅଧରେ କୃଷ୍ଣଙ୍କର ସେହି ମଧୁର ବଂଶୀ ଧ୍ୱନି ତାଙ୍କୁ ଶୁଆଇ ଦେଉନି । ବିଚଳିତ କରୁଛି ତାଙ୍କର ଅନ୍ତରାତ୍ମାକୁ । ତାଙ୍କ ପାଖକୁ ଯିବା ପାଇଁ ସେ ଯେମିତି ଡହଳ ବିକଳ ହେଉଛନ୍ତି । ରାତିର ବେଗ ବଢ଼ି ଚାଲିଛି । ରାତିର ନିଶବ୍ଦତାରେ ବଂଶୀର ଧ୍ୱନି ଆହୁରି ମଧୁର, ନିଆରା ଲାଗୁଛି ଶ୍ରୀରାଧାଙ୍କ କର୍ଣ୍ଣ ଗହ୍ୱରକୁ । ନିଜକୁ ଆଉ ରୋକି ପାରିଲେନି । ନବ ବିବାହିତା ବଧୂ ମୁଣ୍ଡରେ ଓଢ଼ଣା ଟାଣି ଘରୁ ଗୋଡ଼ କାଢ଼ି କିଛି ଦୂର ଯାଆନ୍ତେ ଶ୍ୱଶୁରଙ୍କ ଆଗରେ ଧରା ପଡ଼ିଛନ୍ତି । ଶ୍ୱଶୁର ଉତ୍ତ୍ୟକ୍ତ ହୋଇ ପଛରୁ ଡାକୁଛନ୍ତି । ଯଦି ଆଉ ଗୋଟାଏ ପାଦ ଆଗକୁ ପକାଇବୁ ରାଧା ତୁ ଅସତୀରେ ଗଣା ହେବୁ । ଏ ସାରା

ସୃଷ୍ଟି ତୋତେ ଅସତୀ ଓ ଦୋଚାରୁଣୀ ବୋଲି ଆଖ୍ୟା ଦେବ ।

ଶ୍ୱଶୁରଙ୍କର କଥା ଶୁଣି ଶ୍ରୀରାଧା ଗୋଟିଏ ପାଦ ଭୂମି ଉପରେ ଆଉ ଗୋଟିଏ ପାଦ ଟେକିଛନ୍ତି । ଚିନ୍ତା କରୁଛନ୍ତି ପଛରେ ମୋ ସତୀତ୍ୱର ପରାକାଷ୍ଠାକୁ । ମୋ କୁଳବଧୂର ମର୍ଯ୍ୟାଦା । ମୋ ପରିବାରର ସମ୍ମାନ, ମୋ ପିତାଙ୍କ ପରି ଶ୍ୱଶୁରଙ୍କର କଠୋର ବାକ୍ୟ, ପୁଣି ତାଙ୍କ ସତ୍ୟ ବଚନ । ଆଗରେ ମୋ ମୋହନ ମୁରାରୀ ଶ୍ରୀକୃଷ୍ଣ । ସେ କିଛି ନୁହେଁ, ପୁଣି ମୋର ସର୍ବସ୍ୱ, ଯାହାପାଇଁ ରାତି ଦିନ ମୁଁ ଗୁମୁରି ଗୁମୁରି କାନ୍ଦୁଛି, ଯାହାର ବଂଶୀ ଧ୍ୱନି ମୋ ଅଙ୍ଗପ୍ରତ୍ୟଙ୍ଗରେ ଖେଳେଇ ଦେଉଛି ଏକ ନୂତନ ଶିହରଣ । ମୋ ଜୀବନ ମୃତ୍ୟୁ । ମୋ ହସ ଲୁହ ମୋ ସୁଖ ଦୁଃଖ ମୋ ଦିନ ରାତି ସବୁ କେବଳ ସେହି ମୋହନ ମୁରାରୀଙ୍କ ପାଇଁ । ଆଖି ଖୋଲିଲେ ଦିଶୁଛି, ତାଙ୍କରି ରୂପ,ଆଖି ମୁଦିଲେ ଦିଶୁଛି ତାଙ୍କରି ରୂପ । ତାଙ୍କର ସେ ଚାହାଣି ମୋତେ ବ୍ୟତିବ୍ୟସ୍ତ କରିପକାଉଛି । ମୋହନ ମୁରାରୀର ବଂଶୀଧ୍ୱନି ତ୍ରିଭଙ୍ଗୀ ଚାହାଣି ମୟୂରପୁଛ, ଏସବୁ ଛାଡ଼ି ମୁଁ କ'ଣ ବଞ୍ଚିପାରିବି ।

ମୋ ମୋହନ ମୁରାରୀକୁ ପାଇବା ପାଇଁ ମୋତେ ଯଦି ଅସତୀ, ଦୋଚାରୁଣୀ ହେବାକୁ ହୁଏ , ମୁଁ ତାକୁ ଅତି ସହଜରେ ଗ୍ରହଣ କରିବି । ଏତିକି ଚିନ୍ତା କରି ଶ୍ରୀରାଧା ଶ୍ୱଶୁରଙ୍କ ଆଖି ସାମନାରେ ଆଗକୁ ପାଦ ବଢାଇଛନ୍ତି । କଦମ୍ବ ବନରେ ଶ୍ରୀକୃଷ୍ଣ ପାଖରେ ପହଞ୍ଚିଛନ୍ତି । ପ୍ରଭୁ ମୋହନ ମୁରାରୀ ମୃଦୁ ହସି କହୁଛନ୍ତି, ଏ ତୁମେ କ'ଣ କଲ ରାଧେ ।

ଶ୍ରୀରାଧା ଉଚ୍ଚ ସ୍ୱରରେ କହିଥିଲେ, 'ପ୍ରେମ' ,

ଏ ହେଉଛି ମୋ ପ୍ରେମ, ଯାହା ପାଇଁ ସବୁକୁ ପଛ କରି ଚାଲି ଆସିଲି । ମୋ ପାଇଁ ବିବାହ, ସ୍ୱାମୀ, ଶାଶୁ, ଶ୍ୱଶୁର ପରିବାର ସମାଜ ସବୁ ମୂଲ୍ୟହୀନ ।

ଷୋଳ ସହସ୍ର ଗୋପନାରୀ । ଅନେଶତ ପାଟରାଣୀ ପ୍ରଭୁ ଶ୍ରୀକୃଷ୍ଣଙ୍କର । ଏସବୁ ପରେ ତାଙ୍କ ଆଖିର ଭାଷା ଓ ମନର ଭାବନା ବୁଝିପାରୁଥିଲେ କେବଳ ଶ୍ରୀରାଧା ।

ଶ୍ରୀରାଧା ହିଁ ଥିଲେ ପ୍ରଭୁ ଶ୍ରୀକୃଷ୍ଣଙ୍କର ଏକାନ୍ତ ଆପଣାର । ଏକାନ୍ତ ନିଜସ୍ୱ । ସେଦିନ ପ୍ରଭୁ ମୋହନ ମୁରାରୀଙ୍କର ଦେହରେ ତାତି, ମୁଣ୍ଡରେ ଯନ୍ତ୍ରଣା, ଯାହାଙ୍କର ଚାହାଣିରେ ଏ ସୃଷ୍ଟି ପରିଚାଳିତ ସେ ପୁଣି ପାଦ ଉଠାଇବା ପାଇଁ ଅକ୍ଷମ । ବାଟ ଚାଲି ପାରୁନାହାନ୍ତି । ସେତେବେଳେ ପ୍ରଭୁ ତାଙ୍କର ଅନେଶତ ରାଣୀକୁ କହୁଛନ୍ତି, କାହାର ପାଦଧୂଳି ମୋ ମଥାରେ ଲଗାଇ ଦିଅ । ମୋର ପୀଡ଼ା ଦୂର ହୋଇଯିବ । ମୋ ଯନ୍ତ୍ରଣା ଲାଘବ ହୋଇଯିବ ।

ଏ କଥା ଶୁଣି ରାଣୀମାନେ ମୁଣ୍ଡରେ ହାତ ଦେଇଛନ୍ତି । ନିଜ ନିଜ ଭିତରେ ବାର୍ତ୍ତାଳାପ କରୁଛନ୍ତି । ଏତେବଡ଼ ପାପକୁ କ'ଣ ବୋହି ଚାଲିପାରିବୁ । ଆମର ଇହ ଓ ପର କାଳର ଦେବତା ପ୍ରଭୁ ଶ୍ରୀକୃଷ୍ଣ । ତାଙ୍କ ମଥାରେ ଆମେ ପାଦଧୂଳି ବୋଳିବୁ ନାହିଁ । ଏତେବଡ଼ ପାପର ଭାଗୀଦାର ଆମେ ହେବୁ ନାହିଁ । ଏସବୁ କଲେ ଆମେ ନର୍କଗାମୀ ହେବୁ ।

କିନ୍ତୁ ପ୍ରେମିକା ଶ୍ରୀରାଧା ପାପ ପୁଣ୍ୟର କଥା ଚିନ୍ତା କରିନାହାନ୍ତି । ସ୍ୱର୍ଗ ନର୍କର କଥା ଭାବି ନାହାନ୍ତି । ସେ କେବଳ ଗୋଟିଏ ଚିନ୍ତାରେ ମଗ୍ନ, କିପରି କୃଷ୍ଣଙ୍କର ପୀଡ଼ା ଦୂର ହେବ । ଯେତେବେଳେ ସମସ୍ତେ ମନା କରିଛନ୍ତି ପାଦଧୂଳି ଦେବା ପାଇଁ ସେତେବେଳେ ଶ୍ରୀରାଧା ନିଜ ପାଦର ଧୂଳିକୁ ମୋହନ ମୁରାରୀ ଶ୍ୟାମ ଦୁର୍ବାଦଳ ପ୍ରଭୁ ଶ୍ରୀକୃଷ୍ଣଙ୍କର ମଥାରେ ଲେପନ କରିଛନ୍ତି । ହଠାତ୍ ପ୍ରଭୁଙ୍କର ସବୁତକ ପୀଡ଼ା ଦୂରୀଭୂତ ହୋଇଛି । ପ୍ରଭୁ ତ୍ରିଭଙ୍ଗୀ ଠାଣିରେ ହସି ଦେଇଛନ୍ତି ।

ମନେ ମନେ କହୁଛନ୍ତି, ଏ ହେଉଛି ପ୍ରେମିକା ଯିଏ କେବଳ ପ୍ରେମିକ ପୁରୁଷର ମଙ୍ଗଳ ମନାସିବ । ଏଠି ପାଇବା ହରାଇବାର ପ୍ରଶ୍ନ ନାହିଁ । ପାଇବାର ଆଶା କି ଆକାଂକ୍ଷା ନାହିଁ । ହରାଇବାର ଦୁଃଖ କି ଅବସାଦ ନାହିଁ । କେବଳ ଦେବାର ଆନନ୍ଦ । ଯାହାଥିଲା ଶ୍ରୀରାଧାଙ୍କ ପାଖରେ । ସେଥିପାଇଁ ସେ ପ୍ରେମିକା ଶ୍ରେଷ୍ଠ । ଏ ସୃଷ୍ଟିର ଆଧାର ପ୍ରେମ । ଆଉ ପ୍ରେମର ଆଧାର ଶ୍ରୀରାଧା । ପ୍ରେମର ଦେବୀ ଶ୍ରୀରାଧା ।

ଏସବୁ ପରେ ସେ କ'ଣ ଭାବିଥିଲେ ପ୍ରାଣପ୍ରିୟ ମୋହନ ମୁରାରୀ ତାଙ୍କୁ ଦିନେ ଏକା କରି ଚାଲିଯିବେ ? ଚାଲି ଚାଲି ଯାଇଛନ୍ତି ପ୍ରଭୁ ଶ୍ରୀକୃଷ୍ଣ ମଥୁରା । ଛାଡ଼ି ଯାଇଛନ୍ତି ନୀଳ ତମାଳ, ଯମୁନା ଜଳ, ଗୋପଗୋପାଳୁଣୀ ଆଉ ପ୍ରାଣଠୁଁ ଅଧିକ ଭଲ ପାଉଥିବା ଶ୍ରୀରାଧାଙ୍କୁ ।

ଶ୍ରୀରାଧା ଗୁମୁରି ଗୁମୁରି କାନ୍ଦୁଛନ୍ତି । ମନେ ପକାଉଛନ୍ତି କୃଷ୍ଣଙ୍କ ସହିତ ବିତାଇଥିବା ମୁହୂର୍ତ୍ତମାନଙ୍କୁ । ଆଖିରେ ସ୍ୱପ୍ନ ନାହିଁ, କି ହୃଦୟରେ କମ୍ପନ ନାହିଁ, ଓଠରୁ ହଜି ଯାଉଛି ମିଠା ହସର କ୍ଷୀଣଧାର । ତଥାପି ଅପଲକ ଆଖି ଦୁଇଟି ଚାହିଁ ରହିଛି ସେହି କଳାକାହ୍ନୁର ଆସିବା ବାଟକୁ । ମୂକ ପାଲଟି ଯାଉଛି ଆଜି ଶାରୀ ବେଦନାର ଜଉ ଘରେ ।

ମୋହନ ମୁରାରୀଙ୍କୁ ମନେ ପକାଇ ଭାବୁଛନ୍ତି ଶ୍ରୀରାଧା, ହେ କୃଷ୍ଣ ! ପଛ କରି ମୋତେ ଚାଲିଗଲ ତୁମେ । ଏ ସାରା ବ୍ରହ୍ମାଣ୍ଡ ମୋ ପାଇଁ ଅନ୍ଧାର ଦିଶୁଛି । ଅଣ୍ଡାଳି ଅଣ୍ଡାଳି ବାଟ ଚାଲିଥାନ୍ତି, ମୋ ପାଦତଳୁ ଆପେ ମାଟି ଖସି ଯାଉଛି । ଏ ସାରା ଗୋପ ବୃନ୍ଦାବନ ମୋତେ କୃଷ୍ଣମୟ ଲାଗୁଛି । ଚଉଦିଗରୁ କୃଷ୍ଣ କୃଷ୍ଣ ଶବ୍ଦ ଶୁଭି ଯାଉଛି ରାଧାଙ୍କର କର୍ଣ୍ଣ ଗହ୍ୱରକୁ । ଶୟନେ ସପନେ କେବଳ କୃଷ୍ଣ ନାମ ଗାଇ ଚାଲିଛନ୍ତି । ଅନୁରାଗିଣୀ ପ୍ରେମିକା ସେ, ତାଙ୍କର ବା ଦେହ କ'ଣ ଦରକାର । କୃଷ୍ଣଙ୍କ ନାମ ହିଁ ତାଙ୍କ ପାଇଁ ଯଥେଷ୍ଟ ।

ପ୍ରେମରେ ଖୋଲିଯାଏ ପ୍ରେମିକାର ତୃତୀୟ ନେତ୍ର, ଯେଉଁଥିରେ ନିର୍ବିବାଦରେ ଦେଖି ହୁଏ ଈପ୍‌ସିତ ପୁରୁଷକୁ । ଆଖି ବୁଜି ମନେ ପକାଉଛନ୍ତି ସେହି ପ୍ରିୟ ପୁରୁଷକୁ ।

ସତରେ କ'ଣ ଶ୍ୟାମ ଦୁର୍ବାଦଳ ପ୍ରଭୁ ମୋହନ ମୁରାରୀ ତାଙ୍କୁ ମନେ ପକାଉଥିବେ । ଏକଥା ମନକୁ ମନ ଗୁଣୁଗୁଣୁ ହୋଇ ଶ୍ରୀରାଧା ଭାବୁଛନ୍ତି । ସେ ସିନା ଗୋପ ଛାଡ଼ି ଚାଲି ଯାଇଛନ୍ତି ହେଲେ ମୋ ଆତ୍ମାରେ । ମୋ ଚନ୍ତା ଚେତନାରେ ସେ ଅଛନ୍ତି । ମୋ ଜନ୍ମଜନ୍ମାନ୍ତରର ଶ୍ୟାମ ବର୍ଣ୍ଣ ପ୍ରେମିକ ସେ ।

ପୁଣି ଭାବୁଛନ୍ତି କେଡ଼େ ସୁନ୍ଦର ତାଙ୍କ ମଧୁର ବଂଶୀସ୍ୱର ଠିକ୍ ତାଙ୍କ ହସ ପରି । କେଡ଼େ ସୁନ୍ଦର ତାଙ୍କ ଚାହାଣି ଠିକ୍ ତାଙ୍କ ମଧୁର ବଚନ ପରି ।

ଶ୍ରୀରାଧା କେବେ ଜାଣିନ୍ତିନି ତାଙ୍କ ଇପ୍‌ସିତ ପୁରୁଷ ତାଙ୍କୁ ମନେ ପକାନ୍ତି କି ନାହିଁ । ଜାଣିବାକୁ କେବେ ଇଚ୍ଛା ବି କରିନାହାନ୍ତି, ଆକାଶକୁ ଚାହିଁ ଭାବୁଛନ୍ତି ଆକାଶର ରଙ୍ଗ ନୀଳ, ମୟୂରର ରଙ୍ଗ ନୀଳ, ନୀଳ ତମାଳ ଯମୁନାର ଜଳ ନୀଳ । କୃଷ୍ଣଙ୍କର ରଙ୍ଗ ନୀଳ । ରାଧାଙ୍କର ବିରହାତ୍ମକ ଅନ୍ତର ସ୍ୱଳ୍ପ ନୁହେଁ ବିପୁଳ । ଭଲ ପାଇବାର ଅନ୍ତର କେବେ ସ୍ୱଳ୍ପ ହୋଇପାରେନା । ତାହା ବିଶାଳ ସାଗରଠାରୁ ଗଭୀର । ସେଥିରେ ଭଲ ପାଇବାକୁ ହିସାବ କରି ରଖାଯାଏ ନାହିଁ ।

ଯାହା ଥିଲା ପ୍ରେମିକା ଶ୍ରୀରାଧାଙ୍କର ।

ଆଇଆର୍‌ସି ଭିଲେଜ
ଭୁବନେଶ୍ୱର-୭୫୧୦୧୫



# ବିପ୍ଳବୀ ବୀର ରତନା ନାୟକ

**ମଧୁମିତା ମହାନ୍ତି**

ଇତିହାସ ଆଜି ବି ଗୁମୁରି ଗୁମୁରି ଅଶ୍ରୁ ଝରାଉଛି– ବୈତରଣୀର ଛଳଛଳ ଶବ୍ଦରେ ବେଦନାର ସ୍ୱର– ଶାଳବଣର ମଥାନରେ କାକର କୁହୁଡ଼ିର ଦ୍ୱନ୍ଦ୍ୱଯୁଦ୍ଧ– କିଏ ଝରି ପଡ଼ିବ ତାରପୁର ଗାଁ ଦାଣ୍ଡରେ ଟୋପାଏ ଲୁହ ହେଇ....

ହଁ, ତାରପୁର ଗାଁ– ଯିଏ ଆଜି ତୀର୍ଥସ୍ଥାନ ପାଲଟି ଯାଇଛି, ରତନା ନାୟକ ଭଳି ଜଣେ ମହାନ୍ ପରାକ୍ରମଶାଳୀ ବୀରଙ୍କୁ ତା'ରି ମାଟିରେ ଜନ୍ମ ଦେଇ । ୧୮୨୦ ମସିହାର ଏକ ମାହେନ୍ଦ୍ର ବେଳାରେ କେନ୍ଦୁଝରର ସେ ଅଖ୍ୟାତ ଭୂୟାଁ ଜନଜାତିଭରା ଗାଁରେ ଐଶ୍ୱରିକ ଆଶୀର୍ବାଦଟିଏ ଭୂମି ଛୁଇଁଥିଲା– ରତନା ନାୟକ ନାଁ ନେଇ ।

କେନ୍ଦୁଝରର ଆଦିମ ଅଧିବାସୀ ଏଇ ଭୂୟାଁ ଜାତି ନିଜକୁ ସେଠାକାର ସର୍ବପ୍ରଧାନ ଜାତି ଏବଂ ସେଇ ମାଟିର ସନ୍ତାନ ବୋଲି ଦାବି କରନ୍ତି । କେନ୍ଦୁଝର ରାଜବାଟୀ ଯେ ତାଙ୍କର– ରାଜାକୁ ରଖିବା ନ ରଖିବା ତାଙ୍କରି ସ୍ୱାଧିକାର– ଏ ପ୍ରକାର ଏକ ରାଜନୈତିକ ଚେତନା ସେମାନଙ୍କ ଭିତରେ ଜୀବନ୍ତ ହେଇ ରହିଥିଲା । ଚିରାଚରିତ ପ୍ରଥାନୁଯାୟୀ ନୂଆ ରାଜାଗାଦିରେ ବସିବା ସମୟରେ ବ୍ରାହ୍ମଣ ପୁରୋହିତ ଅପେକ୍ଷା ଭୂୟାଁ ସର୍ଦ୍ଦାରର ଉପସ୍ଥିତି ଏକାନ୍ତ ଆବଶ୍ୟକ । ଭଞ୍ଜ ରାଜବାଟୀର ନିୟମ ଅନୁଯାୟୀ ରାଜା ଅପରାଧି ବିବେଚିତ ଯେକୌଣସି ଭୂୟାଁକୁ ପ୍ରାଣଦଣ୍ଡ ଦେଇପାରିବେ– ଅନ୍ୟ ପକ୍ଷରେ ରାଜା ଅତ୍ୟାଚାରୀ ବିବେଚିତ ହେଲେ ସେମାନେ ରାଜାଙ୍କୁ ଗାଦିଚ୍ୟୁତ କରିପାରିବେ ।

ଅଦ୍ଭୁତ ଏ ନିୟମ–କିନ୍ତୁ ଏଇ ନିୟମର ଡୋରରେ ବାନ୍ଧି ହେଇ ଶାସକ ଏବଂ ଶାସିତ ମଧ୍ୟରେ ଏକ ଦୁର୍ଲଭ ରାଜନୈତିକ ସମ୍ପର୍କ ସ୍ଥାପିତ ହେଇଅଛି । ଜଣେ ମଣିଷ କୋଳରେ ବସି ଆଉ ଜଣେ ମଣିଷ ରାଜ ଅଭିଷେକ ହେବ– ରାଜା ବୋଲାଇବ– ଏ ଅଭିନବ ଚିନ୍ତାଧାରା ବୋଧହୁଏ କେବଳ କେନ୍ଦୁଝରରେ ହିଁ ସମ୍ଭବ ହୋଇପାରିଥିଲା ।

ଭୂୟାଁମାନଙ୍କର ବିଶ୍ୱାସ ଯେ ସେମାନଙ୍କର ନିଜର ରାଜା ବାଛିବାର ଅଧିକାର ଅଛି । କିନ୍ତୁ ଇଂରେଜମାନଙ୍କର ଓଡ଼ିଶା ଅଧିକାର ପରେ ସେମାନଙ୍କର ଏ ଅଧିକାରକୁ ସ୍ୱୀକୃତି ମିଳିଲା ନାହିଁ । ଶାସନ କ୍ଷେତ୍ରରେ ସେମାନଙ୍କ କୌଣସି ଅଧିକାର ତ ନାହିଁ ବରଂ ରାଜା ଓ ତାଙ୍କର ଅମଲାମାନଙ୍କ ଦ୍ୱାରା ସେମାନେ ନିର୍ଯ୍ୟାତିତ ହେଲେ । ଏପରିକି ଆପତ୍ତି ଅଭିଯୋଗ କରିବା ପାଇଁ ସେମାନେ ରାଜାଙ୍କ ନିକଟକୁ ଯିବାର ଅନୁମତି ବି ପାଇଲେ ନାହିଁ । କିଛି ଭୂୟାଁ ନେତା ବନ୍ଦୀ ହେଲେ । ୧୮୪୯ରେ ରତନା ନାୟକ ତିନିଦିନ ପାଇଁ ବନ୍ଦୀ ହେଇଥିଲେ । ସେଇଦିନଠାରୁ ସେ ବଜ୍ର ଶପଥ ନେଇଥିଲେ ସୁଯୋଗ ପାଇବା ମାତ୍ରେ ହିଁ ଅତ୍ୟାଚାରୀ ରାଜଶାସନ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବେ ।

ସୁଯୋଗ ଆସିଗଲା– ୧୮୬୧ ମସିହା ମାର୍ଚ୍ଚ ୨୨ ତାରିଖରେ କେନ୍ଦୁଝରର ମହାରାଜା ଗଦାଧର ଭଞ୍ଜ କଲିକତା ନିକଟବର୍ତ୍ତୀ ତ୍ରିବେଣୀକୁ ଏକ ତୀର୍ଥଯାତ୍ରାରେ ଯାଇଥିବା ସମୟରେ ମୃତ୍ୟୁବରଣ କଲେ । ପାଟରାଣୀ ବିଷ୍ଣୁପ୍ରିୟା ପାଟମହାଦେଈ ନିଃସନ୍ତାନ ଥିଲେ । କିନ୍ତୁ ରାଜାଙ୍କର ଫୁଲବିବାହୀ ରାଣୀଙ୍କର ଦୁଇ ପୁତ୍ର ଥିଲେ–

ଧନୁର୍ଜୟ ଏବଂ ଚନ୍ଦ୍ରଶେଖର । ରାଜ୍ୟର ଦେଓ୍ୱାନ ଏବଂ କିଛି ଅଫିସର ନାବାଳକ ଧନୁର୍ଜୟଙ୍କୁ ୧୮୬୧ ମସିହା ଅପ୍ରେଲ ତିନି ତାରିଖ ଦିନ ସିଂହାସନରେ ବସେଇଲେ । ଷ୍ଟେଟ୍‌ର ପ୍ରାଚୀନ ପ୍ରଥାକୁ ଭ୍ରୂକ୍ଷେପ ନ କରି– ଭୂୟାଁମାନଙ୍କୁ କୌଣସି ଗୁରୁତ୍ୱ ନ ଦେଇ ବ୍ରିଟିଶ ସରକାର ଧନୁର୍ଜୟ ଭଞ୍ଜଙ୍କୁ ସିଂହାସନରେ ବସେଇଲେ ନାହିଁ ତ – ଭୟଙ୍କର ଏକ ମେଳି ବା ବିଦ୍ରୋହର ବୀଜବପନ କଲେ । ଭୂୟାଁମାନଙ୍କ ସହିତ ଜୁଆଙ୍ଗ, କୋହ୍ଲ, ମୁଣ୍ଡା, ହୋ'ମାନେ ମଧ୍ୟ ବିଦ୍ରୋହକୁ ସମର୍ଥନ କରିଥିଲେ । ଯେତେବେଳେ ଧନୁର୍ଜୟ ଭଞ୍ଜ ସର୍ବୋଚ୍ଚ ବ୍ରିଟିଶ ଅଦାଲତରେ ଷ୍ଟେଟ୍‌ର ଆଇନ ସମ୍ମତ ରାଜାରୂପେ ବିବେଚିତ ହେଲେ ଏବଂ ସାବାଳକ ହେଲା ପରେ ରାଜ୍ୟର ଶାସନଭାର ଗ୍ରହଣ କଲେ ସେତେବେଳେ ଦୁର୍ଦ୍ଧର୍ଷ ବୀର ରତନା ନାୟକଙ୍କ ନେତୃତ୍ୱରେ ଭୂୟାଁମାନେ ବିଦ୍ରୋହର ଘୋଷଣା କଲେ ।

ରାଣୀ ବିଷ୍ଣୁପ୍ରିୟା ଧନୁର୍ଜୟ ଭଞ୍ଜଙ୍କୁ ରାଜା ହିସାବରେ ଗ୍ରହଣ କରୁ ନଥିଲେ । ସେତିକିବେଳେ ମୟୂରଭଞ୍ଜର ରାଜା ଦାବି କଲେ ଯେ ମହାରାଜା ଗଦାଧର ଭଞ୍ଜ ତାଙ୍କ ନାତି ବୃନ୍ଦାବନ ଭଞ୍ଜଙ୍କୁ ନିଜର ପୋଷ୍ୟପୁତ୍ର ହିସାବରେ ଗ୍ରହଣ କରିଥିଲେ । ତେଣୁ ନ୍ୟାୟତଃ କେନ୍ଦୁଝର ରାଜସିଂହାସନରେ ଉତ୍ତରାଧିକାରୀ ବୃନ୍ଦାବନ ଭଞ୍ଜ । ରାଣୀ ବିଷ୍ଣୁପ୍ରିୟା ତାହାକୁ ସମର୍ଥନ କଲେ ।

କନ୍ଦଳ ବଢ଼ି ଚାଲିଲା । ଓଡ଼ିଶା ରାଜ୍ୟ ସମୂହର ସୁପରିନ୍‌ଟେଣ୍ଡେଣ୍ଟ ଏନ୍.ସୁର ସ୍ଥିତିର ତର୍ଜମା କରି ୧୮୧୬ ମସିହାରେ ୧୧ଶ ରେଗୁଲେସନ ବଳରେ ଧନୁର୍ଜୟ ଭଞ୍ଜଙ୍କ ସପକ୍ଷରେ ରାୟ ଦେଲେ । ମାତ୍ର ବୃନ୍ଦାବନ ଭଞ୍ଜ ଏ ସିଦ୍ଧାନ୍ତ ବିରୁଦ୍ଧରେ କଲିକତା ହାଇକୋର୍ଟରେ ଆପତ୍ତି କଲେ । ଦୁର୍ଭାଗ୍ୟ, ସେଠାରେ ମଧ୍ୟ ତାଙ୍କୁ ସମର୍ଥନ ମିଳିଲା ନାହିଁ । ସେ ବ୍ରିଟିଶ ଶାସନତନ୍ତ୍ରର ସର୍ବୋଚ୍ଚ ନ୍ୟାୟାଳୟ ପ୍ରିଭି କାଉନ୍‌ସିଲ୍‌ରେ ଆପତ୍ତି କଲେ । ମାତ୍ର ସେଠି ବିଚାରର ଫଇସଲା ହେବା ଆଗରୁ ସରକାର ଧନୁର୍ଜୟ ଭଞ୍ଜଙ୍କୁ ଷ୍ଟେଟ୍‌ର ନ୍ୟାଯ୍ୟ ଉତ୍ତରାଧିକାରୀ ରୂପେ ସ୍ୱୀକୃତି ପ୍ରଦାନ କଲେ । କ୍ଷୁବ୍ଧ ମହାରାଣୀ ବିଷ୍ଣୁପ୍ରିୟା ପାଟମହାଦେଈ ତାଙ୍କର ସମର୍ଥକ ବନ୍ଧୁ ଏବଂ ଭୂୟାଁ ଜୁଆଙ୍ଗମାନଙ୍କ ସହିତ ମିଶି ଏକ ପ୍ରଜା ବିଦ୍ରୋହର ସୂତ୍ରପାତ କଲେ ।

ଭୂୟାଁମାନେ ସେମାନଙ୍କର ଅଧିକାର ହରେଇଲେ । ପ୍ରଥା ଅନୁଯାୟୀ ସେମାନେ ନୂତନ ରାଜାଙ୍କୁ ଅଭିଷେକ କରାଇ ଗାଦିରେ ବସାଇବା କଥା । ମାତ୍ର ଧନୁର୍ଜୟ ଭଞ୍ଜ ରାଜଗାଦିରେ ବସିବା ସମୟରେ ସେମିତି କିଛି ଉତ୍ସବ ଅନୁଷ୍ଠିତ ହେଇ ନଥିଲା । ରତନା ନାୟକ ଏବଂ ଅନ୍ୟ ଭୂୟାଁ ସର୍ଦ୍ଦାରମାନେ ବ୍ରିଟିଶ ଗଭର୍ଣ୍ଣମେଣ୍ଟ ସେମାନଙ୍କ ଉପରେ ବଳପୂର୍ବକ ଜଣେ ବ୍ୟକ୍ତିଙ୍କୁ ରାଜା ରୂପେ ଲଦି ଦେବା ପ୍ରତିବାଦରେ ବିଦ୍ରୋହ ଘୋଷଣା କଲେ ।

ରତନା ନାୟକ ମହାରାଣୀ ବିଷ୍ଣୁପ୍ରିୟାଙ୍କ ସହିତ ହାତ ମିଳେଇଲେ । ତାଙ୍କ ପରାମର୍ଶରେ ବିଦ୍ରୋହକୁ ସୁ-ସଂଗଠିତ କରିବା ପାଇଁ ୧୮୬୮ ମସିହା ଜାନୁଆରୀ ୧୬ ତାରିଖରେ ବିଧବାରାଣୀ ବିଷ୍ଣୁପ୍ରିୟା ରାଜପ୍ରାସାଦ ତ୍ୟାଗ କରି ବସନ୍ତପୁର ଚାଲିଗଲେ । ସେଠି ନିଷ୍ପତ୍ତି ନିଆଗଲା ଯେ ସେମାନେ ଇଂରେଜ ସରକାର ବିରୁଦ୍ଧରେ ବିଦ୍ରୋହ କରିବେ ।

କିନ୍ତୁ କମିଶନର ଟି.ଇ.ରେଭେନ୍ସା ସାହେବ ଛୋଟନାଗପୁର କମିଶନର ଓ ରାଣୀଙ୍କର ଭାଇ ଷଢେଇକଳା ରାଜାଙ୍କୁ ରାଣୀ ଏବଂ ତାଙ୍କ ଅନୁଗାମୀମାନଙ୍କୁ ଏପରି ବିଦ୍ରୋହାତ୍ମକ କାର୍ଯ୍ୟରୁ ନିବୃତ୍ତ ରହିବାକୁ ପରାମର୍ଶ ଦେଲେ । ରାଣୀ ମାସିକ ୫ ଶହ ୫୦ଟଙ୍କା ଭତ୍ତା ପାଇ ରହିଲେ ଏବଂ ନିରବ ହୋଇଗଲେ ।

ସେ ରାଜବାଟୀକୁ ଫେରି ଆସିଲେ । ୧୮୬୮ ମସିହା ଫେବୃଆରୀ ୧୩ ତାରିଖରେ ଧନୁର୍ଜୟ ଭଞ୍ଜ ସିଂହାସନରେ ଅଭିଷିକ୍ତ ହେଲେ । ରାଣୀ ତାଙ୍କୁ ଆଶୀର୍ବାଦ କଲେ ।

କିନ୍ତୁ ରତନା ନାୟକ ବିଦ୍ରୋହ ଚାଲୁ ରଖିବାକୁ ଶପଥ ନେଇଥିଲେ । ଭୂୟାଁମାନଙ୍କ ସହାୟତାରେ ୧୮୬୮ ମସିହା ଅପ୍ରେଲ ୨୧ ତାରିଖରେ ସିଏ ଧନୁର୍ଜୟ ଭଞ୍ଜଙ୍କ ବିରୋଧରେ ବିଦ୍ରୋହ କଲେ ।

ନନ୍ଦ ନାୟକ, ନନ୍ଦ ପ୍ରଧାନ, ବାବୁ ନାୟକ, ଦାଶରଥି କୁଅଁର, ପଦୁ ନାୟକ ଏବଂ ଟୁନି ପ୍ରଧାନ ଇତ୍ୟାଦି

ନେତାମାନେ ରତନା ନାୟକଙ୍କୁ ସମର୍ଥନ କଲେ ଏବଂ ଆନ୍ଦୋଳନରେ ଭାଗ ନେଲେ । ୧୮୬୮ ଅପ୍ରେଲ ୨୮ରେ ରତନା ନାୟକ କୋଡ଼ିଏ ହଜାର ବିଦ୍ରୋହୀଙ୍କ ସହିତ କେଉଁଝର ବଜାର ଅଭିମୁଖେ ଅଗ୍ରସର ହେଲେ ଏବଂ ଏହାକୁ ଲୁଣ୍ଠନ କଲେ । ସେମାନେ କେନ୍ଦୁଝରଗଡ଼ରେ ପହଞ୍ଚିଲେ ଏବଂ ବେବର୍ତ୍ତା ଚନ୍ଦ୍ରଶେଖର ଧଳଙ୍କୁ ଧରି ନେଇଗଲେ । କାରଣ ବେବର୍ତ୍ତା ପ୍ରଥମେ ବୃନ୍ଦାବନ ଭଞ୍ଜଙ୍କୁ ଗାଦିରେ ଅଭିଷେକ କରାଇ ପରେ ସରକାରଙ୍କର ଆଦେଶରେ ନିଜର ମତ ବଦଳେଇ ଧନୁର୍ଜୟ ଭଞ୍ଜଙ୍କୁ ସମର୍ଥନ କରୁଥିଲେ ।

ହତ୍ୟା, ଧ୍ୱଂସ ହେଇଗଲା ବିଦ୍ରୋହୀମାନଙ୍କର କାମ । ସେମାନେ ପ୍ରାୟ ଶହେ ଜଣ ରାଜକର୍ମଚାରୀଙ୍କୁ ନେଇ ଜଙ୍ଗଲକୁ ପଳାଇ ଗଲେ । ପୋଲିସ ହାତରୁ ବନ୍ଧୁକ ଓ ଘୋଡ଼ା ଛଡ଼ାଇ ନେଲେ । ସେମାନେ ଧନୁତୀର, ଖଣ୍ଡା, ତରବାରି ଆଦି ଧରି ଗଡ଼ ସହରରେ ପ୍ରବେଶ କରି ରାଜାଙ୍କୁ ଅବରୋଧ କରି ରଖିଲେ । ଘୋଷଣା କଲେ ଯେ ସେମାନେ ଧନୁର୍ଜୟ ଭଞ୍ଜଙ୍କୁ ଅସ୍ୱୀକାର କରୁଛନ୍ତି ।

ବିଦ୍ରୋହ ଭୟଙ୍କର ଆକାର ଧାରଣ କଲା । ରାଣୀ ବିଷ୍ଣୁପ୍ରିୟା ପୁଣି ସେମାନଙ୍କୁ ସମର୍ଥନ କରିବାକୁ ଲାଗିଲେ ।

ରାଜା ଧନୁର୍ଜୟ ଭଞ୍ଜ ଇଂରେଜ ସରକାରଙ୍କର ଶରଣ ପଶିଲେ । ପରିସ୍ଥିତିର ଗମ୍ଭୀରତା ଉପଲବ୍ଧି କରି କଟକ ଏବଂ ଛୋଟନାଗପୁରର କମିଶନରମାନେ ଏ ବିଦ୍ରୋହ ଦମନ କରିବାକୁ ଆଗେଇ ଆସିଲେ ।

କଟକର କମିଶନର ଟି.ଇ.ରେଭେନ୍‌ସା ସାହେବ, ରାଣୀ ବିଷ୍ଣୁପ୍ରିୟା, ମୟୂରଭଞ୍ଜର ରାଜା ଇତ୍ୟାଦିଙ୍କ ବିଦ୍ରୋହକୁ ସମର୍ଥନ ନ କରିବାକୁ ଆଦେଶ ଦେଲେ । ସିଂଭୂମ୍‌ର ଡେପୁଟି କମିଶନର ଡ.ଡବ୍ଲୁ ହୟେସ ୧୮୬୮ ଖ୍ରୀ. ମେ ମାସରେ କେନ୍ଦୁଝରକୁ ଆସିଲେ ।

ସେ ପାର୍ବତ୍ୟାଞ୍ଚଳକୁ ଆକ୍ରମଣ କରି ଦେୱାନ ଏବଂ ଅନ୍ୟମାନଙ୍କୁ ମୁକ୍ତ କଲେ । ଡ.ହୟେସ ତା'ପରେ ତାରପୁର ଗାଁ ଯାଇ ପୂରା ଗାଁରେ ଅଗ୍ନି ସଂଯୋଗ କରିଦେଲେ ।

ବିଦ୍ରୋହୀମାନେ କଟକ ଏବଂ ଚାଇଁବସା ମଧ୍ୟରେ ସବୁ ପ୍ରକାର ଯୋଗାଯୋଗ ବିଚ୍ଛିନ୍ନ କଲେ । ଯେତେବେଳେ ବିଦ୍ରୋହ ଠିକ୍ ଶିଖରରେ ଥିଲା, ମୟୂରଭଂଜର ରାଜା କୃଷ୍ଣଚନ୍ଦ୍ର ଭଞ୍ଜ ଇଂରେଜମାନଙ୍କର ପ୍ରରୋଚନାର ବଶବର୍ତ୍ତୀ ହୋଇ ରାଣୀ ବିଷ୍ଣୁପ୍ରିୟା ଏବଂ ବୃନ୍ଦାବନ ଭଞ୍ଜଙ୍କ ପାଖରୁ ନିଜର ସମର୍ଥନ ପ୍ରତ୍ୟାହାର କଲେ ।

ଇଂରେଜମାନେ ବିଦ୍ରୋହୀମାନଙ୍କୁ ଆକ୍ରମଣ କଲେ– ସେମାନଙ୍କର ଗାଁ ପୋଡ଼ି ଦିଆଗଲା । ଜଣଙ୍କ ପରେ ଜଣେ ବିଦ୍ରୋହୀଙ୍କୁ ଧରାଗଲା । ପାଲଲହଡାର ରାଜା, ରତନା ନାୟକଙ୍କୁ ଧରିବା ପାଇଁ ସବୁ ଚେଷ୍ଟା କଲେ ଏବଂ ସଫଳ ହେଲେ । ୧୮୬୮ ଅଗଷ୍ଟ ବେଳକୁ ବିଦ୍ରୋହର ସବୁ ନେତା ଧରା ହେଇସାରିଥିଲେ । ରାଣୀ ବିଷ୍ଣୁପ୍ରିୟାଙ୍କୁ କଟକ ପଠାଗଲା ।

୧୮୩ ଜଣ ବିଦ୍ରୋହୀଙ୍କ ବିଚାର ଆରମ୍ଭ ହେଲା । ରତନା ନାୟକ ଏବଂ ଆଉ ଛଅଜଣଙ୍କୁ ମୃତ୍ୟୁଦଣ୍ଡ ଦିଆଗଲା ।

ବିଦ୍ରୋହର ପୂର୍ଣ୍ଣଚ୍ଛେଦ ପଡ଼ିଲା । ନିଜ ମାଟି ମା' ପାଇଁ ଲଢୁଥିବା ବୀର ରତନାଙ୍କର ସ୍ୱର ନିରବି ଗଲା ସିନା ଇତିହାସ କିନ୍ତୁ ତାଙ୍କୁ ଯୁଗ ଯୁଗ ପାଇଁ ମନେ ରଖିବ ।

ଯୋଡ଼ା ମହିଳା ମହାବିଦ୍ୟାଳୟ
ବନେଇକଳା, ଯୋଡ଼ା, କେନ୍ଦୁଝର–୭୫୮୦୩୮

**ପାଦଟୀକା**

୧– ଶ୍ରୀ ଭଞ୍ଜଭୂମି କେନ୍ଦୁଝରୀ
ଲେଖକ– ବିପିନ ବିହାରୀ ଦାସ
୨– ଓଡ଼ିଶା ଇତିହାସ
ଲେଖକ– ଡକ୍ଟର ଯଜ୍ଞ କୁମାର ସାହୁ
୩– History of Orissa, Writer- Harihar panda
୪– Comprehensive History of modern Orissa,Writer- Nihar Ranjan Patnaik

# ଗଜ ଉଦ୍ଧାରଣ ଓ ପଦ୍ମବେଶ

**କୃଷ୍ଣପ୍ରିୟା ଦାସ**

ବର୍ଷ ସହସ୍ରର ଲଢେଇ... । ଲଢେଇ ତ, ଜଳଚର କୁମ୍ଭୀର ଆଉ ସ୍ଥଳଚର ସ୍ନାନରତା ହାତୀ । ଏଥିରେ ବିଶ୍ୱ ସମୁଦାୟର ହସ୍ତୀଦନ୍ତା ଏକତ୍ର ହୋଇ ମାଡ଼ି ଆସିଥିଲେ ଜାତିଆଣ ଭାଇକୁ ବିପଦରୁ ଉଦ୍ଧାର କରିବା ପାଇଁ ହେଲେ ସେମାନଙ୍କର ସମସ୍ତ ଚେଷ୍ଟା ବିଫଳ ହୋଇଗଲା । କୁମ୍ଭୀର କବଳରୁ ଛଡ଼ାଇ ନ ପାରି ଆଗନ୍ତୁକ ହାତୀପଲ ନୈରାଶ୍ୟର ମନ ନେଇ ବାହୁଡ଼ି ଯାଇଥିଲେ ।

ଚିନ୍ତାମଗ୍ନ ଗଜ ନିରୁପାୟ ହୋଇ ମନେ ପକାଉଥିଲା ଅତୀତର ଉନ୍ମାଦ ଭୁଲକୁ । ସେ ଯଦି କାମ ବାସନା ଚରିତାର୍ଥ କରିବା ପାଇଁ ହାତୁଣୀମାନଙ୍କ ସହିତ ଜଳକ୍ରୀଡ଼ାରେ ଯୋଗ ଦେଇନଥାନ୍ତା ତା'ହେଲେ ଏପରି ଅନର୍ଥ ହୋଇନଥାନ୍ତା । ଛାର କୁମ୍ଭୀରଟାଏ, ତା'ର ବଳ କେତେ ? ସ୍ଥଳଭାଗରେ ଥିଲେ ତ ମୁଁ କ୍ଷଣିକରେ ଦଳି ଦେଇଥାନ୍ତି । ଆଜି କୁମ୍ଭୀର ଘର ଜଳ ଭିତରେ ଫଶିଯାଇ ଦୁଃଖ ଭୋଗୁଛି ।



କ'ଣ କରିବ ? କିଏ ରକ୍ଷା କରିବ ? ଯେଉଁମାନେ ଆପଣାର ଥିଲେ, ବିପଦ ସମୟରେ ପର କରି ମୁହଁ ଫେରାଇ ଚାଲିଗଲେଣି । ନିରୁପାୟ ଗଜ, ନିଜର ଅବଶିଷ୍ଟ ବଳ ପ୍ରୟୋଗ କରୁଥିଲେ ସୁଧା କୁମ୍ଭୀର କବଳରୁ ମୁକ୍ତି ମିଳୁନି । ଅବଶ ଦେହରେ ବ୍ୟାକୁଳ ଗର୍ଜନ...କିଏ ଶୁଣୁଛି... ଶୁଣିଲେ ବି ଏ ମହାସମରରେ ଲମ୍ଫ ମାରିବାକୁ ବଳ ଅଛି କାହାର । ଆଉ ନୁହେଁ... ସୁନିଶ୍ଚିତ ମୃତ୍ୟୁକୁ ମନେ ପକାଇ, ଥୋର ଟେକି ପଲାସୀ ଉଠିଥିଲା ଗଜେନ୍ଦ୍ର... ।

ଏପଟେ ଗଜର ଅବସ୍ଥା ସଙ୍କଟାପନ୍ନ । କୁମ୍ଭୀର ଦନ୍ତାଘାତରେ ରକ୍ତାକ୍ତ ହେଲାଣି ଜଳଭଣ୍ଡାର । ପ୍ରଥମେ, ହାତୁଣୀମାନେ ଆସି, ସମବେଦନା ଜଣାଇ କିଛି କିଛି ଫଳ, କନ୍ଦ ଯୋଗାଉ ଥିଲେ...ଏବେ ସେତକ ମଧ୍ୟ ବନ୍ଦ । ଦଳପତି ବିହୁନେ ସେମାନେ ହୁଏତ ଜଙ୍ଗଲ ଛାଡ଼ି ଅନ୍ୟତ୍ର ଚାଲିଯିବେଣି ।

ଠିକ୍ ଏତିକିବେଳେ ନାରଦ ମହର୍ଷି ମହାଶୂନ୍ୟରେ ବିଚରଣ କରୁ କରୁ ଶୁଣିପାରି ଢିଙ୍କି ବାହାନରେ ଓହ୍ଲାଇ

ଆସିଲେ ତଳକୁ । ମୁମୂର୍ଷୁ ହାତୀର ଅବସ୍ଥା ଦେଖି ଦୟା ଆସିଲା । ସେ ଆଶ୍ୱାସନା କଣ୍ଠରେ କହିଲେ... ଆରେ ତୁ କେଡ଼େ ମୂର୍ଖ କିରେ... ଚିନ୍ତା ଚିତାରେ ଅକାରଣରେ ଆୟୁ ସାରୁଛୁ...! ଥରେ ଯଦି ଚନ୍ତାକରି ଚିନ୍ତାମଣି ନାରାୟଣଙ୍କୁ ଡ଼ାକନ୍ତୁ, ତୋର ଉଦ୍ଧାର ସରନ୍ତାଣି । ମନରୁ ବଡ଼ପଣ ପୋଛିଦେଇ ଡ଼ାକପକା ଜଗତର ନାଥ ଜଗନ୍ନାଥଙ୍କୁ । ଡ଼ାକ, ଡ଼ାକ ବିଳମ୍ବରେ ପ୍ରାଣପାତ ନ ହେଉ ।

ସତ୍‌ସଙ୍ଗ ପ୍ରଭାବ-କ୍ଷଣିକରେ ଭାଗ୍ୟ ବଦିଳିଯାଏ । ନାରଦଙ୍କ ଉଦ୍‌ଘୋଷଣରେ ଅଚେତ ହସ୍ତୀ ସଚେତ ହୋଇ ଥୋର ପାହାଡ଼ରେ ପଦ୍ମଫୁଲଟି ଉଠାଇ ଡ଼ାକ ପକାଇଲା...ରକ୍ଷା କର ହେ... ମହାବାହୁ... ହେ ନାରାୟଣ ରକ୍ଷମାଂ ଶରଣାଗତ... ।

ଭକ୍ତର କାରୁଣ୍ୟ ଲହରୀରେ ଆଉ କି ରହନ୍ତା ବିଳମ୍ବ । ଅବିଳମ୍ବେ ପ୍ରସରୀ ଆସିଲା ତନ୍ମୟ ଉତ୍ତର... ରଖିଲି...ରଖିଲି... । ଚହଲି ଯାଇଥିଲା ଚଉଦ ବ୍ରହ୍ମାଣ୍ଡ... । ବୈକୁଣ୍ଠରେ ଲକ୍ଷ୍ମୀଙ୍କ ସହ ପଶାଖେଳ ଚାଲିଥିଲା, ଲକ୍ଷ୍ମୀ କହିଲେ କ'ଣ ରଖିଲ ପ୍ରଭୁ...! ମୋର ତ ପଞ୍ଚୁଆତି ଦାନ ପଡ଼ିଛି... ତୁମେ ପୁଣି ରଖିଲ କ'ଣ, କାହାକୁ କେଉଁଠି...??

ଏତେ ପ୍ରଶ୍ନକୁ ଉତ୍ତର ଦେବାକୁ ବେଳ ନଥିଲା । ସ୍ମରିବା ମାତ୍ରେ ପହଞ୍ଚି ଯାଇଥିଲେ ବିଷ୍ଣୁରଥ ଗରୁଡ଼ ? ନାରାୟଣଙ୍କ ସହିତ ଲକ୍ଷ୍ମୀ ମଧ ଘଟଣା ବୁଝିବା ପାଇଁ ଗରୁଡ଼ ପୃଷ୍ଠରେ ବିରାଜମାନ ହୋଇ ନିମିଷକେ ପହଞ୍ଚି ଯାଇଥିଲେ । ଆଜ୍ଞା ପାଇ ସୁଦର୍ଶନ କର୍ତ୍ତିତ କରିଦେଲା, କୁମ୍ଭୀର ମସ୍ତକ । ନିସ୍ତାର ପ୍ରାପ୍ତି ଗଜର ଅର୍ଦ୍ଧ ନିମିଳିତ ଆଖିରେ ସଞ୍ଚରୀ ଯାଇଥିଲା ପୀତ, ମର୍କତର ଆସ୍ତରଣ । ଥୋର ହସ୍ତରୁ ଖସି ଯାଉଥିବା ପଦ୍ମପୁଷ୍ପଟି ବିରାଜି ଉଠିଲା ମହାଲକ୍ଷ୍ମୀଙ୍କ କର କମଳରେ । ଅବିଳମ୍ବେ ଦୁଇଟି ଦିବ୍ୟ ସୁନ୍ଦର ପୁରୁଷଙ୍କ ଆବିର୍ଭାବ ଓ ସ୍ତବପାଠ । ପୁଷ୍ପ ବୃଷ୍ଟି ହେଉଥିଲା ସ୍ୱର୍ଗରୁ... ।

ପ୍ରସରୀ ଆସିଥିଲା ଆପ୍ତବାଣୀ...ହେ ମୋର ପ୍ରିୟ ସେବକ ବୈକୁଣ୍ଠ ପ୍ରହରୀ, ଅତିଶୀଳ, ସୁଶୀଳ ! ତୁମେ ହୁଏ ତ ଭୁଲି ଯାଇଥିବ, ଅତୀରର କାହାଣୀ...ମନେ ପକାଅ, ବ୍ରାହ୍ମଣ କୁଳରେ ଜନ୍ମ ହୋଇ ବଂଶ ପରମ୍ପରା ରକ୍ଷା କରି, ଅନେକ ହୋମ, ଯଜ୍ଞରେ ଯଜମାନମାନଙ୍କୁ ସନ୍ତୁଷ୍ଟ କରାଇ ପ୍ରାପ୍ତି ଧନକୁ ଦୁଇଭାଇ ବିଚାର କଲ ଏ ଧନ କାହାକୁ ଦେବା । ସାନଭାଇ କହିଲା ଏ ଧନ ପିତାଙ୍କୁ ଦେବା । କାରଣ ତାଙ୍କର ଔରସରୁ ଆମର ଉତ୍ପତ୍ତି । ସେ ଆମର କର୍ମକାଣ୍ଡ ଶିକ୍ଷକ । ସ୍ୱର୍ଗାଦପି ଗରିଷ୍ଟ,ପରମ ତପଃ ।



କିଞ୍ଚିତ ପିତୃଋଣରୁ ମୁକ୍ତ ହେବାକୁ ହେଲେ, ଏ ଧନ ତାଙ୍କର ହେଉ । ବଡ଼ଭାଇ କହିଲେ... ନା, ସଂସାର ଏକ ମୋହ ମାୟାର ବନ୍ଧନ । କିଏ କାହା ପିତା, କିଏବା କୁମର । ସବୁକିଛି ଅଳିକ । ଘଟ ଛୁଟିଲେ କେହି କାହାର ନୁହେଁ । ତେଣୁ ଏ ସମସ୍ତ କଷ୍ଟ ଉପାର୍ଜିତ ଧନକୁ ବିଫଳ ହେବାକୁ ନ ଦେଇ, ଚାଲ ସିଦ୍ଧ, ଯୋଗୀ, ଗରିବ ଓ ଧର୍ମାନୁଷ୍ଠାନମାନଙ୍କରେ ବାଣ୍ଟିଦେବା । ଯେଉଁଥିରେ ଦେଶ, ଦଶର ମଙ୍ଗଳ ହେବ । ଏହିପରି ହଁ, ନାହିଁର ଅଛିଣ୍ଡା ଯୁକ୍ତିତର୍କ ନିଷ୍ଠୁର ଅଭିଶାପରେ ପରିଣତ ହେଲା ଜଣେ ଗଜ । ଜଣେ କୁମ୍ଭୀର ହୋଇ, ଜଳ, ସ୍ଥଳ ଦୁଇଭାଗରେ

ଜନ୍ମଗ୍ରହଣ କରିଥିଲ । ବର୍ତ୍ତମାନ ତୁମେ ଦୁହେଁ ମୁକ୍ତ । ଆଦ୍ୟରେ ଯେପରି ବୈକୁଣ୍ଠର ଦ୍ୱାରପାଳ ଥିଲ, ଏବେ ଯାଅ ଖାଲି ପଡ଼ିଥିବା ଉତ୍ତର, ଦକ୍ଷିଣ ଦ୍ୱାରକୁ ସମ୍ଭାଳ ।

ଏହା ଥିଲା ସତ୍ୟଯୁଗର କିମ୍ବଦନ୍ତୀ ! ସତ୍ୟର ଅନ୍ତିମ ଚରଣ ସୁବର୍ଣ୍ଣ ଯୁଗ କଳିରେ ଭକ୍ତ ଭାବନାକୁ ଚରିତାର୍ଥ କରାଇ, ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଗଜ ଉଦ୍ଧାରଣ ବେଶ ଜାରି ରହିଛି । ପ୍ରତିବର୍ଷ ମାଘ ପୂର୍ଣ୍ଣିମା ତିଥିରେ ବଡ଼ଦେଉଳ ରତ୍ନ ସିଂହାସନ ଗମ୍ଭିରା ମଣ୍ଡନ କରି ତିନି ଠାକୁରଙ୍କ ଅପୂର୍ବ ଗଜ ଉଦ୍ଧାରଣ ବେଶ, ଭକ୍ତ ସଭକ୍ତିରେ ଦର୍ଶନ କରି, ଚତୁର୍ବର୍ଗ ଫଳର ଅଧିକାରୀ ହୋଇପାରୁଛି ।

ଏହି ମର୍ମକୁ ମନ୍ଥନ କରି ଭକ୍ତ ସାଲବେଗଙ୍କ କଣ୍ଠରୁ ଉତୁରି ଆସିଥିବା ଜଣାଣ–

''ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ
ଗଜରାଜ ଚିନ୍ତା କଲା ଥାଇ ଘୋର ଜଳେଣ
ଚକ୍ରପେଷି ନକ୍ର ନାଶି ଉଦ୍ଧାରିଲ ଆପଣ...''

ଏତଦ୍‌ବ୍ୟତୀତ ମାଘମାସରେ ଆହୁରି ଅନେକ ପର୍ବପର୍ବାଣି ମାହାତ୍ମ୍ୟ ରହିଛି । ସେଥିମଧ୍ୟରୁ 'ପଦ୍ମବେଶ' ଅନ୍ୟତମ । କଥାରେ ଅଛି, ଭକ୍ତ ହୃଦୟରେ ଅଟଳ ବିଶ୍ୱାସ ରଖି ଯଦି ପାଦେ ଆଗକୁ ବଢେ, ଭଗବାନ ତା' ଆଡ଼କୁ ଚାରିପାଦ ଆଗେଇ ଯାଆନ୍ତି ।

ସେମିତି ଘଟଣାଟିଏ...ସୁଦୂର ମହାରାଷ୍ଟ୍ରରୁ ଚାଲି ଚାଲି ଆସୁଥିବା ଭକ୍ତ ମନୋହର ଦାସ, ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଦର୍ଶନାଭିଳାଷୀ ମନକୁ ନିୟନ୍ତ୍ରଣ କରି ଖରା, ବର୍ଷା, ଶୀତକୁ ଧ୍ୟାନ ନ ଦେଇ ଆଗକୁ ବଢି ଯାଉ ଯାଉ ଏମିତି କେତେ ରାତି, କେତେ ସକାଳ ପାହିଛି । ମାତ୍ର ସେଦିନର ସକାଳ ଥିଲା ଭିନ୍ନ । ସାଙ୍ଗରେ ଆଣିଥିବା ଶୁଖିଲା ଖାଦ୍ୟ ଶେଷ ହୋଇଯାଇଛି । ଶ୍ରୀକ୍ଷେତ୍ର ଆହୁରି ଚାରିଦିନର ବାଟ । କ'ଣ ହେବ ? ଭାବନା ଭିତରେ ଏଣେତେଣେ ଚାହିଁଲା ବେଳକୁ ଆଗରେ ଗୋଟାଏ ପୁଷ୍କରିଣୀ ଦୃଶ୍ୟ ହେଲା । ପାଖକୁ ଯାଇ ଦେଖିଲେ, ନିର୍ମଳ ଜଳରାଶିରେ ପଦ୍ମଫୁଲର ବିପଣୀ, ସତେ ଯେମିତି ସୂର୍ଯ୍ୟଦେବଙ୍କୁ ସମର୍ପିତ ହେବା ପାଇଁ ଅପେକ୍ଷାରତ । ଭକ୍ତ ମନୋହରଙ୍କ ମାନସପଟ୍ଟରେ ବିରାଜି ଉଠିଲେ ଶ୍ରୀଜଗନ୍ନାଥ ! ଇଚ୍ଛାମାନେ ମୁକୁଳି ଯାଇଥିଲେ, ଶ୍ରୀଜୀଉଙ୍କ ପଦ୍ମବେଶକୁ । କାଳବିଳମ୍ବ ନ କରି, ସ୍ନାନ ତର୍ପଣ ବଢାଇ ପେଟେ ଜଳାହାର କରି, ଗଣ୍ଠିଲିଏ ପଦ୍ମଫୁଲ ଧରି, ବାହାରିଲେ ଶ୍ରୀଧାମ ।

ମନ, ଧ୍ୟାନ ସବୁତ ଶ୍ରୀଜଗନ୍ନାଥଙ୍କ ବେଶରେ ଆଉ ଭୋକ ଶୋଷ ପାଖ ମାଡ଼ନ୍ତା କିପରି ! କଳ୍ପନା ଭିତରେ 'ପଦ୍ମ' ଚଢା ଚାଲିଛି, ଦୀର୍ଘ ପଦଯାତ୍ରାର କ୍ଲାନ୍ତ ବି ହଜିଯାଇଛି ଦେହରୁ । ସକାଳ ସରି ରାତି ହେଲାଣି ଗହନ । ହଠାତ୍ ସେ' ଅଟକି ପଡ଼ିଲେ, ଶ୍ରୀମନ୍ଦିର ସିଂହ ଦୁଆରେ ।

ସେତେବେଳକୁ ଜଗନ୍ନାଥଙ୍କ ବଡ଼ସିଂହାର ବେଶ ସାରି, ସେବକମାନେ ଦେଉଳ ଶୋଧ କରି ଫେରିବାକୁ ବସିଲେଣି । କେଇଜଣ ମୁଦୁଲି, ଦିହୁଡ଼ିଆ ଅପେକ୍ଷା କରିଛନ୍ତି ଗୁମୁଟରେ ମୁଦ ଦେବାକୁ । ମନୋହର ଦାସ ଏକ ପ୍ରକାର ଧଇଁସଇଁ ହୋଇ ଆସି କହିଲେ...ସେବକ ସାଆନ୍ତେ, ମୋ ଗୁହାରି ଟିକେ ଘେନା କରି, ଏ ଫୁଲ ଗଣ୍ଠିଲିଟି ଜଗନ୍ନାଥ ମହାପ୍ରଭୁ ଚଢାଇ ଦିଅନ୍ତୁ ନା... ।

ସେତେବେଳକୁ ପହଞ୍ଚି ଯାଇଥିଲେ ବଡ଼ପଣ୍ଡା । ଆରେ ପହଡ଼ ସରିଲାଣି, ଓଡ଼ କୋଉଠିକାର, ବୁଝିପାରୁନୁ ଯେ, ଏତେ ରାତିରେ ଫୁଲ ଲାଗି କରିବାକୁ କହୁଛୁ ? ଆଉ ଜଣେ ପାଳି ଧରି କହିଲେ, ସତେ ଯେମିତି ଚାରି ଅବକାଶକୁ ଇଏ ପାଞ୍ଚ ଅବକାଶ କରି ପକାଇବ? ଆରେ... ଉଠୁ ମ ! ଅନାର୍ଯ୍ୟ କାହାଁକା, କୋଉଠୁ ଆସଛି କେଜାଣି ?

ଦାସେ ଛାଡ଼ିବାର ପାତ୍ର ନ ଥିଲେ...ଗୋଡ଼ ତଳେ ପଡ଼ି ନେହୁରା ହେଉ ହେଉ, ଜଣେ ଜଣକୁ କହିଲେ ଆରେ କି ଫୁଲ ଆଣିଛି ଦେଖିଲୁ । ସୁନା ନା ରୁପା ! ଗଣ୍ଠିଲି ଖୋଲିଲା ବେଳକୁ, ମଉଳା, ଶୁଖିଲା ଗଦାଏ ପଦ୍ମ ରହିଛି ମଇଳା ଗାମୁଛା ଭିତରେ । ସମସ୍ତେ ଏକାବେଳେକେ ହସି ଉଠିଲେ । ମୁଦି ରଥ ମୁଦ ପକାଇ ବନ୍ଦ କରିଦେଲେ କଂସାକବାଟ ।

ବେଖାତିର ଭାବେ ସମସ୍ତେ ଚାଲିଗଲେଣି । ପୂର୍ବପରି ଫୁଲ ଗଣ୍ଠିଲିକୁ ଗଣ୍ଠିଧନ କରି, କାନ୍ଦି କାନ୍ଦି ଜଗନ୍ନାଥଙ୍କୁ ଡ଼ାକିବା ଛଡ଼ା ଅନ୍ୟ ଉପାୟ ନଥିଲା । ହଠାତ୍ ପ୍ରକୃତିସ୍ଥ ହୋଇଗଲେ କାହା ଡ଼ାକରେ । ଆରେ ମନୋହର...! କାନ୍ଦୁଛ...! ଫୁଲ ଲାଗି କରିବ ପରା ଆସ... ଶୀଘ୍ର ଚାଲ... । ଅଳ୍ପ ସମୟ ପରେ ରାତି ପାହିଯିବ । ଏତେଗୁଡ଼ାଏ ପଦ୍ମ ଲାଗି ହେବ ପରା, ଡ଼େରି କାହିଁକି...?

ଅଜାଣତରେ ପିଛା ଧରି ରନ୍ ସିଂହାସନ ତଳେ ପହଞ୍ଚି ଯାଇ, ଜୀଉମାନଙ୍କୁ ଚାହିଁଲା ବେଳକୁ ତିନିଠାକୁର ପଦ୍ମବେଶରେ ଝଲକୁଛନ୍ତି । ଆଉ, ହସ ହସ ମୁହଁରେ ସେଇ କଳାଲୋକଟି କହୁଛି, କ'ଣ, ଏଥର ମନ ଶାନ୍ତି ହେଲା ତ ? ଏଥର ଚାଲ, ଚାରିଦିନ ହେବ ଉପାସ ରହିଛ, କିଛି ଖାଇନେବ । ଖାଲି ଗାମୁଛା ଖଣ୍ଡିକ କାନ୍ଧରେ ପକାଇ ଗମ୍ଭିରାରେ ପଟା ପଟା ଗଡ଼ି ଯାଉଥିଲେ ମନୋହର । ଲୁହର ଗଙ୍ଗା, ଯମୁନା ଧାରାରେ ଧୋଇ ଯାଉଥିଲା ରନ୍ ଗମ୍ଭିରା ।

ଆନନ୍ଦ ବଜାରକୁ ନେଇ, କଳା ଲୋକଟା ଏତେ ଖୁଆଇ ଦେଇଥିଲା ଯେ, ଉପାସିଆ ଦେହଟା ଉଠିବାକୁ ସମର୍ଥ ନ ହୋଇ ଶୋଇଯାଇଥିଲା ସେଇଠି ।

ପ୍ରଭାତର କୋଳାହଳରେ ଦେଖନ୍ତି ତ, ସେବକମାନେ, ତାଙ୍କୁ ଆଜ୍ଞା ଆପଣ କହି, ହାତ ଧରି ନେଇଯାଉଛନ୍ତି, ରନ୍‌ଗମ୍ଭିରା, ରନ୍ ସିଂହାସନ ତଳକୁ । ଗଜପତିଙ୍କ କୋଳାଗ୍ରତ, ଶାଢ଼ିବନ୍ଧା, ଶ୍ରୀଜୀଉଙ୍କ ଲାଗି ତୁଳସୀ ଫୁଲର ମାଳ ଦେଇ, ତାଙ୍କୁ ଫୁଲ ସେବାରେ ନିୟୋଜିତ କରାଇ, ରହିବା, ଖାଇବା, ପିନ୍ଧିବା, ସମସ୍ତ ଖର୍ଚ୍ଚ ରାଜା ଖଞ୍ଜି ଦେଇ କହିଥିଲେ, ମନୋହର, ଯାହାସବୁ ଘଟିଲା, ଭୁଲିଯାଇ, ଏଥର ସେବାକୁ ତତ୍ପର ହୋଇଯାଅ ।

କ'ଣ, କେମିତି ଜାଣିବା ଆଗରୁ, ଖଟଣୀ ମାଳିଜଣକ ପ୍ରଶ୍ନର ଉତ୍ତର ଦେଇ ଚାଲିଥିଲେ । ଶ୍ରୀଜଗନ୍ନାଥଙ୍କ କୃପା ସ୍ୱପ୍ନାଦେଶରେ ଗଜପତି, ସମସ୍ତ ବିଷୟ ଅବଗତ ହୋଇଅଛନ୍ତି । ହଁ, ପ୍ରଭୁଙ୍କ ଆଦେଶ ଅନୁସାରେ ପ୍ରତିବର୍ଷ, ମାଘ ମାସର ଏହି ଦିନରେ, ତାଙ୍କର ପଦ୍ମବେଶ ରଚିତ ହେଉଥିବ । ସମସ୍ତେ ଅନୁଭବ କରିବେ ଭକ୍ତର ହୃଦୟ ଓ ଜଗନ୍ନାଥଙ୍କ ଉଦାରତାର ଉଦାହରଣ କେତେ ମହାନ୍, ଯାହା ଭକ୍ତ କଣ୍ଠରୁ ଝରି ଆସିଛି....

'ଭକତ ତୋ ମାତାପିତା, ଭକତ ତୋ ବନ୍ଧୁ
ଭକତ ନିମନ୍ତେ ତୋର ନାମ କୃପାସିନ୍ଧୁ
ଏକା ତୋ ଭକତ ଜୀବନ...' !

୫୮, ଗଜପତି ନଗର
ମୈଥିଳୀ ନିବାସ, ପୁରୀ–୨



# ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଅଟଇ ନିତ୍ୟ ବୃନ୍ଦାବନ

**ଡକ୍ଟର କିଶୋର ମହାନ୍ତି**

ଶ୍ରୀକ୍ଷେତ୍ର ପୁରୀର ତରଙ୍ଗାୟିତ ସୁଦୃଶ୍ୟ ବେଳାଭୂମି ଏବଂ ଶ୍ରୀଜଗନ୍ନାଥଙ୍କୁ ଛାଡ଼ିଦେଇ ପୁରୀର ସ୍ଥିତି ଓ ଅବସ୍ଥିତିର ପରିକଳ୍ପନା କରାଯାଇ ପାରେନା । ସାରା ବିଶ୍ୱର ହିନ୍ଦୁଧର୍ମ ତଥା ସନାତନ ଧର୍ମର ପ୍ରତିଭୂ ହେଉଛନ୍ତି ଶ୍ରୀଜଗନ୍ନାଥ ।



ପ୍ରଭୁଙ୍କର ସ୍ୱତନ୍ତ୍ର ବିଧିବ୍ୟବସ୍ଥା ଭିନ୍ନ ଭିନ୍ନ । ଚାଉଳ ଯାହା ରୋଷଘରକୁ ଯାଏ ତାକୁ ଅମୁଣିଆ ଅନ୍ନ କହନ୍ତି । ଯେତେବେଳେ ଅନ୍ନ ଏହା ଭୈରବୀ ଚକ୍ରରେ ରୁହେ ତାକୁ ଭୋଗ ବୋଲି କହନ୍ତି । ଯେତେବେଳେ ତିନି ଠାକୁରଙ୍କ ପାଖରେ ଲାଗି ହୁଏ ସେତେବେଳେ ତାହା ନୈବେଦ୍ୟ । ଯେତେବେଳେ ନୈବେଦ୍ୟ ବିମଳା ଠାକୁରାଣୀଙ୍କ ପାଖରେ ଲାଗିହୁଏ ସେତେବେଳେ ଏହା ମହାପ୍ରସାଦ । ଏହି ମହାପ୍ରସାଦ ଯେତେବେଳେ ପଞ୍ଚ ପରମେଶ୍ୱରଙ୍କ ପାଖରେ ରୁହେ ସେତେବେଳେ ଏହା କୈବଲ୍ୟ ହେଇଯାଏ । କୈବଲ୍ୟ ଯେତେବେଳେ ଭକ୍ତମାନେ ଗ୍ରହଣ କରନ୍ତି, ତାହା ଅବଡ଼ା ବୋଲି କୁହାଯାଏ । ଅବଡ଼ାର ଯେକୌଣସି ଛଡ଼ା ଯାଇଥିବା ଅଂଶକୁ ଶୁଖାଇ ରଖିଲେ ତାହାକୁ ନିର୍ମାଲ୍ୟ ବୋଲି କୁହାଯାଏ । ଏହା ହିଁ ଜଗନ୍ନାଥ ସଂସ୍କୃତିର ବିଚିତ୍ରତା । ଯଥାର୍ଥରେ ପୁରୀ ହେଉଛି ଆଧାତ୍ମିକ ଓ ସାଂସ୍କୃତିକ ପୀଠ । ଯେତେ ଆଲୋଚନା କଲେ ବି ଗୋଟିଏ ନିର୍ଦ୍ଦିଷ୍ଟ ନିଷ୍କର୍ଷରେ ପହଞ୍ଚିବା ବଡ଼ କଷ୍ଟକର ।

ପୁରୀ ଏକ ସାଧାରଣ ସ୍ଥଳ ନୁହେଁ – ଏହା ସତରେ ବିଶ୍ୱର ପ୍ରସିଦ୍ଧ ଧର୍ମକ୍ଷେତ୍ର । ମହା ତପସ୍ୱୀ ଅଙ୍ଗିରା, ଭୃଗୁ, ମାର୍କଣ୍ଡ ଓ ପଣ୍ଡୁ ନିଜ ନିଜ ଆଶ୍ରମ ପ୍ରତିଷ୍ଠା କରି ଏଠାରେ ଯୋଗମଗ୍ନ ହୋଇ ସେ ସ୍ଥାନକୁ ପବିତ୍ର କରିଛନ୍ତି । ମହୋଦଧିକୁ ଲାଗିକରି ପଞ୍ଚ ମହାତୀର୍ଥ ପୁଷ୍କରିଣୀ ଇନ୍ଦ୍ରଦ୍ୟୁମ୍ନ, ମାର୍କଣ୍ଡ, ଶ୍ୱେତଗଙ୍ଗା, ରୋହିଣୀ କୁଣ୍ଡ ଏଠାରେ ବିଦ୍ୟମାନ । ଏହା ଆମର ଧର୍ମୀୟ ପରମ୍ପରା ଓ ସଂସ୍କୃତିର ପ୍ରତୀକ ।

ସବୁ ସମ୍ପ୍ରଦାୟ ଯେପରି ଶୈବ, ଶାକ୍ତ, ସୌର, ଗାଣପତ୍ୟ, ବୈଷ୍ଣବ ଭକ୍ତଗଣ ଏଠାକୁ ଆସି ପରମବ୍ରହ୍ମଙ୍କ ସାନ୍ନିଧ ଲାଭ କରି ନିଜକୁ ଲୀନ କରିଦେଇଛନ୍ତି। ମୁନି ଋଷିମାନଙ୍କର ସାଧନାର କ୍ଷେତ୍ର ହେଉଛି ଶ୍ରୀକ୍ଷେତ୍ର । ସେମାନଙ୍କର ଅଭୂତପୂର୍ବ ତପସ୍ୟା ଓ ପଦରଜ ପାଇ ସେଇ ଦୈବ ତୀର୍ଥ ପୁନଶ୍ଚ ଅର୍କ ତୀର୍ଥରେ ପରିଣତ ହୋଇଛି । କହିବାକୁ ଗଲେ ସତ୍ୟରେ ତପୀ, ତ୍ରେତୟାରେ କପି, ଦ୍ୱାପରରେ ଗୋପୀ ତାଙ୍କ ସାନ୍ନିଧ୍ୟର ଯେଉଁ ଅମୃତ ରସ ଅନୁଭବ କରିଥିଲେ ଆଜି କଳି ଯୁଗରେ ସାଧାରଣରୁ ଅତି ସାଧାରଣ ଭକ୍ତଟିଏ ସେଇ ରସ ଉପଭୋଗ କରୁଛି । କହିବାକୁ ଗଲେ ଭକ୍ତକବି ଜଗନ୍ନାଥ ଦାସ ଶ୍ରୀକ୍ଷେତ୍ରର ଅଧୀଶ୍ୱର ଶ୍ରୀଜଗନ୍ନାଥଙ୍କୁ ଶ୍ରୀକୃଷ୍ଣ, ନୀଳାଚଳକୁ ଗୋବର୍ଦ୍ଧନ ଗିରି, ଭାର୍ଗବୀକୁ ଯମୁନା, କଳ୍ପବୃକ୍ଷକୁ ଶ୍ୟାମକୁଞ୍ଜ, ସୁନାମଧନ୍ୟ ରାଧାକୁଣ୍ଡ ଏବଂ ନୀଳାଚଳକୁ ନିତ୍ୟରାସସ୍ଥଳୀ ବୃନ୍ଦାବନ ଭାବରେ ବର୍ଣ୍ଣନା କରିଛନ୍ତି । ଅନ୍ୟତ୍ର ବର୍ଣ୍ଣନା ରହିଛି – ଏ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ, ଅଟଇ ନିତ୍ୟ ବୃନ୍ଦାବନ...

ପୁନରାୟ କୁହାଯାଇଛି – 'ସକଳ ତୀର୍ଥ ତୋ ଚରଣେ...' ତୀର୍ଥ ଭିତରେ ସର୍ବଶ୍ରେଷ୍ଠ ତୀର୍ଥସ୍ଥଳ ପୁରୀ ଶ୍ରୀପୁରୁଷୋତ୍ତମ ଧାମ ।

ପ୍ରାଚୀନ ଉତ୍କଳ ଇତିହାସ ପୁସ୍ତକରେ ବର୍ଣ୍ଣିତ ତଥ୍ୟାନୁଯାୟୀ ପରଂବ୍ରହ୍ମଙ୍କର ନୀତିକୁ ବର୍ଦ୍ଧିତ କରି ସୋମବଂଶୀୟ ରାଜମାନେ ପଣ୍ଡା, ଗରାବଡୁ, ପତ୍ରିବଡୁ, ସୁଆର, ମହାସୁଆର, ଅଖଣ୍ଡ, ମେକାପ, ପ୍ରତିହାରୀ, ଭଣ୍ଡାର ମେକାପ, ଦେଉଳ କରଣ, ଚୁନରା ପ୍ରଭୃତି ସେବକଙ୍କୁ ନିଯୁକ୍ତି କଲେ । ପୁରୀ ପଣ୍ଡା ପଡ଼ିହାରୀ ସେବକମାନଙ୍କ ଏହା ଏକ ସୁଦୃଶ୍ୟ ଜନପଦ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏମାନଙ୍କର ଆଧ୍ୟାତ୍ମିକ ଦିଗ୍‌ବାରେଣୀ ହେଲେ ପ୍ରଭୁ ଶ୍ରୀଜଗନ୍ନାଥ । ପୂଜା ସେବାରୁ ଯାହା ବା ଦକ୍ଷିଣା ପାଉଥିଲେ ଏମାନେ ନିଜ ଗୁଜୁରାଣ ମେଣ୍ଟାଉଥିଲେ ଓ ରାଜା ଖଞ୍ଜି ଦେଇଥିଲେ ଏମାନଙ୍କ ପାଇଁ ଅଚଳାଚଳ ସମ୍ପତ୍ତି । ଏଠି ସାଧୁ ସନ୍ନ୍ୟାସୀମାନଙ୍କର ସାଧନା ପୀଠ ହୋଇଥିବାରୁ ଶିଷ୍ୟମାନଙ୍କର ଶିକ୍ଷା ପ୍ରଦାନ ପାଇଁ ଓ ରହଣି ପାଇଁ ମଠମନ୍ଦିର ଗଢ଼ି ଉଠିଲା । ମଠଗୁଡ଼ିକ ଥିଲା ସାଧନାର ପୀଠ ତଥା ଆଧ୍ୟାତ୍ମିକ ଶିକ୍ଷାଦାନର ପ୍ରଧାନ କେନ୍ଦ୍ର । ପ୍ରଭୁ ଜଗନ୍ନାଥ ଓ ମଣିଷର ନିଗୂଢ଼ ଭାକ୍ତିକ ସମ୍ପର୍କରେ ଏମାନଙ୍କୁ ଜଗନ୍ନାଥ ତତ୍ତ୍ୱ ସମ୍ପର୍କରେ ମଠମାନଙ୍କରେ ଶିକ୍ଷା ପ୍ରଦାନ କରାଯାଉଥିଲା। ମଠମାନଙ୍କରେ ବେଦ ଅଧ୍ୟୟନ ସହିତ କର୍ମକାଣ୍ଡ ସମ୍ପର୍କରେ ଅଧିକ ଶିକ୍ଷା ମଧ୍ୟ ପ୍ରଦାନ କରାଯାଉଥିଲା । ମଠ ହିଁ ଥିଲା ବେଦ ଓ ଉପନିଷଦର ସମ୍ପର୍କୀୟ ଶିକ୍ଷା ଗ୍ରହଣ କରିବାର ଏକମାତ୍ର ଧର୍ମୀୟ ଓ ସାଂସ୍କୃତିକ ପ୍ରାଣକେନ୍ଦ୍ର । ଏଣୁ ଭକ୍ତଙ୍କର ଅନୁଦାନରେ ରାଜାଙ୍କର ପୃଷ୍ଠପୋଷକତା ପାଇ ମଠଗୁଡ଼ିକ ଆହୁରି ପ୍ରାଣବନ୍ତ ହୋଇଉଠିଲା । ଏହାର ପରିଚାଳନା ପାଇଁ ମଠାଧୀଶ ବା ମହନ୍ତମାନେ ମଧ୍ୟ ନିଯୁକ୍ତି ପାଇଲେ । ଆଧ୍ୟାତ୍ମିକ ଗୁରୁମାନେ ମଧ୍ୟ ରହି ଶିକ୍ଷା ପ୍ରଦାନରେ ସହାୟକ ହେଲେ । ମଠ ଓ ମନ୍ଦିରର ସମ୍ପର୍କ ହେଲା ନିଗୂଢ଼ ।

ଶ୍ରୀମନ୍ଦିର ସହ ଯୋଡ଼ି ହେଇଗଲା ପୁରୁଷୋତ୍ତମ ଧାମରେ ଗଢ଼ିଉଠିଥିବା ମଠଗୁଡ଼ିକ । ଆଜି ଯେଉଁ 'ଗୀତଗୋବିନ୍ଦ' ସାରା ବିଶ୍ୱରେ ଲୋକପ୍ରିୟ ହୋଇପାରିଛି, ତାହା ଏହି ପୁରୁଷୋତ୍ତମ ଧାମରେ ପ୍ରଥମେ ପ୍ରଚାର ପ୍ରସାର ଘଟିଥିଲା । ମଠମାନଙ୍କର ଗୋଟିପୁଅ ନୃତ୍ୟ ଆମ ସାଂସ୍କୃତିକ ପରମ୍ପରାକୁ ବଳିଷ୍ଠ କରିଛି ।

ପୁରୀରେ ଐତିହ୍ୟ ତଥା ମର୍ଯ୍ୟାଦାପୂର୍ଣ୍ଣ ମଠଗୁଡ଼ିକ ହେଲା– ରାଘବ ଦାସ ମଠ, ଜଗନ୍ନାଥବଲ୍ଲଭ ମଠ, ବାରୁଣୀ ମଠ, ରାଧାବଲ୍ଲଭ ମଠ, ସାନଛତା ମଠ, ଦର୍ପନାରାୟଣ ମଠ, ଦକ୍ଷିଣପାର୍ଶ୍ୱ ମଠ, ଗୋପାଳ ତୀର୍ଥ ମଠ, ଗୋବର୍ଦ୍ଧନ ମଠ, ରାମଜୀ ମଠ, ମଙ୍ଗୁମଠ, ରାଧାକାନ୍ତ ମଠ, ଜଟିଆ ବାବାଜୀ ମଠ, ପାପୁଡ଼ିଆ ମଠ, ରେବସା ମଠ, ତ୍ରିମାଳି ମଠ, ଗଙ୍ଗାମାତା ମଠ, ଗୋସ୍ୱାମୀ ମଠ, ବଡ଼ଝାଡୁ ମଠ, ରାମଦାସ ମଠ, ହରିଦାସ ମଠ ଓ ଏମାର ମଠ । କହିବାକୁ ଗଲେ ଶ୍ରୀମନ୍ଦିର ସଂଲଗ୍ନ ଏମାର ମଠ ହେଉଛି ସର୍ବପ୍ରାଚୀନ । ଏହି ମଠ ପ୍ରତ୍ୟହ ଶ୍ରୀମନ୍ଦିରକୁ ବଲ୍ଲଭ

ବଡ଼ସିଂହାର ବେଶ ପାଇଁ ଫୁଲ ଚନ୍ଦ୍ରିକା ଓ ଚଉସରା ଆଦି ଯୋଗାଏ । ସ୍ନାନପୂର୍ଣ୍ଣିମା ଓ ରଥଯାତ୍ରା ସମୟରେ ଫୁଲଚନ୍ଦନ ଯୋଗାଏ । ଏଗୁଡ଼ିକ ପ୍ରାଚୀନ ପରମ୍ପରା ଓ ପ୍ରଥା ତେଣୁ ମଠଗୁଡ଼ିକର ସଂପୃକ୍ତି ପାଇଁ ଶ୍ରୀମନ୍ଦିର ନିକଟରେ ଚତୁଃପାର୍ଶ୍ୱରେ ମଠମାନ ଗଢ଼ିଉଠିଥିଲା । ଅଣସର ସମୟରେ ମହାପ୍ରଭୁଙ୍କ ନିକଟରେ ଚକଟା ଭୋଗ ମଧ୍ୟ ଯୋଗାଇଥାଏ । ବାଳ ଭୋଗର ବ୍ୟବସ୍ଥା ମଧ୍ୟ କରିଥାଏ କାର୍ତ୍ତିକ ମାସରେ । ପ୍ରତିଦିନ ଏହି ମଠକୁ ମହାପ୍ରସାଦ ଖଞ୍ଜା ଯାଇଛି । ତତ୍କାଳୀନ ମଠ ମହନ୍ତ ଗଦାଧର ରାମାନୁଜ ଦାସ ଏଠାରେ ରଘୁନନ୍ଦନ ପାଠାଗାରଟିଏ ପ୍ରତିଷ୍ଠା କରିଥିଲେ । ଏଠାରେ ହଜାର ହଜାର ତାଳପତ୍ର ପୋଥି ଓ ଛପାଯାଇଥିବା ବହି ମଧ୍ୟ ଉପଲବ୍ଧ ହୋଇଥାଏ । ଏହାର କାରଣ ହେଉଛି ଯେଉଁ ସାଧୁସନ୍ଥ ଭକ୍ତମାନେ ଆସିବେ ପୁରୀର ଐତିହ୍ୟ ତଥା ଶ୍ରୀଜଗନ୍ନାଥଙ୍କ ମହିମା ସମ୍ପର୍କରେ ଜାଣିବା ଅବା ଅଧିକ ଗବେଷଣା ପାଇଁ ଏହି ପାଠାଗାରକୁ ବିନିଯୋଗ କରିପାରିବେ । ଏହା ଫଳରେ ସାହିତ୍ୟ, ସଂସ୍କୃତି ଓ ଧର୍ମ ସମ୍ପର୍କରେ ଏହାଦ୍ୱାରା ଦୂରଦୂରାନ୍ତ ଶିକ୍ଷିତ ଭକ୍ତମାନଙ୍କୁ ଅଧିକ ଜ୍ଞାନ ବିତରଣ କରିପାରୁଥିଲା ଏବଂ ଜଗନ୍ନାଥ ଧର୍ମ ଓ ସଂସ୍କୃତି ସମ୍ପର୍କରେ ଅଧିକ ଭାବରେ ଆଲୋକପାତ କରିପାରୁଥିଲେ । ଏହାକୁ ଏମାର ମଠ ନକହି ବରଂ ଅମାର ମଠ କହିଲେ ଅତ୍ୟୁକ୍ତି ହେବ ନାହିଁ । ଜଗନ୍ନାଥଙ୍କ ମହିମା ଅପାର । ନଅଙ୍କ ଦୁର୍ଭିକ୍ଷ ବେଳେ ହା ଅନ୍ନ ଚିତ୍କାର କରୁଥିବା ବୁଭୁକ୍ଷୁମାନଙ୍କୁ ଏହି ମଠରେ ମହଜୁଦ ଥିବା ଧାନ, ଚାଉଳ ମଧ୍ୟ ବିତରଣ କରାଯାଉଥିଲା ।

ଏତଦ୍‌ବ୍ୟତୀତ 'ବଡ଼ ଓଡ଼ିଆ ମଠ' ପ୍ରତିଷ୍ଠା କରିଥିଲେ ଅତିବଡ଼ୀ ଜଗନ୍ନାଥ ଦାସ । ଏଠାରେ ୨୧୫ ବଖରା ଘର ଥିଲା । ସମୁଦ୍ର କୂଳରେ ଥିବା ସାତ ଲହଡ଼ି ମଠ, ବଡ଼ ଓଡିଆ ମଠର ଏକ ଶାଖା । ବିଭିନ୍ନ ସାହିମାନଙ୍କରେ ଗଢି ଉଠିଥିଲା ଅନେକ ମଠ ।

ପୁରୀର ବୁଡ଼ଙ୍ଗ ସାହିରେ ବଡ଼ଛତା ମଠ ଅବସ୍ଥିତ । ପୁରୀରେ ଏହିପରି ଅନେକ ଜଣାଶୁଣା ମଠ ରହିଛି, ଯାହା ଜଗନ୍ନାଥଙ୍କର ପୂଜା/ ଅର୍ଚ୍ଚନା ସହ ଶ୍ରୀମନ୍ଦିର ସହ ଜଡ଼ିତ ।

ପୁରୀ ଯେହେତୁ ଧର୍ମୀୟ କ୍ଷେତ୍ର ଓ ଓଡ଼ିଶାର ସାଂସ୍କୃତିକ ପ୍ରାଣକେନ୍ଦ୍ର । ଏଠାରେ ସଂସ୍କୃତିର ପ୍ରସାର ପ୍ରଚାର ଏହି ମଠମାନଙ୍କରୁ ହିଁ ଆରମ୍ଭ ହୋଇଛି । ଓଡ଼ିଶୀ ସଂସ୍କୃତିର ବାହକ ହେଉଛି ଏଇ ମଠ । ମଠମାନଙ୍କରେ ସଂଧ୍ୟା ସମୟରେ ଭଜନ କୀର୍ତ୍ତନ ସହ ଧାର୍ମିକ ଆଲୋଚନା ତଥା ଗୋଟି ପୁଅ ନୃତ୍ୟ ସହ ସଂଗୀତର ମଧ୍ୟ କାର୍ଯ୍ୟକ୍ରମ ଓଡ଼ିଶାର ଆଧ୍ୟାତ୍ମିକବାଦୀଙ୍କ ହୃଦୟକୁ ଉତ୍‌ଫୁଲିତ କରିଦିଏ । ମାଗଣାରେ ରହିବା ଓ ବିନା ମୂଲ୍ୟରେ ଖାଦ୍ୟପେୟର ବନ୍ଦୋବସ୍ତ କରିଥାଏ ମଠ । ଭାରତର ବିଭିନ୍ନ ପ୍ରାନ୍ତରୁ ବିଭିନ୍ନ ଧର୍ମାବଲମ୍ବୀ ଭକ୍ତମାନେ ଏଠାରେ ଦୀର୍ଘଦିନ ରହି ପ୍ରଭୁଙ୍କର ସାତ୍ତ୍ୱିକ ଦର୍ଶନ କରିବାର ସୁବିଧା ଲାଭ କରିଥାନ୍ତି । ମଠ ଓ ଶ୍ରୀମନ୍ଦିରର ସଂପୃକ୍ତିକୁ ଅଲଗା କରିବା ଅର୍ଥ ଏକ ଅଙ୍ଗଛେଦନ ଭଳି ଲାଗିବ । ଯଦି ପ୍ରାଚୀନ ଐତିହ୍ୟ କଥା ଚିନ୍ତା କରାଯାଏ, ପ୍ରଥମେ ଧର୍ମୀୟ ସତ୍ତାର ଉଦ୍‌ଘୋଷକ ଆମ ସାଂସ୍କୃତିକ ପ୍ରାଚୀନ ପ୍ରାଣକେନ୍ଦ୍ର ହେଉଛି ଏହି ମଠ । ମଠ ସଂସ୍କୃତି ଆମ ଭାଷା ପରଂପରା ସଂସ୍କୃତି ଓ ଧର୍ମୀୟ ଚେତନାକୁ ପରିବ୍ୟାପ୍ତ କରିଛି । ଏଥିରେ ମଠର ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଗୋଟିକୁ ଛାଡ଼ି ଅପରଟିର ସ୍ଥିତି ସମ୍ଭବ ନୁହେଁ । ଆମେ ଏବେ ବିକାଶଶୀଳ ରାଷ୍ଟ୍ର ଭାବରେ ଉଭା ହେବାକୁ ଯାଉଛୁ । ସମୟ ସାଥିରେ ତାଳ ଦେଇ ଆମେ ବଦଳି ଚାଲିଛେ । ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପରଂପରା ଓ ଐତିହ୍ୟକୁ ଆଧାର କରି ବିଶ୍ୱରେ ପୁରୀ ସର୍ବଶ୍ରେଷ୍ଠ ସହର ହେଉ । ଉତ୍କଳର ନେତା ନିଜେ ନାରାୟଣ । ତାଙ୍କ ଆଜ୍ଞାକୁ ଅବଜ୍ଞା କଲେ ନିମିଷକେ ଏ ମଣିଷ ସମାଜ ରସାତଳଗାମୀ ହେବ ଏବଂ ଏଥିପାଇଁ ସମସ୍ତେ ଆମେ ସଚେତନ ହେବା ଉଚିତ । ଐତିହ୍ୟ, ପରଂପରା, ସଂସ୍କୃତି, ଧର୍ମ ଭାବନାରେ ଯୁଗ ଯୁଗ ପାଇଁ ପୁରୀ ସହର ସାରା ବିଶ୍ୱରେ ପ୍ରତିଷ୍ଠା ଲାଭ କରୁ, ଏହା ହିଁ କାମନା ।

ଇ-୫୦, ସେକ୍ଟର-୭
ସି.ଡି.ଏ, କଟକ-୧୪

# ଓଡ଼ିଶାର ସାଂସ୍କୃତିକ ଜୀବନଧାରାରେ ମକର ସଂକ୍ରାନ୍ତି

**ଡକ୍ଟର ସର୍ବେଶ୍ୱର ସେଣ**

ଜଗନ୍ନାଥଙ୍କ ସଂସ୍କୃତି ଓଡ଼ିଶାର ସଂସ୍କୃତି । ଓଡ଼ିଆର ଚଳଣି, ବେଶପୋଷାକ, ଖାଦ୍ୟପେୟ, ବେଶଭୂଷା – ଏ ସମସ୍ତର ସାମଞ୍ଜସ୍ୟ ଜଗନ୍ନାଥଙ୍କ ଦୈନନ୍ଦିନ ନୀତିକାନ୍ତି ସହ ଜଡିତ । ଶ୍ରୀକ୍ଷେତ୍ରରେ ''ବାରମାସରେ ତେର ପର୍ବ'' ।



ସେଇ ସବୁ ପର୍ବପର୍ବାଣି ସାରା ଓଡ଼ିଶାରେ ପାଳିତ । ଲକ୍ଷ ଲକ୍ଷ ଓଡ଼ିଆଙ୍କ ଧର୍ମ-ଭାବନା, ଅଧ୍ୟାତ୍ମ ବିଶ୍ୱାସ । ତାହା ପର୍ବପର୍ବାଣି ସହ ଓତପ୍ରୋତ ଭାବେ ବିଜଡ଼ିତ । ଏ ସମସ୍ତର ସାମାଜିକ, ସାଂସ୍କୃତିକ ମୂଲ୍ୟବୋଧ ଉଚ୍ଚକୋଟୀର । ଭାରତବର୍ଷରେ ବିଭିନ୍ନ ପର୍ବପର୍ବାଣି ପାଳିତ ମାତ୍ର ଓଡ଼ିଶାରେ ଏହା ସର୍ବାଧିକ । ପୁନଶ୍ଚ 'ବାରମାସରେ ତେରଯାତ' । ଏଥି ସହିତ ବହୁ ଓଷା, ବ୍ରତ । ସବୁଥିରେ ଧର୍ମୀୟ ଚେତନା ପରିସ୍ଫୁଟ । ସେହିପରି ବାରମାସରେ ବାରଟି ସଂକ୍ରାନ୍ତି । ଏଗୁଡ଼ିକରେ ସାଂସ୍କୃତିକ ମହକ ଅନନ୍ୟ । ତନ୍ମଧ୍ୟରେ 'ମକର ସଂକ୍ରାନ୍ତି' ସର୍ବାଗ୍ରେ । କେବଳ ଓଡ଼ିଶା ଅବା ଭାରତ ନୁହେଁ, ବିଶ୍ୱର ଅନ୍ୟ କେତେକ ଦେଶରେ ତାହା ପାଳିତ । ବିଭିନ୍ନ ସ୍ଥାନରେ ମକର ସଂକ୍ରାନ୍ତିର ନିଆରା ନାମକରଣ । ଏ ଦିନ ସୂର୍ଯ୍ୟଙ୍କର ଦକ୍ଷିଣ ଗୋଲାର୍ଦ୍ଧରୁ ଉତ୍ତର ଗୋଲାର୍ଦ୍ଧକୁ ବିଜେ । ସ୍ଥିତି ମକର କ୍ରାନ୍ତିରେ । ଦିନଟି ବହୁ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ମକର ସଂକ୍ରାନ୍ତି ମୁଖ୍ୟତଃ ଫସଲ ଅମଳ ପର୍ବ । ମୁଖ୍ୟ ଉପାସ୍ୟ ଦେବତା ସୂର୍ଯ୍ୟ । ଶ୍ରୀ ବିଷ୍ଣୁ ମା' ଲକ୍ଷ୍ମୀଙ୍କ ବିଶେଷ ପୂଜାବିଧି ମକର ସଂକ୍ରାନ୍ତିରେ । ଓଡ଼ିଶାର ସାଂସ୍କୃତିକ ଜୀବନଧାରାରେ ଏ ପର୍ବଟି ଅଧିକ ଗୁରୁତ୍ୱପୂର୍ଣ୍ଣ ।

ବର୍ଷକ ବାରମାସ । ପ୍ରତି ମାସର ଅୟମାରମ୍ଭ ସଂକ୍ରାନ୍ତିରୁ । ସେଇଥିପାଇଁ ଗୋଟିଏ ବର୍ଷରେ ସଂକ୍ରାନ୍ତି ସଂଖ୍ୟା ବାର । ମେଷ ସଂକ୍ରାନ୍ତିରେ ମେରୁଯାତ୍ରା । ଓଡ଼ିଆ ନବବର୍ଷର ଆରମ୍ଭ ଏଇ ସଂକ୍ରାନ୍ତିରୁ । ରଜ ସଂକ୍ରାନ୍ତିରେ ରଜପର୍ବ । ଗର୍ଭଣା ସଂକ୍ରାନ୍ତିରେ କୃଷକଙ୍କ ଧାନଗଛ ପୂଜା । ଏ ଦିନ ଗର୍ଭଣା ଗଛରୁ କାଠି କଟାଯାଏ ।

ଧୂପ, ଦୀପ, ନୈବେଦ୍ୟର ସହ ପୂଜାର୍ଚ୍ଚନା, କାଠି ଉଠାଇ ଧାନକ୍ଷେତରେ ପୋତାଯାଏ । ଧାନକେଣ୍ଡା ବାହାରୁଥାଏ । ଅଧିକ ଫସଲ ଅମଳ ହେବ । ଏଇ ମାନସିକରେ ଗର୍ଭଣା ବୃକ୍ଷର ପୂଜା, ଆଉ କାଠି କଟାଯାଏ । ଏ ପରମ୍ପରାଟି ବିଶେଷ ଭାବେ ଉପକୂଳ ଓଡ଼ିଶାରେ । ଧନୁ ସଂକ୍ରାନ୍ତି । ବାଡ଼ି ଧାନଖଳାରେ ସାହାଡ଼ା ଗଛର ମେରି ପୋତାଯାଏ । ଏ ଦିନ ଦେବଦେବୀ ତଥା ଧାନମେରି ନିକଟରେ ମୁଆଁ, ନୈବେଦ୍ୟ । ଗାଁ ଗଣ୍ଡାରେ ଧନୁସଂକ୍ରାନ୍ତି 'ମୁଆଁ ସଂକ୍ରାନ୍ତି' । ସବୁ ସଂକ୍ରାନ୍ତିଗୁଡ଼ିକ ମଧ୍ୟରୁ 'ମକର ସଂକ୍ରାନ୍ତି'ର ଅଧିକ ମହତ୍ତ୍ୱପୂର୍ଣ୍ଣ । ଏ ଦିନ ସହର, ମଫସଲ ତଥା ଦେବଦେବୀ ପୀଠ, ମଠ ମନ୍ଦିର ଉତ୍ସବ ମୁଖର । ନିଷ୍ଠାର ସହ ପୂଜାପାଠ, ଉପାସନା, ବ୍ରତ ପାଳନ କରାଯାଏ । ବହୁ ପୁଣ୍ୟ ମିଳେ । ଏ ବିଶ୍ୱାସ ଆବହମାନ କାଳରୁ ।

ଜ୍ୟୋତିଷ ଶାସ୍ତ୍ରାନୁଯାୟୀ ବାରଟି ରାଶି । ଯଥା– ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଳା, ବିଛା, ଧନୁ, ମକର, କୁମ୍ଭ ଓ ମୀନ । ଏ ନାମରେ ବାର ସଂକ୍ରାନ୍ତି ଖ୍ୟାତ । ମକର ସଂକ୍ରାନ୍ତିରେ ବୈଜ୍ଞାନିକ ବିଶେଷତ୍ୱ ଗୁରୁତ୍ୱପୂର୍ଣ୍ଣ । ବର୍ଷ ମଧ୍ୟରେ ସୂର୍ଯ୍ୟଙ୍କର ମୁଖ୍ୟତଃ ମକର, କର୍କଟ କ୍ରାନ୍ତି, ବିଷୁବ ବୃତ୍ତରେ ଅବସ୍ଥାନ । ମକର ସଂକ୍ରାନ୍ତିରେ ସୂର୍ଯ୍ୟଙ୍କର 'ଉତ୍ତରାୟଣ' ଗତି । ମକର କ୍ରାନ୍ତିରେ ସୂର୍ଯ୍ୟଦେବ ସାକ୍ଷାତ୍ 'ବ୍ରହ୍ମସ୍ୱ' ରୂପ । ସେଇଥିପାଇଁ ଉତ୍ତରାୟଣ ଗତି ଅତି ପବିତ୍ର । ଉତ୍ତରାୟଣରେ ପରଲୋକ, ମିଳେ ସ୍ୱର୍ଗପ୍ରାପ୍ତି । ଏ ବିଶ୍ୱାସ ଏବେବି ଜୀବନ୍ତ । ମହାରଥୀ ଭୀଷ୍ମ । ଇଚ୍ଛା ମୃତ୍ୟୁବରଣ ପାଇଁ ପାଇଥିଲେ ବର । ଅର୍ଜୁନଙ୍କ ଶରାଘାତରେ ତାଙ୍କର କୁରୁକ୍ଷେତ୍ରରେ ଶରଶଯ୍ୟା । ମକର ସଂକ୍ରାନ୍ତିରେ ସେ ଇଚ୍ଛାମୃତ୍ୟୁ ବରଣ କଲେ । ସ୍ୱର୍ଗଧାମକୁ ଗତି କଲେ । ମୋକ୍ଷ ହେଲା ତାଙ୍କ ଆତ୍ମା । ମକର ସଂକ୍ରାନ୍ତିରୁ ଶୀତର ବିଦାୟ ପର୍ବ । କଥାରେ ଅଛି , ''ମକର ଶୀତ ବକର ।'' ଏହିଦିନଠାରୁ କ୍ରମଶଃ ଦିନ ବଢ଼େ, ରାତି ଛୋଟ ହୁଏ ।

ମକର ସଂକ୍ରାନ୍ତି ସହିତ ଆଉ ଏକ ପୌରାଣିକ ତଥ୍ୟ ନିହିତ । ମହାଭାରତ ଯୁଗରୁ ଏ ଆଖ୍ୟାନ । ତାହା ଗୁରୁ ଦ୍ରୋଣାଚାର୍ଯ୍ୟ, ଗୁରୁପତ୍ନୀ କୃପୀଙ୍କ ସହ ସମ୍ବନ୍ଧିତ । ଦ୍ରୋଣାଚାର୍ଯ୍ୟ ନିଃସନ୍ତାନ । ଦୁର୍ବାସା ଋଷି, ଦ୍ରୋଣଙ୍କୁ ଦେଲେ ଉପଦେଶ । ମକର ସଂକ୍ରାନ୍ତି ଦିନ କୃପୀ ନିଷ୍ଠାର ସହ ପାଳିବେ 'ଦଧି ମନ୍ଥନ ବ୍ରତ', ହେବେ ସୁପୁତ୍ରର ଜନନୀ । ଏଥି ସହିତ ଋଷି ବ୍ରତବିଧି ନିର୍ଦ୍ଦେଶ ଦେଲେ । ସଂକ୍ରାନ୍ତିରେ ଭୂମି ଲିପାପୋଛା, ତତ୍‌ପରେ ସ୍ୱସ୍ତିକ ଚିହ୍ନ ଅଙ୍କିତ ହେବ । ତହିଁ ପରେ ସ୍ଥାପିତ ହେବ ଅକ୍ଷତ ସହ ଦଧିଭାଣ୍ଡ । ପ୍ରାତଃରୁ ମଧ୍ୟାହ୍ନ ଯାଏଁ କୃଷ୍ଣଲୀଳା ଗାନ । ଦଧି ହାଣ୍ଡିକୁ କୃପୀ ମନ୍ଥନ କରିବେ । କୃଷ୍ଣ, ମାତା ଯଶୋଦା–ଉଭୟଙ୍କର ସୁବର୍ଣ୍ଣ ମୂର୍ତ୍ତି ସ୍ଥାପନ କରାଯିବ । ସିନ୍ଦୂର, କୁଙ୍କୁମ, ଫୁଲହାର, ନୂଆ ରେଶମ ବସ୍ତ୍ର – ଏ ସବୁରେ ମୂର୍ତ୍ତି ଦ୍ୱୟ ସଜ୍ଜିତ ହେବେ । ତତ୍‌ପରେ ସୂର୍ଯ୍ୟଦେବଙ୍କୁ ଆରାଧନା । ଆଠ ଦିଗରେ ଆଠଦୀପ ପ୍ରଜ୍ୱଳନ । ଖଇ, ଆଖୁ ପ୍ରଭୃତି ନୈବେଦ୍ୟ ଲାଗି ହେବ । ଯଶୋଦାଙ୍କ କୋଳରେ ସ୍ତନ୍ୟପାନ କରୁଥିବା ବାଳକୃଷ୍ଣ – ଏଇ ମୂର୍ତ୍ତିକୁ ଧ୍ୟାନ କରିବେ କୃପୀ । ଏ ଥିଲା ଦୁର୍ବାସାଙ୍କ ପରାମର୍ଶ । ପତିବ୍ରତା କୃପୀ । ମକର ସଂକ୍ରାନ୍ତି ଦିନ ଏ ବ୍ରତ ପାଳନ କଲେ । ପାଇଲେ ଅଶ୍ୱତ୍‌ଥାମାଙ୍କ ପରି ବୀର ପୁତ୍ର ।

ମକର ଏକ ପୁଣ୍ୟ ତଥା ଆଧ୍ୟାତ୍ମିକ ପର୍ବ । ଏ ଦିନ ଶ୍ରାଦ୍ଧ ପ୍ରଦାନ, ପିଠାପଣା, ଆନନ୍ଦ ଉତ୍ସବରେ ଜନଜୀବନ ଉତ୍ସବମୁଖର । ଘରେ ଘରେ ମକର ଭୋଗ । ନଡ଼ିଆ, କଦଳୀ, ଆଖୁ, ନୂଆ ଚାଉଳ, ଶାକର, ଶାକରକନ୍ଦ ମିଶ୍ରିତ ଭୋଗ – ମକର ଭୋଗ ବା ମକର ଚାଉଳ । ଏଥିରେ ଦେବତାଙ୍କୁ ନୈବେଦ୍ୟ ଅର୍ପଣ କରାଯାଏ । ମକର ଚାଉଳ ପରସ୍ପରକୁ ଖୁଆନ୍ତି, ମକର ବସନ୍ତି । ଶ୍ରେଷ୍ଠ ବନ୍ଧୁତ୍ୱର ନିଦର୍ଶନ ମକର ।

ମକର ସଂକ୍ରାନ୍ତିର ବାସିଦିନ କିଂକ୍ରାନ୍ତି–ସଂକ୍ରାନ୍ତିର ସାନ ଭଉଣୀ । ସେଦିନ ମଧ୍ୟ ପିଠାପଣା, ଭୋଜିଭାତର ଆୟୋଜନ । ସାହି, ପଡ଼ିଶା, ବନ୍ଧୁବାନ୍ଧବ – ସମସ୍ତେ ମିଳିମିଶି ଆନନ୍ଦ ନିଅନ୍ତି । ଆଦିବାସୀ ସମ୍ପ୍ରଦାୟରେ ମକର ପର୍ବ ବେଶ୍ ଲୋକପ୍ରିୟ । ମୟୂରଭଞ୍ଜର ସାନ୍ତାଳ, କେଉଁଝରର ଜୁଆଙ୍ଗ । ମକର ଏମାନଙ୍କର ମୁଖ୍ୟପର୍ବ ।

ଆଦିବାସୀ ଦେବତା 'ସୁନାବେଙ୍ଗା' । ତାଙ୍କୁ ସନ୍ତୁଷ୍ଟ କରିବାକୁ ହେବ । ଏଥିପାଇଁ ପୂଜା ପାର୍ବଣ, ନୃତ୍ୟ, ଗୀତର ବିଶେଷ ଆୟୋଜନ । ଓଡ଼ିଶାର ମୟୂରଭଞ୍ଜରେ ମକର 'ଟୁସୁ ଉତ୍ସବ' ଭାବେ ନାମିତ । ଏହି ପର୍ବ ଅତୀବ ଚିତ୍ତାକର୍ଷକ । ଲୋକ ସଂସ୍କୃତିରେ ଏହା ଏକ ମହାନ୍ ପର୍ବ । ଏ ଉତ୍ସବ ତିନିଦିନ ଧରି ଚାଲେ । ପ୍ରଥମ ଦିନ ଚାଉଳ ଧୁଆ, ଦ୍ୱିତୀୟ ଦିନ ବାହୁଣ୍ଡି, ତୃତୀୟ ଦିନ ମକର ପର୍ବ – ଏହିପରି ମକର ପର୍ବ ତିନି ଦିନର । ଏ ପର୍ବରେ ଗୁଡ଼ିଉଡ଼ା ଏକ ବିଶେଷ ଆକର୍ଷଣ । ମକର ସଂକ୍ରାନ୍ତି ପୂର୍ବ ରାତିରେ ଅଗିଜଳା । ଅଗିରା ପୁନେଇଁରେ ଅଗ୍ନିଉତ୍ସବ ପାଳିତ ହୁଏ । ଅନୁରୂପ ଭାବେ ଅଗିଜଳା । ବଡ଼ ବଡ଼ କାଠଗଣ୍ଡି ଜାଳି ପାଣି ଗରମ କରାଯାଏ । କନ୍ଦମୂଳ ପୋଡ଼ି ଲୋକେ ଖାଆନ୍ତି । ଗଳି କନ୍ଦି, ରାସ୍ତାଘାଟରେ ଅଗିଜଳା ଚାଲେ ।

ଦକ୍ଷିଣ ଭାରତରେ ମକର ସଂକାନ୍ତି ପୋଙ୍ଗଲ ପର୍ବ । ଆସାମରେ ଏହି ପର୍ବର ନାମ 'ମାଘ ବିହୁ' । ବଙ୍ଗଳା ଦେଶରେ ଏହା 'ପୌଷ ସଂକ୍ରାନ୍ତି' । ପଞ୍ଜାବ, ହରିଆନା, ହିମାଚଳ ପ୍ରଦେଶରେ ତାହା 'ମାଘୀ ପର୍ବ' । କେନ୍ଦ୍ରୀୟ ଭାରତରେ ଏ ପର୍ବ 'ସୁକରାତ' । ଗୁଜୁରାଟ, ଉତ୍ତରାଖଣ୍ଡ, ଉତ୍ତର ପ୍ରଦେଶରେ ମକର ସଂକ୍ରାନ୍ତି ଉତ୍ତରାୟଣ ନାମେ ଖ୍ୟାତ । କର୍ଣ୍ଣାଟକ, ମହାରାଷ୍ଟ୍ର, ଗୋଆ, ପଶ୍ଚିମବଙ୍ଗରେ ତାହା 'ପୌଷ ସଂକ୍ରାନ୍ତି' । ଭାରତର ବିଭିନ୍ନ ସ୍ଥାନରେ ଏମିତି ଭିନ୍ନଭିନ୍ନ ନାମକରଣ । ଓଡ଼ିଶାରେ ଏହା ମକର ସଂକ୍ରାନ୍ତି । ତେଲୁଗୁ ସମ୍ପ୍ରଦାୟ 'ପୋଙ୍ଗଲ' ପାଳନ୍ତି ତିନି ଦିନ । ତିନିଦିନର ପର୍ବର ନାମକରଣ – (୧) ଭୋଗି, (୨) ମକର, (୩) ପିଣ୍ଡୁ । ନବବସ୍ତ୍ର ପରିଧାନ, ସୁମିଷ୍ଟ ତଥା ସୁସ୍ୱାଦୁ ବ୍ୟଞ୍ଜନ ଭୋଜନ । ଧୁମ୍‌ଧାମ୍‌ରେ ପୋଙ୍ଗଲ ପାଳିତ ହୁଏ । ଏହି ପର୍ବରେ ପିତୃଶ୍ରାଦ୍ଧ କରାଯାଏ । ଏଥିରେ ପୂର୍ବପୁରୁଷଙ୍କର ମୋକ୍ଷଗତି ପ୍ରାପ୍ତ ହୁଏ । ଏ ବିଶ୍ୱାସଟି ଏବେବି ଉଜ୍ଜୀବିତ ।

ମକର ସଂକ୍ରାନ୍ତି ଏକ ସାମାଜିକ ପର୍ବ । ଗାଁ ଗହଳିର ଛୋଟ ଛୋଟ ପିଲାଙ୍କର ଦେହରେ ରଙ୍ଗବେରଙ୍ଗର ପୋଷାକ । ଘରେ ଘରେ ବୁଲି ଗୀତ ଗାଆନ୍ତି – ମକର ଗୀତ । ବିଭିନ୍ନ ସ୍ଥାନରେ ମକର ମେଳାର ଆୟୋଜନ । ବାଲିଯାତ୍ରା ପରି ଏହି ମେଳା । ନୃତ୍ୟଗୀତର ଆସର । ତତ୍ ସହିତ ବିଭିନ୍ନ ଦ୍ରବ୍ୟର ବିପ୍‌ପଣୀ । ମେଳାରେ ବହୁ ଜନସମାଗମ । କିଣାବିକା ଢେର୍ । ପିଲେ ମୀନାବଜାର ଓ ଚକ୍ରୀ ଦୋଳିର ମଜା ନିଅନ୍ତି ।

ମକର ସଂକ୍ରାନ୍ତିରେ ମୁଖ୍ୟତଃ ସୂର୍ଯ୍ୟଙ୍କର ଉପାସନା । ଏଥିସହିତ ଶ୍ରୀବିଷ୍ଣୁ, ଠାକୁରାଣୀ ଲକ୍ଷ୍ମୀଙ୍କର ବିଶେଷ ପୂଜାର୍ଚ୍ଚନା । ଅନେକ ଶ୍ରଦ୍ଧାଳୁ ବିଭିନ୍ନ ନଦୀରେ ସ୍ନାନ କରନ୍ତି । ସୂର୍ଯ୍ୟଙ୍କୁ ଜଳଉତ୍ସର୍ଗ କରାଯାଏ । ଏଥିରୁ ଅଶେଷ ପୁଣ୍ୟ ମିଳେ । ଏ ଧର୍ମୀୟ ବିଶ୍ୱାସ ଶ୍ରଦ୍ଧାଳୁମାନଙ୍କର । ପ୍ରତି ବାରବର୍ଷରେ ମକର ସଂକ୍ରାନ୍ତିରେ 'କୁମ୍ଭମେଳା'ର ଆୟୋଜନ । ପ୍ରୟାଗଠାରେ ଏହା ଅନୁଷ୍ଠିତ ହୁଏ । ବିଶ୍ୱର କୋଣ ଅନୁକୋଣରୁ ନିୟୁତ ନିୟୁତ ଶ୍ରଦ୍ଧାଳୁଙ୍କ ସମାଗମ । ପ୍ରୟାଗ ସ୍ନାନ, ସୂର୍ଯ୍ୟ ଉପାସନା ଏହାର ମୂଳ ଉଦ୍ଦେଶ୍ୟ । ବିଶ୍ୱର ଏହା ସର୍ବଶ୍ରେଷ୍ଠ ମେଳା । ଗଙ୍ଗା, ଯମୁନାର ସଂଗମ ସ୍ଥଳ ପ୍ରୟାଗଠାରେ କୁମ୍ଭମେଳା ଆୟୋଜିତ ହୁଏ । ତାହା ଆଦି ଶଙ୍କରାଚାର୍ଯ୍ୟଙ୍କ ଉଦ୍ଦେଶ୍ୟରେ ସମର୍ପିତ ।

ମକର ସଂକ୍ରାନ୍ତି ଏକ କୃଷିଭିତ୍ତିକ ପର୍ବ । ଶସ୍ୟ ଅମଳର ଏହା ପହିଲି ପର୍ବ । ସମଗ୍ର ଭାରତବର୍ଷର ଚାଷୀକୁଳ । ଜାନୁଆରୀ–ଫେବୃଆରୀ ମାସକୁ ସେମାନଙ୍କର ପ୍ରତୀକ୍ଷା । ଆରମ୍ଭ ହୁଏ ଫସଲ ଅମଳର ଋତୁ । ସୂର୍ଯ୍ୟଦେବତାଙ୍କର ଦକ୍ଷିଣ ଗୋଲାର୍ଦ୍ଧରୁ ଉତ୍ତର ଗୋଲାର୍ଦ୍ଧକୁ ଗମନ । ଅତି ପବିତ୍ର ଦିବସ । ପ୍ରତ୍ୟୁଷରେ ନଦୀସ୍ନାନ, ସୂର୍ଯ୍ୟ ଉପାସନା ସହିତ 'ଖେଚୁଡ଼ି' ଭକ୍ଷଣ କରାଯାଏ । 'ଖେଚୁଡ଼ି' ଏକ ମିଶ୍ରିତ ବ୍ୟଞ୍ଜନ । ଚାଉଳ, ଡାଲି, ବିଭିନ୍ନ ପନିପରିବା ସହ ଘୃତ ମିଶ୍ରିତ ଏ ବ୍ୟଞ୍ଜନ । ଏହା ସ୍ୱାସ୍ଥ୍ୟ ପାଇଁ ବେଶ୍ ହିତପ୍ରଦ । ଏ ବ୍ୟଞ୍ଜନ ମଧ୍ୟ ମିଶ୍ରଣ, ଏକତାର ପ୍ରତୀକ । ମକର ସଂକ୍ରାନ୍ତିରେ ଆବାଳ ବୃଦ୍ଧ ବନିତା, ସମସ୍ତଙ୍କର ଏକ ପ୍ରାଣ, ଏକ ମନ । ଏହି ଭାବରେ ସାମାଜିକ ବନ୍ଧନ ସୁଦୃଢ଼ ହୁଏ । ଖେଚୁଡ଼ି ବ୍ୟଞ୍ଜନର ଏଇଟି ସାମାଜିକ ମହତ୍ତ୍ୱ ।

ବିଶ୍ୱର ସର୍ବଶ୍ରେଷ୍ଠ ପବିତ୍ର ପୀଠ ପୁରୀ ଶ୍ରୀକ୍ଷେତ୍ର । ଶ୍ରୀମନ୍ଦିରରେ ବିଜେ ଶ୍ରୀଜଗନ୍ନାଥ । ମହାପ୍ରଭୁଙ୍କ ପୂଜୋପାସନାରେ ମକର ସଂକ୍ରାନ୍ତି ଏକ ବିଶିଷ୍ଟ ଅଂଶ । ମହାପ୍ରଭୁଙ୍କର ଦୁଇଟି ଶୟନ ଯାତ୍ରା – (୧) ଦକ୍ଷିଣାୟନ ଯାତ୍ରା ଓ (୨) ଉତ୍ତରାୟଣ ଯାତ୍ରା । ସୂର୍ଯ୍ୟ ଧନୁରାଶିରୁ ମକର ରାଶିଙ୍କ ଗମନ କରନ୍ତି । ତାହା ଉତ୍ତରାୟଣ ଯାତ୍ରା । ପବିତ୍ର ମକର ସଂକ୍ରାନ୍ତି ଦିନ ଏଇ ଯାତ୍ରା ଅନୁଷ୍ଠିତ ହୁଏ । ଧନୁ ସଂକ୍ରାନ୍ତିରୁ ମକର ସଂକ୍ରାନ୍ତି, ଦୀର୍ଘ ଏକ ମାସ । ଏଇ ମାସକର ନୀତିକାନ୍ତି ପୂର୍ବରୁ ନିର୍ଦ୍ଧାରିତ । ଧନୁ ସଂକ୍ରାନ୍ତିରେ ଧନୁ ମୁଆଁ, ମକର ସଂକ୍ରାନ୍ତିରେ ମକର ଚାଉଳ ଭୋଗ ଦିଅଁମାନଙ୍କୁ ଲାଗି ହୁଏ । ଆସେ ବଉଳ ଅମାବାସ୍ୟା । ସକାଳ ଧୂପରେ 'ବଉଳ-ଗଇଁଠା' । ଏଇ ନୈବେଦ୍ୟ ଦିଅଁମାନଙ୍କ ପାଖରେ ଅର୍ପିତ । ବନ୍ଦାପନା, ସକାଳଧୂପ ପୂଜା ସମାପ୍ତ ହୁଏ, ତାଟ ପ୍ରସାଦ ବାହାରେ । ପାଣି ପଡ଼ିବା ପରେ ନାରାୟଣଙ୍କର ସିଂହାସନ ବିଜେ । ଆଜ୍ଞାମାଳ ଆସେ । ତା' ପରେ ପାଲିଙ୍କିରେ ସାଗର ବିଜେ । ଆସେ ପ୍ରତୀକ୍ଷିତ ମକର ସଂକ୍ରାନ୍ତି । ଏ ଦିନ ଶ୍ରୀଜୀଉଙ୍କର ନବାଙ୍କ ସମାପନ ଉତ୍ସବ । ନବାଙ୍କ ପ୍ରଥମ ଦିନ ଦୁଧ ମେଲାଣ ନୀତି । ନବାଙ୍କ ଦିନ ଚାଉଳ ମେଲାଣ ସହ ଫୁଲ ମେଲାଣ ନୀତି । ଉକ୍ତ ଦିନ ଶ୍ରୀଜୀଉଙ୍କ ମୁଣ୍ଡରେ ମକର ଚୂଳ ଲାଗି ହୁଏ । ତତ୍ ସହିତ ମାଳଲାଗି, କର୍ପୂର ଲାଗି ବେଶ । ନବବସ୍ତ୍ର, ଚୂଳ, ମାଳ, ଛଅମୂର୍ତ୍ତି ଅଳଙ୍କାରରେ ଦିଅଁମାନଙ୍କର ବେଶ ହୁଏ । ନଡ଼ିଆ, ଘିଅ, ମିଠା, ମସଲା, କ୍ଷୀରସର, ଅରୁଆ ଚାଉଳ । ଏଥିରେ ପ୍ରସ୍ତୁତ ମକର ଚାଉଳ । ତିନୋଟି ରୁପାଥାଳି । ଏଥିରେ ଉକ୍ତ ଚାଉଳକୁ ତ୍ରିମୂର୍ତ୍ତି ମୂଳ କରି ରଖାଯାଏ । ପ୍ରଭୁଙ୍କ ପନ୍ତିବଡୁ ସେବକମାନେ । ସେମାନଙ୍କର ବାଘମୁହଁ ବନ୍ଧା । ଘଣ୍ଟ, ଛତା, କାହାଳୀ ବାଜେ । ପଟୁଆରରେ ସେମାନେ ବଡ଼ ଦେଉଳକୁ ତିନିବେଢ଼ା ବୁଲନ୍ତି । ତତ୍‌ପରେ ଭିତରେ ପନ୍ତିରେ ବାଢ଼ନ୍ତି । ପରବର୍ତ୍ତୀ ନୀତି, ରୋଷଘରୁ ଆସେ ମକର ଚୌରାଶୀ ଭୋଗ । ଘଣ୍ଟ, ଛତା, କାହାଳୀ ସହ ପଟୁଆରରେ ଛାମୁକୁ ନିଆଯାଏ । ମହାଭୋଇ ସେବକ । ଏମାନଙ୍କର ବାଘମୁହଁ ବନ୍ଧା, ନିର୍ଦ୍ଦିଷ୍ଟ ସେବକଙ୍କ ସହ ବାହାରନ୍ତି । ଦୁଧଘରଠାରୁ ଆଣିଥିବା ଦହି ଜୟବିଜୟ ଦ୍ୱାରଠାରେ ଲଣ୍ଡାବର୍ତ୍ତରେ ଦରଶୁଆ କରନ୍ତି । ତା'ପରେ ବଡ଼ ଦେଉଳରେ ଥରେ ବେଢ଼ା ପରିକ୍ରମା, ତତ୍‌ପରେ ଦହି ମହାସୁଆରଙ୍କ ଜିମା ଦିଆଯାଏ । ତାହା ଛାମୁରେ ଲାଗି ହୁଏ । ଠିକ୍ ସେମିତି ହଡ଼ପ ନାୟକ ସେବକ । ହଡ଼ପ ଘରୁ ବାହାରନ୍ତି । ସେବକ ବାଘମୁହଁ ବନ୍ଧା, ଅନୁରୂପ ଭାବେ ଘଣ୍ଟ କାହାଳୀର ମଧୁର ଧ୍ୱନି । ଥରୁଟିଏ ବେଢ଼ା ବୁଲନ୍ତି । ନଳିପାନ, ଛାଚିପାନ ଭୋଗରେ ବାଢ଼ିବା ପାଇଁ ମହାସୁଆରଙ୍କୁ ଦିଅନ୍ତି । ଏହାପରେ ମୁଦିରସ୍ତ ପ୍ରସାଦ ଲାଗି କରନ୍ତି । ପୂଜାପଣ୍ଡାମାନେ ଉକ୍ତ ଭୋଗକୁ ପଞ୍ଚ ଉପଚାରରେ ମଣୋହି କରନ୍ତି । ସଂକ୍ରାନ୍ତି ପୂର୍ବରୁ ମାତାଲକ୍ଷ୍ମୀ ପିତୃଗୃହରୁ ଫେରିଆସନ୍ତି । ତାଙ୍କ ପାଇଁ ଉଦ୍ଦିଷ୍ଟ ମକରଭୋଗ । ଶ୍ରୀମନ୍ଦିର ବେଢ଼ା ପରିକ୍ରମା ନବାଙ୍କ ବେଢ଼ା ବା ମକର ବେଢ଼ା ଭାବେ ଗୃହୀତ । ମକର ସଂକ୍ରାନ୍ତିରେ ବେଢ଼ା ପରିକ୍ରମା ଏକ ବିଶେଷ ନୀତି । ଏହା ପ୍ରାୟତଃ ଅନେକ ଦେବପୀଠରେ ପ୍ରଚଳିତ ।

ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଅଗ୍ରଜ ବଳଦେବ । ତାଙ୍କର ବିଜେ ଇଚ୍ଛାପୁର କେନ୍ଦ୍ରାପଡ଼ାଠାରେ । ବଳଦେବ ଜୀଉଙ୍କ ମନ୍ଦିରରେ ମଧ ମକର ନୀତି । ଏହାର ବିଶେଷ ମହତ୍ତ୍ୱ ରହିଛି । ସଂକ୍ରାନ୍ତି ପୂର୍ବଦିନର ନୀତି । ବଡ଼ ପଣ୍ଡାଙ୍କ ହାତରେ ବଡ଼ଥାଳିଟିଏ । ଏଥିରେ ମା' ଲକ୍ଷ୍ମୀଙ୍କ ବିଜେ ପ୍ରତିମା । ପୁଷ୍ପମାଲ୍ୟରେ ସଜ୍ଜିତା ମା' । ମା'ଙ୍କୁ ମକର ଚାଉଳ ଭୋଗ ଲାଗି କରାଯାଏ । ବଡ଼ପଣ୍ଡା ମା'ଙ୍କୁ ଥାଳି ସହ ମସ୍ତକରେ ଧାରଣ କରନ୍ତି । ବାଜେ ଘଣ୍ଟ, ଘଣ୍ଟା, କାହାଳୀ । ଛତ୍ରଧାରୀମାନଙ୍କ ହାତରେ ଛତ୍ର । ଆଲଟ ଚାମର ପଡ଼େ । ଭକ୍ତଙ୍କ ଗହଳି । ଚାଲେ ପାଞ୍ଚଥର ବେଢ଼ା ପରିକ୍ରମା । ସଂକ୍ରାନ୍ତି ଦିନ ଅନୁରୂପ ଭାବେ ଚାରିଥର ବେଢ଼ା ପରିକ୍ରମା । ଶ୍ରୀଜୀଉଙ୍କର ଏହା ନବାଙ୍କ ବେଢ଼ା ନାମେ ଅଭିହିତ । ଶ୍ରଦ୍ଧାଳୁମାନଙ୍କର ମକର ବେଢ଼ା ବୁଲିବାରେ ଅଭୂତପୂର୍ବ ଆଗ୍ରହ । ଏହାଦ୍ୱାରା ଅଶେଷ ପୁଣ୍ୟ ପ୍ରାପ୍ତ ହୁଏ । ପିତୃପୁରୁଷମାନଙ୍କର ମୋକ୍ଷ ପ୍ରାପ୍ତି ଘଟେ । ଏହା ଏକ ଦୃଢ଼ ବିଶ୍ୱାସ ।

ଓଡ଼ିଆ ସାହିତ୍ୟ ପାଇଁ ମକର ସଂକ୍ରାନ୍ତି ଏକ ଉଲ୍ଲେଖନୀୟ ଦିବସ । ୧୮୪୩ ମସିହା ଜାନୁଆରୀ ୧୩ ତାରିଖ । ସେଦିନ ପବିତ୍ର ମକର ସଂକ୍ରାନ୍ତି । ମହାନ୍ ସାହିତ୍ୟିକ, ଦାର୍ଶନିକ, ବିଶିଷ୍ଟ ସମାଜ ସଂସ୍କାରକ ବ୍ୟାସକବି



ଫକୀର ମୋହନ ସେନାପତି । ପହିଲି ସୂର୍ଯ୍ୟାଲୋକ ଦେଖିଲେ ଉକ୍ତ ପବିତ୍ର ଦିବସରେ । କଥାସମ୍ରାଟ୍ ଭାବେ ସେ ସର୍ବତ୍ର ବିଦିତ । ତାଙ୍କର ବିଶ୍ୱବ୍ୟାପୀ କୀର୍ତ୍ତି ଖ୍ୟାତି । ସେଇ ଯୋଗଜନ୍ମାଙ୍କର ମହାପ୍ରୟାଣ ଦିବସ ୧୯୧୮ ମସିହା ଜୁନ୍ ୧୪ ତାରିଖ । ସେଦିନ ମିଥୁନ ସଂକ୍ରାନ୍ତି । ସେଇଥିପାଇଁ ଯୋଗଜନ୍ମା ଫକୀର ମୋହନ 'ସଂକ୍ରାନ୍ତି ପୁରୁଷ' ଭାବେ ପରିଚିତ ।

ମକର ସଂକ୍ରାନ୍ତି ଏକ ବିଶେଷ ପର୍ବ । ଭାରତ ବାହାରେ ରହୁଥିବା ହିନ୍ଦୁମାନେ ଏ ପର୍ବ ପାଳିଥାଆନ୍ତି । ରୋମାନ୍, ଇହୁଦୀମାନେ ମଧ୍ୟ ଏ ପର୍ବ ପାଳନ କରନ୍ତ । ଗ୍ରିଗୋରିଆନ କ୍ୟାଲେଣ୍ଡର ଅନୁଯାୟୀ ନବବର୍ଷର ଆରମ୍ଭ ଜାନୁଆରୀ ଏକ ତାରିଖରୁ । ସାଧାରଣତଃ ଏହାକୁ ଇଂରେଜୀ ନବବର୍ଷ କୁହାଯାଏ । ମକର ସଂକ୍ରାନ୍ତି ନବବର୍ଷର ପ୍ରଥମ ସଂକ୍ରାନ୍ତି । ଅନେକ ସ୍ଥାନରେ ଏହି ଦିନଟିକୁ ଜାକଜମକରେ ପାଳନ କରାଯାଏ । ବର୍ଷର ପ୍ରଥମ ଉତ୍ସବ ଏହି ସଂକ୍ରାନ୍ତିରୁ ଆରମ୍ଭ । ବହୁ ଦୃଷ୍ଟିରୁ ମକର ସଂକ୍ରାନ୍ତି ଏକ ଅତି ପବିତ୍ର ଦିବସ । ସାମାଜିକ–ଲୌକିକ–ଆଧ୍ୟାତ୍ମିକ ତଥା ଧାର୍ମିକ ଦୃଷ୍ଟିକୋଣରୁ ଏହା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ମକର ଉତ୍ସବରେ ଉତ୍କଳୀୟ ସାଂସ୍କୃତିକ ଜୀବନଧାରା ବହୁ ଭାବରେ ପବିତ୍ର – ଏକଥା ଅନସ୍ୱୀକାର୍ଯ୍ୟ ।

ସା/ପୋ– ପୁରୁଷୋତ୍ତମପୁର
ଜିଲ୍ଲା – କେନ୍ଦ୍ରାପଡ଼ା–୭୫୪୨୨୩